# ଅଗ୍ରଦୃଷ୍ଟି

ଡକ୍ଟର ରାଧାନାଥ ରଥ






ଏକଗୁଚ୍ଛ ନିବନ୍ଧ

ପ୍ରକାଶକ :
**କାହାଣୀ ପ୍ରକାଶନୀ**
କଲ୍ୟାଣୀନଗର ▫ କଟକ - ୧୩



ପ୍ରଥମ ପ୍ରକାଶ :
**ଶ୍ରୀପଞ୍ଚମୀ ▫ ୧୯୯୫**



ପ୍ରଚ୍ଛଦପଟ :
**ଅସିତ ମୁଖାର୍ଜୀ**



ମୁଦ୍ରଣ :




କଲ୍ୟାଣୀ ନଗର ▫ କଟକ - ୧୩



ମୂଲ୍ୟ :
ଟ ୪୦.୦୦
[ଚାଳିଶ ଟଙ୍କା ମାତ୍ର]

**AGRADRUSTI**

By
**Dr. Radhanath Rath**



Published by :
**Kahani Prakashani**
Kalyani Nagar,
Cuttack - 753013



**First Edition : 1995**



Price : **Rs 40/-**
[Rupees Forty only]

# ଅନୁଚିନ୍ତା

'ପ୍ରଗତି' ଶୀର୍ଷକ ବହି ବହୁବର୍ଷ ତଳେ ପ୍ରକାଶ ପାଇଥିଲା । ତାହା ସେତେବେଳେ ବି.ଏ. ସାହିତ୍ୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଏହାର କେତେକ ପ୍ରବନ୍ଧ ବିଭିନ୍ନ ପ୍ରବନ୍ଧ ସଂକଳନ ଭିତରେ ସ୍ଥାନ ପାଇଛି । 'ପ୍ରଗତି' ବହିର କେତେକ ପ୍ରବନ୍ଧ ସହିତ ପରବର୍ତ୍ତୀ ସମୟରେ ନାନା ପତ୍ରିକାରେ ପ୍ରକାଶିତ ଏବଂ ସାହିତ୍ୟ ଆକାଦେମୀ ଓ ଅନ୍ୟାନ୍ୟ ଆଲୋଚନା ସଭାରେ ଆଲୋଚିତ ବିଷୟବସ୍ତୁ ଉପରେ ବର୍ତ୍ତମାନର ସଂକଳନ ଆଧାରିତ ।

ଆମର ସାମାଜିକ ଓ ସାଂସ୍କୃତିକ ଆଚାର ବିଚାରର ବିଶ୍ଳେଷଣାତ୍ମକ ଦିଗ୍‌ଦର୍ଶନ ଏହି ପ୍ରବନ୍ଧଗୁଡ଼ିକରେ ଉପସ୍ଥାପିତ ହୋଇଛି । ଅତୀତରେ ଯାହା ଥିଲା, ତାହା ସବୁ ସତ୍ୟ ଏବଂ ବର୍ତ୍ତମାନର ନୂତନ ଚିନ୍ତାଧାରା ଭ୍ରମାତ୍ମକ ଓ ଅପସଂସ୍କୃତିଗତ ବ୍ୟତିକ୍ରମ ବୋଲି ରକ୍ଷଣଶୀଳ ମନୋବୃତ୍ତିର ବୌଦ୍ଧିକ ବିଶ୍ଳେଷଣ ପାଇଁ ଉଦ୍ୟମ କରାହୋଇଛି । ମାନବ ସମାଜର ଯୁଗଯୁଗଧରି ଯେଉଁ ମହାମାନବୀୟ ସ୍ୱପ୍ନ, ତାହା ଯେ ଭବିଷ୍ୟତରେ ସଫଳ ହେବାକୁ ଯାଉଛି – ଏ ପ୍ରକାର ଆଶାବାଦୀ ଆକାଂକ୍ଷା ଏହାର ମୌଳିକ ଦିଗ୍‌ଦର୍ଶନଭାବେ ଉପସ୍ଥାପିତ କରାହୋଇଛି । ମନୁଷ୍ୟ ସତ୍ୟ ଯୁଗର ଦେବତ୍ୱରୁ କଳିଯୁଗର ଦାନବ ପାଲଟି ଯାଉଥିବା ଚିନ୍ତାଧାରା ପରିବର୍ତ୍ତେ ସେ ଅତୀତର ମର୍କଟ ଶ୍ରେଣୀୟ ଜାନ୍ତବୀୟ ସ୍ଥିତିରୁ କ୍ରମବିକାଶର ସୋପାନ ଦେଇ ମହାମାନବୀୟ ଅତିମାନସ ସ୍ତରକୁ ଯେ ଆଗେଇ ଚାଲିଛି, ତାହାର ଆଭାଷ ଏହି ପ୍ରବନ୍ଧଗୁଡ଼ିକରେ ମିଳିପାରିବ ।

ଚିନ୍ତାଜଗତରେ ବୈପ୍ଳବିକ ପରିବର୍ତ୍ତନ ଫଳରେ ମନୁଷ୍ୟର ଜ୍ଞାନ ତଥା ଅନୁଭୂତିର ପରିସର କିପରି ବିସ୍ତାରିତ ହୋଇ ଚାଲିଛି ଏବଂ ତା'ର ତାତ୍ପର୍ଯ୍ୟ ଆମର ଦୈନନ୍ଦିନ ଜୀବନଧାରା ଭିତରେ କିପରି ପ୍ରସ୍ଫୁଟିତ ହୋଇପାରୁଛି ତା'ର କିଂଚିତ ପରିଚୟ ଦେବାର ପ୍ରୟାସ ହୋଇଛି ମାତ୍ର । ପାଠକ-ପାଠିକାମାନଙ୍କୁ ଅଧିକ ଜ୍ଞାନ ଦେବା ପରିବର୍ତ୍ତେ ସେମାନଙ୍କଠାରେ ନୂତନ ବିଶ୍ଳେଷଣାତ୍ମକ ଚିନ୍ତାଧାରା ସୃଷ୍ଟି କରିବା ଏହି ପ୍ରବନ୍ଧଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ । ଏହା କେତେଦୂର ସମ୍ଭବ ହୋଇପାରିଛି, ତାହା ପାଠକ-ପାଠିକାଙ୍କର ଅନୁଧ୍ୟେୟ ।

**– ଲେଖକ**




## ସାମାଜିକ ପରିବେଶ: ବ୍ୟକ୍ତି ଚେତନା



## ବିବର୍ତ୍ତାୟିତ ସମାଜ




## ବିସ୍ଫୋରକୀ ମାନସିକତା



## ଦାର୍ଶନିକ ଅନ୍ୱେଷଣା

# ସାମାଜିକ ଚେତନା

ବ୍ୟକ୍ତିର ଆତ୍ମଚେତନା ଓ ସମାଜଚେତନା ଭିତରେ ପୃଥକୀଭୂତ ସୀମା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ। ଜଣେ ଯେତେବେଳେ ନିଜକୁ ସମାଜ ଭିତରେ ବ୍ୟାପ୍ତ କରି ଦେଖେ, ତାହା ସମାଜଚେତନା ରୂପରେ ଦେଖାଦିଏ ଏବଂ ଯେତେବେଳେ ଆତ୍ମକୈନ୍ଦ୍ରିକ ଦୃଷ୍ଟିକୋଣରୁ ସମାଜକୁ ଦେଖେ, ତାହା ବ୍ୟକ୍ତିଚେତନା ହିସାବରେ ଦେଖାଦିଏ। ମନୁଷ୍ୟର ଏହି ମୌଳିକ ଚେତନାଶକ୍ତି ଜନ୍ମଗତ ହୋଇପାରେ, କିନ୍ତୁ ଚେତନାର ପ୍ରକ୍ରିୟା ସାମାଜିକ। ତେଣୁ ସାମାଜିକ ପରିସ୍ଥିତି ଅନୁସାରେ ବ୍ୟକ୍ତିଚେତନା ଗଢ଼ିଉଠେ ଏବଂ ବ୍ୟକ୍ତିଚେତନା ଦ୍ୱାରା ସାମାଜିକ ଭିତ୍ତି ପ୍ରସାରିତ ଓ ସ୍ପଷ୍ଟ ହୁଏ।ଆତ୍ମଚେତନା ଓ ସମାଜଚେତନା ଭିତରେ ଗୋଟିଏ ପାରସ୍ପରିକ ଓ ଗତ୍ୟାତ୍ମକ କ୍ରିୟା ପ୍ରକ୍ରିୟା ସମ୍ପର୍କ ରହିଛି—ଗୋଟିଏ ଆଉ ଗୋଟିକର କେବଳ ଯାନ୍ତ୍ରିକ କ୍ରିୟାଗତ ଫଳ ନୁହେଁ। ତେଣୁ ଆତ୍ମଚେତନା ବଦଳାଇବାକୁ ହେଲେ ସାମାଜିକ ଚେତନାର ଆମୂଳ ପରିବର୍ତ୍ତନ ଦରକାର। କେତେକ କ୍ଷେତ୍ରରେ ଯେ ବ୍ୟକ୍ତିବିଶେଷର ଆତ୍ମଚେତନା ଓ ସମାଜଚେତନା ଆପେ ଆପେ ବଦଳି ନ ଯାଏ, ତା'ନୁହେଁ, କିନ୍ତୁ ଏ ପ୍ରକାର ବିପ୍ଳବାତ୍ମକ ତଥା ଗୁଣାତ୍ମକ ପରିବର୍ତ୍ତନ କେତେକ ବ୍ୟକ୍ତିବିଶେଷଙ୍କଠାରେ ସଙ୍କଟଜନକ ସାମାଜିକ ପରିସ୍ଥିତି ଯୋଗୁଁ ସମ୍ଭବ ହୋଇଥାଏ। ବହୁ ଗଛ ଥିବା ଆମ୍ବତୋଟା କିମ୍ବା ଧାନକିଆରିରେ ହଠାତ୍ ଗୋଟିଏ ନୂଆ ରକମର ଆମ୍ବଗଛ ବା ସମ୍ପୂର୍ଣ୍ଣ ନୂତନ ଗୁଣବିଶିଷ୍ଟ ଧାନଗଛର ଅକସ୍ମାତ ଆବିର୍ଭାବ ହୋଇପାରେ, କିନ୍ତୁ ଏହି ନୂତନ ଗୁଣବିଶିଷ୍ଟ ଗଛଟିକୁ ପ୍ରଚୁର ପରିମାଣରେ ପାଇବାକୁ ହେଲେ ଏ ଦିଗରେ ବହୁତ ପରିଶ୍ରମ କରିବା ଆବଶ୍ୟକ। ଏଥିପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ ହେବା ଦରକାର। ଏହା ହେଲା ସର୍ବସାଧାରଣ ନିୟମ।

ଏହି ସାଧାରଣ ନୀତିସମ୍ମତ ନିୟମ ଅନୁସାରେ ଆମ ଦେଶରେ ପ୍ରଚଳିତ ବ୍ୟକ୍ତି ତଥା ସାମାଜିକ ଚେତନାର ଯୁଗୋପଯୋଗୀ ପରିବର୍ତ୍ତନ କିପରି ହେଉଛି—ତା'ର ବିଚାର କରାଯାଇପାରେ। ନାନା ଐତିହାସିକ କାରଣ ଯୋଗୁଁ ଯୁଗ ଯୁଗ ଧରି ଆମ ଦେଶରେ ଗୋଟିଏ ପ୍ରକାର ସାମାଜିକ ନୀତି ଓ ପରିସ୍ଥିତି ଚାଲି ଆସିଛି। ଆମର ଶାସ୍ତ୍ରପୁରାଣରେ ଉଡ଼ାଜାହାଜ, ବେତାର, ରକେଟ, ପରମାଣୁବୋମାଠାରୁ ଆରମ୍ଭ କରି କୋଠଚାଷ ଓ ସାମ୍ୟବାଦୀ ସମାଜର ନିଦର୍ଶନ ପ୍ରତିପାଦିତ ହେଲେ ସୁଦ୍ଧା ଆମେ ଯେଉଁ ସମାଜରେ ଆଜିଯାଏଁ ରହିଥିଲେ, ତା'ର ଯେ ବହୁତ ପରିବର୍ତ୍ତନ ବର୍ତ୍ତମାନ ଦରକାର— ଏଥିରେ ମତଦ୍ୱୈଧ ରହିବ ନାହିଁ। ଯେତେ ଚେଷ୍ଟା କଲେ ସୁଦ୍ଧା ଆମେ କଦାପି ଇତିହାସର ସ୍ରୋତକୁ ଫେରାଇ ଦେଇ ପାରିବା ନାହିଁ—ମଟରଗାଡ଼ି ଛାଡ଼ି ବଳଦଗାଡ଼ି ଯୁଗକୁ ଫେରିଯାଇପାରିବା ଆଉ ସମ୍ଭବ ନୁହେଁ—ଲୁଗା ମିଲ

ବନ୍ଦ କରି ଚରଖା ଲୁଗାରେ ଦେଶଟାକୁ ପିନ୍ଧାଇବାର କଳ୍ପନା କଳ୍ପନାରେ ହିଁ ରହିଯିବ। ଗୁରୁକୁଳ ଆଶ୍ରମର ମୁଷ୍ଟିମେୟ ପଣ୍ଡିତଙ୍କର ଶ୍ରୁତି-ସ୍ମୃତିଶକ୍ତିଜନିତ ପାଣ୍ଡିତ୍ୟ ପରିବର୍ତ୍ତେ ଲକ୍ଷ ଲକ୍ଷ ବିଶ୍ୱବିଦ୍ୟାଳୟ ଡିଗ୍ରୀଧାରୀ ଯୁବକ ଯୁବତୀ ଆମର ଦରକାର। ଲକ୍ଷ ଜନତାର ସ୍ତୂପୀକୃତ କଙ୍କାଳର ଶିଖର ଦେଶରେ ରହିଥିବା ମୁଷ୍ଟିମେୟ ଧନିକର ଅପରିମେୟ ସମ୍ପତ୍ତି ଜାଗାରେ ଆମେ ଚାହୁଁ ଅଗଣନ ଜନତାର ନିରବଚ୍ଛିନ୍ନ ସୁଖ ଶାନ୍ତି—ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ପରିବର୍ତ୍ତେ ଶୋଷଣହୀନ ସମଷ୍ଟି—ବ୍ୟକ୍ତି ପରିବର୍ତ୍ତେ ସମାଜ—ପ୍ରାଗୈତିହାସିକ ବର୍ବରତା ଓ ସାମନ୍ତବାଦୀ ଆତ୍ମମ୍ଭରୀ ଔଦ୍ଧତ୍ୟ ପରିବର୍ତ୍ତେ ସର୍ବମାନବୀୟ ସଂସ୍କୃତି ଓ ସଭ୍ୟତା।

ଆମେ ଯଦି ପ୍ରକୃତରେ ଏହା ଚାହୁଁ, ତା'ହେଲେ ଆମର ସାମାଜିକ ଯୋଜନା ସେହି ଦିଗରେ ପରିଚାଳିତ କି? ଏହା ମଧ୍ୟ ସତ୍ୟ ଯେ ଆମର ଯୋଜନା ଯଦି ଏହି ଦିଗରେ ପରିଚାଳିତ ନୁହେଁ, ତା'ହେଲେ କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ବିଷୟରେ ଆମେ ସମ୍ପୂର୍ଣ୍ଣ ଦୃଢ଼ ପ୍ରତିଜ୍ଞ ନୋହୁଁ ବୋଲି ବୁଝିବାକୁ ହେବ। ଆମର ଦୈନନ୍ଦିନ ଅଭିଜ୍ଞତାରୁ ଜଣାଯାଏ ଯେ ଆମ ଭିତରୁ ଅନେକେ ଜନସାଧାରଣଙ୍କର ଦୋଷ ଦୁର୍ବଳତା, ସେମାନଙ୍କର ଉପଯୁକ୍ତ ସାମାଜିକ ଚେତନାହୀନତା ଯୋଗୁଁ ସ୍ପୃହଣୀୟ ସାମାଜିକ ପରିବର୍ତ୍ତନ ସମ୍ଭବ ହୋଇପାରୁ ନାହିଁ ବୋଲି ବକ୍ତୃତା କରିଥା'ନ୍ତି; କିନ୍ତୁ ଏହି ଯୁକ୍ତି ପଛରେ ସେହି ଗୋଟିଏ ତାତ୍ତ୍ୱିକ ଭୁଲ୍ ରହିଯାଇଛି ବୋଲି ମନେହୁଏ। ଉପଯୁକ୍ତ ସାମାଜିକ ପରିବର୍ତ୍ତନ ନ ହେଲେ ଲୋକଙ୍କର ପୁରାତନ ସମାଜ-ସମ୍ଭୂତ ଚେତନା ରହିବା ସମ୍ଭବ ଏବଂ ଏହି ପ୍ରକାର ଆଧୁନିକ ସମାଜବିରୋଧୀ ଚେତନା ରହିଲେ, ସମାଜର ପରିବର୍ତ୍ତନ ହେବା ବି ଦୁରୂହ। ତା'ହେଲେ କି ଉପାୟରେ ଏହି ଦ୍ୱନ୍ଦ୍ୱାତ୍ମକ ସମସ୍ୟାର ସମାଧାନ ହେବା ସମ୍ଭବ?

ଏ କ୍ଷେତ୍ରରେ ଜନନେତାଙ୍କର ନେତୃତ୍ୱର ତାତ୍ପର୍ଯ୍ୟ ବହୁତ ବେଶି। ଜନନେତାଙ୍କର ସମାଜ ଚେତନା ବହୁଦୂରପ୍ରସାରୀ। ଅତୀତ ଓ ଭବିଷ୍ୟତର ଆଲୋକିତ ସୀମାରେଖାରେ ସେମାନେ ଖୁବ୍ ଜାଗ୍ରତ ଅବସ୍ଥାରେ ଥିବା ଆଶା କରାଯାଏ। ଅତିମାତ୍ରାରେ ସୀମିତ ଏହି ଆଲୋକ କ୍ଷେତ୍ରକୁ ପ୍ରସାରିତ କରିବାରେ ସେମାନେ ନେତୃତ୍ୱ ଦେଇପାରନ୍ତି। ଏହି ପ୍ରସାରଣ ପ୍ରଥମେ ସାମାନ୍ୟ ପରିମାଣରେ ଦେଖାଦେଲେ ସୁଦ୍ଧା ଉପଯୁକ୍ତ ଆଦର୍ଶ ଓ ଦିଗ୍‌ଦର୍ଶନ ସହ ଠିକ୍ ଦିଗରେ ଗତି କଲେ, କ୍ରମେ ଏହା ଜ୍ୟାମିତିକ ହାରରେ ପରିବର୍ଦ୍ଧିତ ହୋଇଚାଲେ। କିନ୍ତୁ ଉପଯୁକ୍ତ ଆଦର୍ଶ ଓ ପ୍ରେରଣା ଅଭାବରେ ତାହା ସର୍ବଦିଗପ୍ରସାରୀ ହେବା ପରିବର୍ତ୍ତେ ବ୍ୟକ୍ତିଗତ ଉଦାସୀନତା ଓ ସାମାଜିକ ଅରାଜକତାର ଗତିଶୀଳ ଅଥଚ କ୍ଷୟିଷ୍ଣୁ ବାତାବର୍ତ୍ତ ସୃଷ୍ଟି କରେ— ଏ ପ୍ରକାର ସମାଜ ନିଜର ଐତିହାସିକ ପଥରେ ପଛକୁ ହଟି ଯାଏନା ସତ, କିନ୍ତୁ ଅନ୍ୟ ସମାଜର ଗତିଶୀଳ କକ୍ଷ ତୁଳନାରେ ପଶ୍ଚାତ୍‌ଗାମୀ ହୋଇପଡ଼େ। ଏପ୍ରକାର ସମାଜର ଅନିୟନ୍ତ୍ରିତ ଘୂର୍ଣ୍ଣନ ଗତିକୁ ଦିଗ୍‌ଦର୍ଶନଗତ କରିବାକୁ ହେଲେ ବଳ ପ୍ରୟୋଗର

ଆବଶ୍ୟକତା ହୁଏ । କିନ୍ତୁ ଏ ପ୍ରକାର ବଳ ପ୍ରୟୋଗ ସବୁବେଳେ ଅପ୍ରୀତିକର ହୋଇଥାଏ । ଲୋକସାଧାରଣଙ୍କର ଭବିଷ୍ୟତ ମଙ୍ଗଳ ଆଶାରେ ବର୍ତ୍ତମାନ ସେମାନଙ୍କର ବହୁତ କ୍ଷତି ଘଟେ। ଆମ ଦେଶର ନିର୍ଦ୍ଧାରିତ ରାଜନୀତି ଓ ସମାଜନୀତି ଅନୁସାରେ ଏ ପ୍ରକାର ବଳପ୍ରୟୋଗର ପକ୍ଷପାତୀ ଆମେ ନୋହୁଁ; କିନ୍ତୁ ପକ୍ଷପାତୀ ନୋହୁଁ ବୋଲି କହିଦେଲେ ତ ଚଳିବ ନାହିଁ, ଆମେ କିପରି ଆମ ସମାଜକୁ ପରିଚାଳିତ କରୁଛେ, ତା' ଉପରେ ଏହାର ସମାଧାନ ନିର୍ଭର କରେ। ସାମାଜିକ ଶକ୍ତିକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରାଇ ନ ପାରିଲେ, ତାହା ଭୟଙ୍କର ଭାବରେ ପ୍ରତିଶୋଧ ନିଏ। ଏହା ଠିକ୍ ରାସ୍ତାରେ ଚଳାଇ ପାରିଲେ ଅଳ୍ପ ସମୟ ଭିତରେ ସମାଜକୁ ଅଭିପ୍ରେତ ସ୍ଥାନରେ ନେଇ ପହଞ୍ଚାଇ ଦେଇପାରେ—ଠିକ୍ ପରମାଣୁ ଶକ୍ତି ପରି—ଯେ କୌଣସି ଗତିଶୀଳ ଶକ୍ତିର ସେହି ଗୋଟିଏ ରକମର ଧର୍ମ।

ଆମ ସମାଜର ଗତିଶୀଳ ସାମାଜିକ ରଥର ସଠିକ୍ ଦିଗ ନିର୍ଣ୍ଣୟ କରିବା ସହଜ ନୁହେଁ; ତେବେ ଏତିକି କୁହାଯାଇପାରେ ଯେ, ଯେଉଁ ଅନୁପାତରେ ଏହା ଗତିଶୀଳ ହେବା କଥା, ସେହି ପରିମାଣରେ ହୋଇପାରୁ ନାହିଁ ଏବଂ ଯେଉଁ ନିର୍ଦ୍ଦିଷ୍ଟ ରାସ୍ତାରେ ଯିବାର କଥା, ସେହି ପଥାଭିମୁଖୀ ହୋଇପାରି ନାହିଁ। ତା' ପାଇଁ ଲୋକଙ୍କର ସାମାଜିକ ଚେତନାର ଅଭାବ ଦାୟୀ ନା ଉପଯୁକ୍ତ ଚେତନା ସୃଷ୍ଟିକାରୀ ନେତୃତ୍ୱ ଦାୟୀ ?

ବ୍ୟକ୍ତିବିଶେଷଠାରେ ଆଦର୍ଶଗତ ସାମାଜିକ ଚେତନା ସୃଷ୍ଟି କରିବାର ଉପାୟ କଣ ? ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଯେତେ ଇଚ୍ଛା ଥିଲେ ସୁଦ୍ଧା, ବୈଜ୍ଞାନିକ ପ୍ରଣାଳୀରେ ତାହା ପରିଚାଳିତ ନ ହେଲେ ଅଭୀଷ୍ଟ ଫଳ ସମ୍ଭବ ନୁହେଁ। ବ୍ୟକ୍ତିବିଶେଷର ପ୍ରତିଷ୍ଠିତ ସାମାଜିକ ଚେତନାକୁ ବଦଳାଇବା ସହଜ ନୁହେଁ। ପୁରାତନ ସମାଜର ରକ୍ଷଣଶୀଳ ଶକ୍ତି ଏତେ ବେଶି ଯେ, ନୂତନ ଚିନ୍ତାଧାରା ଓ ସେହି ସମ୍ପର୍କୀୟ କାର୍ଯ୍ୟାନୁଷ୍ଠାନ ଦ୍ୱାରା ଏହାକୁ ଅନବରତ ଆଘାତ କରିବା ଦରକାର। ତା' ନ ହେଲେ ପୁରୁଣା ଚେର କେବଳ ଦୋହଲି ଯାଏ, ଛିଣ୍ଡେନାହିଁ। ତେଣୁ ନୂତନ ସାମାଜିକ ଚେତନା ସୃଷ୍ଟି କରିବା ଲାଗି ସବୁବେଳେ ନାନା ଦିଗରୁ ଆକ୍ରମଣ ହେବା ଦରକାର। ଏ ପ୍ରକାର ଆକ୍ରମଣ ଯଦି କେବଳ ବାଚନିକ ହୁଏ, ତା'ହେଲେ ତା'ର କୌଣସି ମୂଲ୍ୟ ନାହିଁ। ବକ୍ତୃତାର ଯଦି ସାମାନ୍ୟ ଟିକିଏ ମୂଲ୍ୟ ଥାଆନ୍ତା, ତା'ହେଲେ ଗତ କେତେବର୍ଷ ଭିତରେ ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭକରି ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କ ପର୍ଯ୍ୟନ୍ତ ବକ୍ତାମାନେ ଯେତେ ବକ୍ତୃତା କଲେଣି, ତା ଫଳରେ ଭାରତରେ କେଉଁ ଦିନୁ ସାମ୍ୟବାଦୀ ସମାଜ ପ୍ରତିଷ୍ଠିତ ହୋଇସାରନ୍ତାଣି। ବକ୍ତୃତା କାର୍ଯ୍ୟପ୍ରଣୋଦିତ ନ ହେଲେ, ଏଥିଯୋଗୁଁ ବରଂ ବିପରୀତ ଫଳ ଦେଖାଦେବାର ସମ୍ଭାବନା ରହିଛି। ଯେ ସ୍ୱାର୍ଥତ୍ୟାଗର ଧାର ଧାରେନା, ସେ ସ୍ୱାର୍ଥତ୍ୟାଗ ବିଷୟରେ ଅଜସ୍ର ବକ୍ତୃତା କଲେ ଯାହା ଫଳ ହୁଏ !

ସମସ୍ତେ ଜାଣନ୍ତି ଯେ, ବକ୍ତୃତା ଅପେକ୍ଷା କାର୍ଯ୍ୟର ପ୍ରଭାବ ବେଶି, ତଥାପି ଏହାର ଗୁରୁତ୍ୱ ଉପଲବ୍ଧି କରି ଧାରାବାହିକ ଯୋଜନା କରିବା ବିଶେଷ କଷ୍ଟକର। ଆମ ଦେଶରେ କାମ ଯେ ନ ହେଉଛି ତା ନୁହେଁ, କିନ୍ତୁ ହଜାର ହଜାର ବର୍ଷଧରି ଗଡ଼ିଆସିଥିବା ଶ୍ରେଣୀଗତ, ଜାତିଗତ ଓ ସାମନ୍ତବାଦୀ ସମାଜକୁ ଭାଙ୍ଗି ଗଣତାନ୍ତ୍ରିକ ସମାଜବାଦୀ ଢାଞ୍ଚାରେ ପୁନର୍ଗଠନ କରିବା ପାଇଁ ଯେତିକି ପରିମାଣରେ ସଂଘବଦ୍ଧ ଯୋଜନା ଦରକାର, ସେତିକି ହୋଇପାରୁ ନାହିଁ। ଗୋଟିଏ ବିରାଟ ପାହାଡ଼କୁ ଭାଙ୍ଗି ସମତଳ କରିବା ଲାଗି ଯେତିକି ଡିନାମାଇଟ ଦରକାର, ତା' ନ ଦେଇ କୋଡ଼ିରେ ମାଟି ଆଞ୍ଜୁଡ଼ିବା ପରି ଜଣାଯାଉଛି। ଏଥିଲାଗି ଉପଯୁକ୍ତ ମନୋଭାବ ସୃଷ୍ଟି କରିବା ଲାଗି ଅର୍ଥାତ୍ ପୁରୁଣା ସାମାଜିକ ଚେତନା ପରିବର୍ତ୍ତେ ନୂତନ ସାମାଜିକ ଚେତନା ଆଣିବା, ବହୁ ବ୍ୟୟସାପେକ୍ଷ। ବଡ଼ବଡ଼ ନଦୀ-ବନ୍ଧ, କଳକାରଖାନା ତିଆରି କରିବା ସଙ୍ଗେ ସଙ୍ଗେ ଆହୁରି ଅନେକ ପ୍ରକାରର ସାମାଜିକ କାର୍ଯ୍ୟାନୁଷ୍ଠାନ ହେବା ଦରକାର।

ପଇସା ଖର୍ଚ୍ଚର ପରିମାଣ ଅପେକ୍ଷା କେତେ ସଂଖ୍ୟାରେ ଲୋକ ପ୍ରତ୍ୟେକ କାମରେ ସଂଶ୍ଳିଷ୍ଟ ଅଛନ୍ତି, ସେଥିପ୍ରତି ଧ୍ୟାନଦେବା ଉଚିତ୍। ସମଗ୍ର ସମାଜର ଯୁବକ ଯୁବତୀ, ଶିଶୁ ବୃଦ୍ଧ ସମସ୍ତେ କିଛି ନା କିଛି ସାମାଜିକ କାର୍ଯ୍ୟରେ ପ୍ରତିଦିନ ନିଯୁକ୍ତ ହେବା ଦରକାର। ସାମାଜିକ ପରିବର୍ତ୍ତନ ଲାଗି ଚାରିଆଡ଼େ ଗୋଟିଏ ପ୍ରକାରର ଆନ୍ଦୋଳନ ଓ ଉତ୍ତେଜନା ଲାଗିରହିଥିବା ଆବଶ୍ୟକ। ଶହ ଶହ ଛାତ୍ରଛାତ୍ରୀ, ସାଧାରଣ ନାଗରିକମାନେ ରାସ୍ତା ସଫା କରୁଛନ୍ତି ଓ ଆଉ ଦଳେ ପୋକମାଛି ମାରୁଛନ୍ତି–ଆଉ କେତେକ ସଂକୀର୍ତ୍ତନ କରି ଲୋକଙ୍କୁ ପ୍ରୌଢ଼ଶିକ୍ଷା ଲାଗି ପ୍ରବର୍ତ୍ତାଉଛନ୍ତି, ଆଉ କେତେକ ନେତୃସ୍ଥାନୀୟ ପୁରୁଷ, ସ୍ତ୍ରୀ ଶୋଭାଯାତ୍ରା କରି ପତିତାନାରୀମାନଙ୍କର ବାସଭବନକୁ ଯାଇ ଗାଡ଼ି ମଟରରେ ସେମାନଙ୍କୁ ଉଦ୍ଧାର କରୁଛନ୍ତି– କେହି ସଂକ୍ରାମକ ରୋଗ ବିଷୟରେ ଲାଉଡ୍ ସ୍ପିକରରେ କହୁଛି ଓ କିଏ ଶିଶୁପାଳନ ବିଷୟରେ ଉପଦେଶ ଦେଉଛି। ଷ୍ଟେସନରେ ଯାତ୍ରୀମାନଙ୍କୁ ପ୍ଲାଟଫର୍ମ, ଗାଡ଼ି ସଫା ରଖିବାକୁ କୁହାହେଉଛି ଓ ପୋଷ୍ଟଅଫିସରେ ଭଦ୍ରତା ଶିକ୍ଷା ଦିଆହେଉଛି–କେଉଁଠି ସ୍କୁଲଘର ଶ୍ରମଦାନରେ ତିଆରି ଚାଲିଛି, ଆଉ କେଉଁଠି କ୍ଲବଘର ଲାଗି ଲୋକେ ଚାନ୍ଦା ଉଠାଉଛନ୍ତି; ବିଶ୍ୱବିଦ୍ୟାଳୟର ବଡ଼ ବଡ଼ ଗବେଷଣା ହେଉଛି ଓ କେଉଁଠି ଗଛମୂଳେ ପାଠଚର୍ଚ୍ଚା ଚାଲିଛି....ଇତ୍ୟାଦି। ଅର୍ଥାତ୍, ଏପରି କୌଣସି ସାମାଜିକ ଜୀବନ ନାହିଁ ଯେଉଁ କ୍ଷେତ୍ରରେ ତୀବ୍ର ଆନ୍ଦୋଳନ ସୃଷ୍ଟି ନ ହୋଇଛି କୋଠାବାଡ଼ି ନ ଥାଇ ସୁଦ୍ଧା ପ୍ରତିଦିନ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏ ପ୍ରକାର ଏକ ବିରାଟ ଜନଆନ୍ଦୋଳନର

ଆବର୍ତ୍ତ ଭିତରକୁ ଟାଣିଆଣିବାକୁ ହେବ—ଏହାକୁ କହନ୍ତି ସାମୂହିକ ସାମାଜିକ ବିପ୍ଳବ। ତା'ହେଲେ ଯାଇ ବ୍ୟକ୍ତିବିଶେଷର ସାମାଜିକ ଚେତନା ବଦଳିଯିବ; କିନ୍ତୁ ଆମର ଯେପରି ଶିଥିଳ ଗତିରେ ସବୁ ଚାଲିଛି, ସେଥିରେ ପୁରୁଣା ମନୋଭାବ ଉପରେ ବିଶେଷ ଆଞ୍ଚ ଆସିପାରୁ ନାହିଁ। ଅଜସ୍ର ବକ୍ତୃତା ଫଳରେ ସମସ୍ତଙ୍କ ମନରେ ଯେଉଁ ଅତ୍ୟଧିକ ଆଶା ଦେଖାଦେଇଛି, ସେହି ଅନୁପାତରେ କାମ ହୋଇପାରୁ ନ ଥିବା ଯୋଗୁଁ ଲୋକଙ୍କ ମନରେ ହତାଶା ଦେଖା ଦେବା ସଙ୍ଗେସଙ୍ଗେ କପୋଳକଳ୍ପିତ ରାମରାଜ୍ୟକୁ କେବଳ କଳ୍ପନା ମାଧ୍ୟମରେ ହିଁ ଫେରିଯିବାକୁ ଚେଷ୍ଟା ହେଉଛି। ସମସ୍ତଙ୍କ ଆଗରେ ଯଦି ଭବିଷ୍ୟତ ଜୀବନର ନିର୍ଦ୍ଦିଷ୍ଟ ଛବି ନ ରହେ, ସେ କାଳ୍ପନିକ ରାମରାଜ୍ୟଆଡ଼କୁ ଫେରିଯିବାକୁ ଚାହିଁବା ନିତାନ୍ତ ସ୍ୱାଭାବିକ। ବ୍ୟର୍ଥତାପୂର୍ଣ୍ଣ ଅପ୍ରୀତିକର ବର୍ତ୍ତମାନରେ କେହି କେବେ ରହି ପାରିବ ନାହିଁ, ଆଗକୁ ଚାହିଁବା ପ୍ରୀତିକର ନ ହେଲେ ପଛକୁ ଚାହିଁବା ଦରକାର ପଡ଼େ। ଏହା ହେଲା ଗତିଶୀଳ ଜୀବନ ଓ ସମାଜର ମୂଳଧର୍ମ।

ବକ୍ତୃତାପ୍ରିୟ ଜନନେତାମାନେ ସେମାନଙ୍କର ପ୍ରେରଣାହୀନ ବକ୍ତୃତାଦ୍ୱାରା ଯଦି ନବଜାଗରିତ ଜନତାର ନବୋନ୍ମେଷିତ ଆଶା ଓ ଆକାଂକ୍ଷାକୁ ପୂରଣ ନ କରିପାରନ୍ତି, ତା'ହେଲେ ତା' ପିଠିରେ ଯୁଗଯୁଗଧରି ଚାବୁକ ମାରୁଥିବା ତା'ର ପୁରୁଣା ଖାଉନ୍ଦଙ୍କ ପାଖକୁ ସେ ଫେରିଯିବ। ଗଣତନ୍ତ୍ର ସ୍ଥାନରେ ପୁଣି ବ୍ୟକ୍ତିତନ୍ତ୍ର ଆଦର ପାଇବ। ଥରେ ନିଆଁରେ ହାତ ପୋଡ଼ିଗଲେ, ଆଉ ଥରେ ନିଆଁ ନେଇ କାହାକୁ ଖେଳାଇବା ସହଜ ନୁହେଁ। ସେଥିଯୋଗୁ ଆମ ଦେଶରେ ପଶ୍ଚାତମାର୍ଗୀ ପ୍ରତିକ୍ରିୟା ବହୁ ସ୍ଥାନରେ ପୁଣି ଦେଖାଦେଲାଣି। କେହି ଅସ୍ୱୀକାର କରି ପାରିବେ ନାହିଁ ଯେ ଯେଉଁ କାରଣରୁ ହେଉନା କାହିଁକି ସାମାଜିକ ସାଫଲ୍ୟ ଓ କୃତକାର୍ଯ୍ୟତାଜନିତ ଆତ୍ମବିଶ୍ୱାସର ସ୍ୱାସ୍ଥ୍ୟକର ଲକ୍ଷଣ ପରିବର୍ତ୍ତେ, ବ୍ୟର୍ଥତା, ଅକୃତକାର୍ଯ୍ୟତା ଯୋଗୁଁ ସୃଷ୍ଟି ହେଉଥିବା ନ୍ୟୂନ ମନୋଭାବଗତ ଆତ୍ମକ୍ଷୟିଷ୍ଣୁ ଦୁର୍ଗୁଣ ବହୁକ୍ଷେତ୍ରରେ ଦେଖାଯାଉଛି। ଏ ପ୍ରକାର ଅସାମାଜିକ ଦୋଷ ଦୁର୍ବଳତା ନେଇ କେହି କେବେ ନୂତନ ସମାଜ ସୃଷ୍ଟି କରି ପାରିନାହିଁ। ତେଣୁ ସମାଜର ପ୍ରତ୍ୟେକ କ୍ଷେତ୍ରକୁ ଧାରାବାହିକ ଭାବରେ ବିଶ୍ଳେଷଣ କରି ବୈଜ୍ଞାନିକ ପ୍ରଣାଳୀରେ ସାମାଜିକ ଚେତନା ଲାଗି ଉପଯୁକ୍ତ ବାୟୁମଣ୍ଡଳ ତଥା ସାମାଜିକ ଶକ୍ତି ସୃଷ୍ଟି କରିବା ଉଚିତ। ତା' ନହେଲେ ଗଣତନ୍ତ୍ରର କୌଣସି ମୂଲ୍ୟ ତ ରହିବ ନାହିଁ, ବରଂ ପୁଣି ଥରେ ବ୍ୟକ୍ତିତାନ୍ତ୍ରିକତା ଓ କ୍ଷୁଦ୍ର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ନିୟନ୍ତ୍ରିତ ଅରାଜକତାର କରାଳ ଛାୟା ସାମାଜିକ ଜୀବନକୁ କ୍ରମେ କ୍ରମେ ଗ୍ରାସ କରିନେବ। ■□■

# ଶ୍ରେଣୀ ବିଭକ୍ତ ସମାଜରେ ବ୍ୟକ୍ତିତ୍ୱ ବିକାଶ

ବ୍ୟକ୍ତି ବା ମନୁଷ୍ୟ ସମଷ୍ଟିର ମନୋବୃତ୍ତି ସେହି ଯୁଗର ପ୍ରଚଳିତ ସାମାଜିକ ଶିକ୍ଷା, ରାଜନୀତି, ଐତିହାସିକ ପରମ୍ପରା, ସଂସ୍କୃତି ପ୍ରଭୃତି ଉପରେ ନିର୍ଭର କରେ। ଶିଶୁ ଜନ୍ମହେଲାବେଳକୁ ସୁସ୍ଥ ବା ଦୁର୍ବଳ ଅଙ୍ଗପ୍ରତ୍ୟଙ୍ଗ ଓ ଶରୀରରକ୍ଷା ଲାଗି କେତୋଟି ଯାନ୍ତ୍ରିକ ପ୍ରତିକ୍ରିୟା ଛଡ଼ା ଅନ୍ୟ କୌଣସି ପ୍ରକାର ଅଭିଜ୍ଞତା ବା ଅନୁଭୂତି ତା'ର ନଥାଏ। ଏହା ସଠିକ ଭାବରେ କୁହାଯାଇପାରେ ଯେ ତା' ମନ ଭିତରେ ପୂର୍ବପୁରୁଷଙ୍କ ଅର୍ଜିତ ଶିକ୍ଷା ଓ ଜ୍ଞାନ ସମ୍ପର୍କରେ କୌଣସି ରେଖା ପଡ଼ି ନଥାଏ। ଦାର୍ଶନିକଙ୍କ ଭାଷାରେ କୌଣସି ଚିହ୍ନ ବା ରେଖାଶୂନ୍ୟ ପରିଷ୍କାର ସ୍ଲେଟ୍ ଖଣ୍ଡିଏ ପରି ଏମାନଙ୍କର ମନ ଏବଂ ପରେ ଏଥିରେ ସମସ୍ତ ପ୍ରକାର ଅଭିଜ୍ଞତା ବାହ୍ୟେନ୍ଦ୍ରିୟ ସାହାଯ୍ୟରେ ଲିପିବଦ୍ଧ ହୁଏ। ତା'ପରେ ବ୍ୟକ୍ତିବିଶେଷ ତା'ର ବିଭିନ୍ନ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ଜ୍ଞାନ ଅର୍ଜନ କରି ବସେ, ସେ ସବୁ ତା'ର ନିଜ ମସ୍ତିଷ୍କ-ପ୍ରସୂତ ନୁହେଁ, ଅର୍ଥାତ୍ ସେ ପୂରାପୂରି ସ୍ୱାଧୀନ ଭାବରେ ତା' ମନ ଭିତରେ ଜ୍ଞାନ ସୃଷ୍ଟି କରେ ନା। ସେ ଚକ୍ଷୁ, କର୍ଣ୍ଣ ପ୍ରଭୃତି ଇନ୍ଦ୍ରିୟ ସାହାଯ୍ୟରେ ସମାଜ ତିଆରି କରିଥିବା ଜ୍ଞାନକୁ ଗ୍ରହଣ କରେ। ମନୁଷ୍ୟ ଶିଶୁ ଏପରି ଜ୍ଞାନକୁ ବିନାସର୍ତ୍ତରେ ଗ୍ରହଣ କରିନିଏ ଏବଂ ଯେତେବେଳକୁ ତା'ର ସମାଲୋଚନା ବା ଦୋଷଗୁଣ ବିଚାର କରିବାର ଶକ୍ତି ଆସେ, ସେତେବେଳକୁ ତା'ର ମନ ଭିତରେ ଅନେକଗୁଡ଼ିଏ ବଦ୍ଧମୂଳ ଧାରଣା, ସଂସ୍କାର ବା କୁସଂସ୍କାରର ଚେର ମାଡ଼ି ବସି ଯାଇଥାଏ। ତେଣୁ ତା'ର ପରବର୍ତ୍ତୀ ସମସ୍ତ ପ୍ରକାର କାର୍ଯ୍ୟକଳାପ, ଚାଲିଚଳଣ, ରୀତିନୀତି, ଜ୍ଞାନ ଆହରଣ ପ୍ରଣାଳୀ ଏହି ବଦ୍ଧମୂଳ ଧାରଣା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ। ସାମାନ୍ୟ କେତେ ଜଣ ମହାମାନବ ବା ମହାମନୀଷୀ ହୁଏତ ପରିପକ୍ୱ ଜ୍ଞାନ ଓ ଅଭିଜ୍ଞତା ହାସଲ କଲା ପରେ ଏ ପ୍ରକାର ବ୍ୟୂହରୁ ନିଜକୁ ମୁକ୍ତ କରିପାରନ୍ତି। କିନ୍ତୁ ଏମାନଙ୍କ ସଂଖ୍ୟା ବଡ଼ କମ୍। ସାଧାରଣ ମଣିଷ ପକ୍ଷରେ ଏହା ସମ୍ଭବ ନୁହେଁ।

ଏହା କୁହାଯାଇପାରେ ଯେ ମନୁଷ୍ୟର ମନ କହିଲେ ତା'ର ସମସ୍ତ ପ୍ରକାର ଅତୀତର ଅଭିଜ୍ଞତା, ପ୍ରବୃତ୍ତିଗତ ଇଚ୍ଛା, ବ୍ୟକ୍ତିଗତ ତଥା ସାମାଜିକ ଆଦର୍ଶ ପ୍ରଭୃତିକୁ ବୁଝାଯାଏ ଏବଂ ଏ ସବୁ ଯଦି ସାମାଜିକ ଶିକ୍ଷାଦୀକ୍ଷା ଉପରେ ନିର୍ଭର କରେ, ତା ହେଲେ ମଣିଷର ମନକୁ ସାମାଜିକ ପରିସ୍ଥିତି ଦୃଷ୍ଟିରୁ ବିଶ୍ଳେଷଣ କରାଯାଇପାରେ, ଅର୍ଥାତ୍ ସମାଜର ଅବସ୍ଥା ଅନୁସାରେ ମଣିଷ ମନର ପ୍ରକୃତି ଗଢ଼ିଉଠିଥାଏ।. ଗୋଟିଏ ସମାଜର ଯଦି ଅଧିକାଂଶ ଲୋକେ ଚୋର, ଖଣ୍ଡ, ମିଥ୍ୟାବାଦୀ ଓ ବ୍ୟଭିଚାରୀ ଏବଂ ଆଉ ଗୋଟିଏ ସମାଜର ଲୋକେ ଅପେକ୍ଷାକୃତ ଭଲ, ତା' ହେଲେ ଏହା ନିଶ୍ଚୟ ସାମାଜିକ ପରିସ୍ଥିତି ଯୋଗୁଁ ସମ୍ଭବ ବୋଲି କହିବାକୁ ହେବ। ଆମ ସମାଜ ସହିତ ଇଂରେଜ ଜାତିର ସମାଜକୁ କିମ୍ବା ଅନ୍ୟାନ୍ୟ ଉନ୍ନତ ଦେଶର ସମାଜ ତୁଳନା କଲେ

ଆମେ ଯେଉଁ ତଫାତ୍ ଦେଖିପାଉଁ, ତାହା କଦାପି ଜନ୍ମଗତ ହୋଇପାରେନା– ହିଟ୍‌ଲରର ଆର୍ଯ୍ୟରକ୍ତ ମତବାଦ ସମ୍ପୂର୍ଣ୍ଣ ଭ୍ରମାତ୍ମକ। ଏହା ଭିନ୍ନ ଭିନ୍ନ ପରିସ୍ଥିତିର ଅର୍ଥନୈତିକ, ରାଜନୈତିକ, ସାମାଜିକ କାରଣ ଯୋଗୁହିଁ ବିଭିନ୍ନ ପ୍ରକାର ଦେଖାଯାଇଥାଏ।

ତେବେ ଆମ ଦେଶ ଲୋକଙ୍କର ମାନସିକ ଗଠନ ଓ ପ୍ରକୃତି ଆମର ସାମାଜିକ ଶ୍ରେଣୀ ବିଭାଗ ଦ୍ୱାରା ଯେ ବହୁତ ପ୍ରଭାବିତ ହେଉଥିବ, ଏଥିରେ ସନ୍ଦେହ କ'ଣ? ବର୍ତ୍ତମାନ ଅନେକ ପ୍ରକାର ଜଟିଳ ଶ୍ରେଣୀଗତ ସଂଘର୍ଷ ଯୋଗୁ ଆମ ସମାଜରେ ଭୟଙ୍କର ଅରାଜକତା ଦେଖା ଦେଉଛି ଏବଂ ତା' ଫଳରେ ଲୋକଙ୍କର ମନ ଭିତରେ ତୀବ୍ର ମାନସିକ ଦ୍ୱନ୍ଦ୍ୱ ଲାଗି ରହିଛି।

ନଦୀର ସ୍ରୋତ ସହଜ ଭାବରେ ଛଳଛଳ ହୋଇ ଆଗେଇ ବହିଯିବା ହେଉଛି ତା'ର ସ୍ୱାଭାବିକ ଧର୍ମ। ଏହା ମନୁଷ୍ୟ ପକ୍ଷରେ ବହୁତ ହିତକାରକ– ବଡ଼ ବଡ଼ ସହର, କଳ କାରଖାନା, ସ୍ୱାସ୍ଥ୍ୟ ସମ୍ପଦ ଏଥିଲାଗି ସମ୍ଭବ, କିନ୍ତୁ ସ୍ରୋତ ବାଧା ପାଇଲେ ସନ୍ତସନ୍ତିଆ ଦୁର୍ଗନ୍ଧ ଜଳ, ପଚା ଗାଡ଼ିଆ ପ୍ରଭୃତି ସୃଷ୍ଟି କରି ଏହା ମନୁଷ୍ୟ ପକ୍ଷରେ ବହୁ ଅନିଷ୍ଟକାରକ ହୋଇପଡ଼େ। ଜୀବନର ସ୍ରୋତ ମନୁଷ୍ୟ ପକ୍ଷରେ ମଧ ଠିକ୍ ଏହିପରି ଘଟିଥାଏ। ମନୁଷ୍ୟର ଜୀବନୀଶକ୍ତିର ସ୍ୱାଭାବିକ ଗତିରେ ଅନେକ ବାଧା ଆସି ପହଞ୍ଚିଲେ ତା'ର ମନ ନାନା ଦ୍ୱନ୍ଦ୍ୱପୂର୍ଣ୍ଣ, ଗତି ଶିଥିଳ ଓ ଭବିଷ୍ୟତ ଅନ୍ଧକାରମୟ ହୋଇପଡ଼େ–ପ୍ରତି ପଦରେ ବ୍ୟର୍ଥତା ଦେଖାଦିଏ; ସମାଜ ବହୁ ବ୍ୟାଧିଯୁକ୍ତ ଓ ବ୍ୟକ୍ତିବିଶେଷର ବିଚାରଶକ୍ତି ବିକୃତ ହୋଇପଡ଼େ।

ମନୁଷ୍ୟର ଶକ୍ତି ତା'ର ପରିବେଷ୍ଟନୀର ବିଭିନ୍ନ ପ୍ରତିରୋଧକାରୀ ପ୍ରାଚୀରରେ ବାଧାପ୍ରାପ୍ତ ହୋଇ ଫେରିଆସିଲେ ଅର୍ଥାତ୍ ପ୍ରତ୍ୟେକ ଦଳର ଓ ବ୍ୟକ୍ତିବିଶେଷର ଗତିଶୀଳ ଶକ୍ତି ଦୃଢ଼ ସୀମାବଦ୍ଧ କ୍ଷୁଦ୍ର କ୍ଷୁଦ୍ର କ୍ଷେତ୍ର ଭିତରେ ହିଁ ଆବଦ୍ଧ ରହିଲେ ତାହା ବାହାରକୁ ବାହରି ଆସି ପାରେନାହିଁ। ଫଳରେ ପ୍ରତ୍ୟେକ ବ୍ୟକ୍ତି ଓ ଦଳ ଭିତରେ ଗୋଟିଏ ପ୍ରକାର ଉତ୍କଟ ମାନସିକ ଉତ୍ତେଜନା ଦେଖାଦିଏ। ଏ ପ୍ରକାର ଉତ୍ତେଜନା ସାମାଜିକ ସଂପର୍କ ବା ବ୍ୟକ୍ତିବିଶେଷର ମାନସିକ ବିକାଶ ପକ୍ଷରେ ଆଦୌ ସ୍ୱାସ୍ଥ୍ୟକାରକ ନୁହେଁ। ମାନସିକ ଉତ୍ତେଜନା ସାଥିରେ ଜାତିଗତ ବା ଶ୍ରେଣୀଗତ ତିକ୍ତତା ଓ ବିଦ୍ୱେଷ ମିଶିରହିବା ସ୍ୱାଭାବିକ। ଉତ୍ତେଜନାର ତୀବ୍ରତା ଉପରେ ରାଷ୍ଟ୍ର ବିପ୍ଳବ ବା ଅରାଜକତା ପ୍ରଭୃତି ଅଶାନ୍ତି ନିର୍ଭର କରିଥାଏ। ଗୋଟିଏ ସଂକୀର୍ଣ୍ଣ ସୀମା ଭିତରୁ ପାରହୋଇ ଅନ୍ୟ ସୀମାକୁ ଯିବା ଲାଗି ଯେଉଁ ପରିମାଣରେ ସମଗ୍ର ଦଳର ବ୍ୟଗ୍ରତା ବଢ଼ିଉଠେ, ସେହି ପରିମାଣରେ ଶକ୍ତିର ବେଗ ଓ ତୀକ୍ଷ୍ଣତା ତେଜି ଉଠେ ଏବଂ ଦୁଇଦଳ ଭିତରେ ଥିବା ସାମାଜିକ ସୀମା ହୁଏତ ଭାଙ୍ଗିଯାଏ। ଏକ ପାର୍ଶ୍ୱରେ ପ୍ରତିରୋଧକାରୀ ଶକ୍ତି ଓ ଅନ୍ୟ ପାର୍ଶ୍ୱରେ ଶକ୍ତିର ବଳ, ବେଗ ଓ ତୀକ୍ଷ୍ଣତା ଉପରେ ବିଦ୍ରୋହର ଗତି ଓ ନୃଶଂସତା ନିର୍ଭର କରେ। ଅଗ୍ରଗାମୀ ଶକ୍ତିର ବଳ କମ୍ ହେଲେ ସୀମାର ପ୍ରତିରୋଧ ଆଗରେ ପରାସ୍ତ

ହୋଇ ପୁଣି ନିଜ କ୍ଷେତ୍ର ଭିତରକୁ ଫେରିଆସେ । କିନ୍ତୁ ଏହି ପରାଭୂତ ଶକ୍ତି ସେହିଠାରେ ନଷ୍ଟ ହୋଇଯାଏ ନାହିଁ । ମନର ଅତଳ ଦେଶରେ ଅତି ପ୍ରଚ୍ଛନ୍ନ ଭାବରେ ଏହା କାମ କରୁଥାଏ । ସାମାନ୍ୟ ଟିକିଏ ସୁବିଧା ପାଇଲେ ପୁଣି ତେଜିଉଠେ ଏବଂ ହଠାତ୍ ସାମାଜିକ ଜୀବନରେ ଭୂମିକମ୍ପ ଓ ଅଗ୍ନ୍ୟୁତ୍ପାତ ସୃଷ୍ଟି ହୁଏ । ହିନ୍ଦୁ ମୁସଲମାନ ଓ ଅନ୍ୟାନ୍ୟ ଜାତିଗତ ବିଦ୍ରୋହ ଏ ପ୍ରକାର ଲୁକ୍କାୟିତ ମାନସିକ ଅସ୍ଥିରତାର ଫଳ । ଦେଶବ୍ୟାପୀ ଅରାଜକତା ଛଡ଼ା ପ୍ରତିଦିନ ଛୋଟ ଛୋଟ ଅଶାନ୍ତିର ଘୂର୍ଣ୍ଣିବାୟୁ ସୃଷ୍ଟି ହୋଇଥାଏ । ଚୋରି, ଡକାୟତି, ନାରୀ ହରଣ, ନରହତ୍ୟା ପ୍ରଭୃତି ନାନା ପ୍ରକାର ଅସାମାଜିକ ଘଟଣା ଏହି ମାନସିକ ବିକୃତି ଯୋଗୁ ହିଁ ଦେଖାଦେଇଥାଏ । ବାପର ପ୍ରବଳ ଶକ୍ତି ଆଗରେ ଛୋଟ ପିଲା ସାମନାସାମନି ପରାଭବ ମାନିନେଲେ ସୁଦ୍ଧା ତା ପଛରେ ସେ ଅନେକ ଛୋଟ ଛୋଟ ଚୋରି କିମ୍ବା ବାପ ମନା କରିଥିବା କଥାଗୁଡ଼ିକ କରି ବାପ ଉପରେ ଯେପରି ପ୍ରତିଶୋଧ – ଗୋଟିଏ ଦଳର ଅନ୍ୟଦଳ ପ୍ରତି ବିଦ୍ୱେଷ ଓ ପ୍ରତିଶୋଧ ସେହିପରି ଲୁକ୍କାୟିତ ଭାବରେ ଅତି ଛୋଟ ଛୋଟ କଥାରେ ଦେଖାଦେଇଥାଏ । ଅନେକ ଜାଗାରେ ଅନୁନ୍ନତ ଜାତିର ଗୋଟିଏ ଦଳକୁ ଚିରସ୍ଥାୟୀ 'ଦାଗୀ' ବୋଲି ଅଭିହିତ କରାହୋଇଥାଏ ଏବଂ ସେମାନେ ଅଧିକାଂଶ ଚୋରି ଲାଗି ଦାୟୀ ବୋଲି କୁହାଯାଏ । କିନ୍ତୁ ଏମାନଙ୍କର ଏ ବ୍ୟବହାର ଲାଗି ସମାଜ ଦାୟୀ । ଯେଉଁ ପ୍ରତିଶୋଧ ପ୍ରକାଶ୍ୟରେ ସମ୍ଭବ ନୁହେଁ, ତାହା ଲୁକ୍କାୟିତ ଭାବରେ ଦେଖାଦେଇଥାଏ । ସମାଜ ମଧ୍ୟରେ ଦୁଇଟି ଶ୍ରେଣୀ ଭିତରେ ଏ ପ୍ରକାର ତିକ୍ତତା ଓ ପ୍ରତିଶୋଧ ନେବାର ବ୍ୟଗ୍ରତା ବଡ଼ ଭୟଙ୍କର ଫଳ ଦିଏ । କିନ୍ତୁ ଯେତେବେଳେ ସମାଜ ଶହ ଶହ କ୍ଷୁଦ୍ର ଶ୍ରେଣୀରେ ବିଭକ୍ତ ହୋଇପଡ଼େ ଓ ପ୍ରତ୍ୟେକ ପ୍ରତ୍ୟେକ ଭିତରେ ଏହିପରି ତିକ୍ତତା ଦେଖାଦିଏ, ସେତେବେଳେ କି ଭୟାବହ ପରିସ୍ଥିତି ସୃଷ୍ଟି ହେବ, ତାହା ସହଜରେ ଅନୁମେୟ ।

ଉପରୋକ୍ତ ଦ୍ୱନ୍ଦ୍ୱମୟ ଓ ଶ୍ରେଣୀବିଭକ୍ତ ସାମାଜିକ କ୍ଷେତ୍ରରେ ଦଳବିଶେଷର ସ୍ଥାନ ଓ ମର୍ଯ୍ୟାଦା ଅନୁସାରେ ବ୍ୟକ୍ତିବିଶେଷର ମନୋବୃତ୍ତି ଗଠିତ ହୋଇଥାଏ । ନିମ୍ନ ଶ୍ରେଣୀର ଲୋକେ ନିଜକୁ ଅପେକ୍ଷାକୃତ ନିକୃଷ୍ଟତର ବୋଲି ଭାବନ୍ତି ଏବଂ ଉପର ଶ୍ରେଣୀର ଲୋକେ ନିଜ ନିଜର ଶ୍ରେଷ୍ଠତ୍ୱ ବିଷୟରେ ବଡ଼ିମା କରନ୍ତି । ଏହିପରି କେତେକଙ୍କର ନିଜକୁ ହୀନଚକ୍ଷୁରେ ଦେଖିବା ଓ ଆଉ କେତେକଙ୍କର ଅଯଥା ଆତ୍ମବଡ଼ିମା ଯୋଗୁଁ ଉଭୟଙ୍କ ଭିତରେ ଅନେକ ପ୍ରକାର ମାନସିକ ବିକୃତି ମଧ୍ୟ ଦେଖାଦେଇଥାଏ । ଜଣେ ହରିଜନ ପିଲା ଅଭାବ, ଈର୍ଷା ଓ ଅଚେତନ ମନର ଅବଦମିତ ପ୍ରତିଶୋଧ ପ୍ରବୃତ୍ତି ଯୋଗୁ ଚୋର ଡକାୟତ ହୁଏ । ଉପର ଶ୍ରେଣୀର ଜଣେ ଧନୀଲୋକର ପିଲା ନିଜର ଶକ୍ତି ବା ଯଥେଷ୍ଟ ବିଦ୍ୟା ବୁଦ୍ଧି ଅଭାବରୁ ଯଦି ଗରିବ ହୋଇଯାଏ କିମ୍ବା ବଂଶପରମ୍ପରା ଗୌରବ ଅକ୍ଷୁର୍ଣ୍ଣ ରଖିବାରେ ଅସମର୍ଥ ହୁଏ, ତାହେଲେ ସାମାନ୍ୟ ଟିକିଏ ଆଘାତରେ ପାଗଳ ହୋଇଯାଏ କିମ୍ବା ଅସାମାଜିକ କାର୍ଯ୍ୟରେ ନିଜକୁ ବୁଡ଼ାଇ ରଖେ । ଅବଶ୍ୟ ଏ

ପ୍ରକାର ମାନସିକ ବିକୃତି ଯେ ସମସ୍ତଙ୍କର ହେବ ତାହା ନୁହେଁ କିନ୍ତୁ ବହୁଧା ଶ୍ରେଣୀ ବିଭକ୍ତ ସମାଜରେ ଏହା ବହୁତ ବେଶି ଦେଖାଯାଏ। ଖାଲି ସେତିକି ନୁହେଁ, ଅତ୍ୟଧିକ ମାତ୍ରାରେ ନିଜକୁ ହୀନ ମନେକରିବା କିମ୍ବା ଅପେକ୍ଷାକୃତ ଶ୍ରେଷ୍ଠ ବା ନିଜକୁ ଖୁବ୍ ବଡ଼ବୋଲି ଭାବିବା ଫଳରେ ମନ ଭିତରେ ନାନା ପ୍ରକାର ମାନସିକ ଦ୍ୱନ୍ଦ୍ୱ ଦେଖାଯାଇଥାଏ ଏବଂ ଅନେକେ ଏଥିଲାଗି ଅଚେତନ ମନଭିତରେ ବିବେକଦ୍ୱାରା ଦୋଷୀ ବୋଲି ଅଭିଯୁକ୍ତହୋଇ ଲୋକେ ନାନା ପ୍ରକାର ଅକାରଣ ଭୟ ଓ ଚିନ୍ତାରେ ଅସ୍ଥିର ହୁଅନ୍ତି। ଯଦି ବିଭିନ୍ନ ଶ୍ରେଣୀ – ସୀମାବଦ୍ଧ ଦଳଭିତରେ ଏତେ ବେଶି ପ୍ରତିବନ୍ଧକ ଓ ପ୍ରତିରୋଧ ନଥାନ୍ତା ଏବଂ ପରସ୍ପର ଭିତରେ ଆକାଶ ପାତାଳ ପ୍ରଭେଦ ନଥାନ୍ତା, ତାହେଲେ ଏ ପ୍ରକାର ଦ୍ୱନ୍ଦ୍ୱ ଓ ତିକ୍ତତା ଦେଖାଯାନ୍ତା ନାହିଁ। ସେଥି ସାଙ୍ଗେ ସାଙ୍ଗେ ମାନସିକ ଦ୍ୱନ୍ଦ୍ୱ ଓ ତତ୍‌ଜନିତ ସମସ୍ତ ପ୍ରକାର କୁଫଳର ମଧ୍ୟ ଅବକାଶ ରହନ୍ତା ନାହିଁ।

ପ୍ରତ୍ୟେକ ବ୍ୟକ୍ତିର ମନ ଭିତରେ ଏପରି ଅନେକଗୁଏ ଦ୍ୱନ୍ଦ୍ୱଯୁକ୍ତ ବିରୁଦ୍ଧାତ୍ମକ ଶକ୍ତିର ସଂଘର୍ଷ ଚାଲୁଥିବାରୁ ସେ ବଳିଷ୍ଠ ମନୋଭାବ ସହ କାର୍ଯ୍ୟରେ ଅଗ୍ରସର ହୋଇ ପାରେନା ଏବଂ ଅଧିକାଂଶଙ୍କ ପକ୍ଷରେ ସମନ୍ୱିତ ମାନସିକ ବିକାଶ ସମ୍ଭବ ହୁଏ ନାହିଁ। ବିଶେଷତଃ ଶିକ୍ଷିତକମାଙ୍କ ଭିତରେ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱ ବେଶି ଦେଖାଦିଏ। ସେମାନେ ଶ୍ରେଣୀ ବିଭାଗର ବିଷମୟ ଫଳ ବିଷୟରେ ସଚେତ ଥିଲେ ସୁଦ୍ଧା ନିଜକୁ ସେ ବ୍ୟୂହ ଭିତରୁ ମୁକ୍ତ କରିପାରନ୍ତି ନାହିଁ। ଫଳରେ ଭୟଙ୍କର ମାନସିକ ସଂଘର୍ଷ ଲାଗିରହେ। ପ୍ରତ୍ୟେକ କଥାରେ ସେମାନଙ୍କ ଭିତରେ ଯେପରି ଦୁଇଟି ମନ କାମ କରୁଥାଏ – ଗୋଟିଏ ସଭା ସମିତିରେ ବକ୍ତୃତା କରୁଥାଏ – ଲୋକଙ୍କୁ ଏହା ବିରୁଦ୍ଧରେ ବୁଝାଉଥାଏ ; କିନ୍ତୁ ଘରକୁ ଫେରିଲା ପରେ ଅନ୍ୟ ମନଟି ଠିକ୍ ତାର ଓଲଟା କାମ କରୁଥାଏ – ନିଜ ଦଳ ଭିତରୁ କୌଣସିମତେ ନିଜକୁ ମୁକ୍ତକରିପାରିବାର ଅସଲ କ୍ଷମତା ଏମାନଙ୍କର ନଥାଏ। ଏ ପ୍ରକାର ଦୁଇ ବା ତତୋଧିକ ଅଂଶରେ ଭଗ୍ନମନ ବ୍ୟକ୍ତିତ୍ୱରପୂର୍ଣ୍ଣ ବିକାଶ ଲାଗି ଭୟଙ୍କର କ୍ଷତିକାରକ।

ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ବ୍ୟତୀତ ଆହୁରି ଅନେକ ପ୍ରକାର ମାନସିକ ସଂକୀର୍ଣ୍ଣତା ମଧ୍ୟ ଦେଖାଦିଏ। ଗୋଟିଏ ଦଳରୁ ଅନ୍ୟ ଦଳ ଭିତରକୁ ସାମାଜିକ ଗମନାଗମନ ସହଜ ନଥିବାରୁ ଜାତୀୟ ସଂସ୍କୃତି ବଡ଼ ସଂକୀର୍ଣ୍ଣ ହୋଇପଡ଼େ। କାବ୍ୟ କବିତା, ଗଳ୍ପ, ଉପନ୍ୟାସ, ସିନେମା, ଚିତ୍ର ଅଙ୍କନ ପ୍ରଭୃତି କଳା ସାଧାରଣ ଜନୋପଯୋଗୀ ନ ହୋଇ ନିଜ ନିଜ ଶ୍ରେଣୀ ଭିତରେ ଆବଦ୍ଧ ହୋଇପଡ଼େ। ବର୍ତ୍ତମାନ ଆମ ଦେଶର ସାହିତ୍ୟ ପଢ଼ିଲେ ଏହାର ସଂକୀର୍ଣ୍ଣତା ସହଜରେ ଉପଲବ୍ଧି କରିହୁଏ। ବ୍ରାହ୍ମଣ କରଣ ପ୍ରଭୃତି ଉଚ୍ଚ ଜାତିର ଆଦର୍ଶରେ ଅଧିକାଂଶ ସାହିତ୍ୟ ଅନୁପ୍ରାଣିତ। ଯେଉଁଠି ଗରିବ ଝିଅ ସହିତ ଧନଶାଳୀର ପୁଅ କିମ୍ବା ବ୍ରାହ୍ମଣ ପିଲା ସହିତ ହରିଜନ ଝିଅର ପ୍ରେମ ନେଇ ଶ୍ରେଣୀଗତ ଦ୍ୱନ୍ଦ୍ୱ ଦେଖାଇବାର ଚେଷ୍ଟା ହୁଏ, ସେଥିରେ ମଧ୍ୟ

ସାହିତ୍ୟିକର ସୁଦୃଢ଼ ଆତ୍ମବିଶ୍ୱାସ ପ୍ରକାଶ ପାଇବାର ଦେଖାଯାଏ ନାହିଁ– ଦୁଇଚାରଣଙ୍କ ଭିତରୁ ଜଣଙ୍କ ଆତ୍ମହତ୍ୟା କିମ୍ବା ଦୁର୍ଘଟଣା ଦ୍ୱାରା ମରିବାକୁ ହୁଏ । ମୋଟାମୋଟି କଳା କେବଳ ଉପର ଶ୍ରେଣୀର ଆଦର୍ଶ ଭିତରେ ହିଁ ଆବଦ୍ଧ ହୋଇରହେ ।

ଗଣତାନ୍ତ୍ରିକ ସମାଜରେ କଳାର ଯେଉଁ ସୁପ୍ରଶସ୍ତ ଓ ସୁପ୍ରତିଷ୍ଠିତ ମୂଳଭିତ୍ତି ଦେଖାଯିବାର କଥା, ତାହା ଏ ପ୍ରକାର ସମାଜରେ ସମ୍ଭବ ହୋଇ ପାରେନା ଏବଂ ଅନେକ ସମୟରେ ଏପରି କଳା ବା ସଂସ୍କୃତି ଖୁବ୍ ଉଚ୍ଚକୁ ଉଠିଥିଲେ ସୁଦ୍ଧା ଏହା ସୂଚ୍ୟଗ୍ର ପରିଣାମ ନଶ୍ୱରତ୍ୱମୟୀ ଅଗ୍ରଭାଗ ଏତେ ଦୁର୍ବଳ ଓ ଏହାର ମୂଳଭିତ୍ତି ଏତେ ଅପ୍ରଶସ୍ତ ଯେ ଯୁଦ୍ଧ ବିଗ୍ରହ, ରାଷ୍ଟ୍ର-ବିପ୍ଳବ ପ୍ରଭୃତି ସମୟରେ ଏହା ଅତି ଶୀଘ୍ର ନଷ୍ଟ ହୋଇଯାଏ । ସାହିତ୍ୟିକ ଓ କଳାବିତ୍‌ଙ୍କର ସୃଷ୍ଟି କରିବା ଶକ୍ତି ବାଧହୋଇ ଦୁର୍ବଳ ହୋଇପଡ଼େ ଏବଂ ସାହିତ୍ୟ ଓ କଳାରେ ଜୀବନୀଶକ୍ତିର ପୂର୍ଣ୍ଣ ସ୍ୱାସ୍ଥ୍ୟ ପ୍ରକାଶ ପାଏନାହିଁ । ଅନେକ ସମୟରେ ସାହିତ୍ୟିକମାନେ ସାମାଜିକ ଜୀବନରେ ଅସଂଖ୍ୟ ଧକ୍କା ଖାଇ ଅଯଥା ବ୍ୟର୍ଥତାରେ ମ୍ରିୟମାଣ ହୋଇ ଅଗ୍ରଗାମୀ ଜୀବନ-ସ୍ରୋତର ଦୂରକୁ ପଳାଇ ଯାଆନ୍ତି । ଏହି ପଳାୟନପନ୍ଥୀ କଳାବିତ୍‌ମାନେ ସାହିତ୍ୟ ଓ କଳାକୁ ମନୁଷ୍ୟ ଜୀବନରୁ ଦୂରକୁ ଠେଲିଆଣି କେବଳ ନିର୍ମଳ, ପବିତ୍ର ସାହିତ୍ୟ ସେବାରେ (Art for art's sake) ନିଜକୁ ବୁଡ଼ାଇ ରଖିବାର ଚେଷ୍ଟା କରନ୍ତି । ଏହାକୁ ସାହିତ୍ୟରେ ଦୁର୍ବଳ ମନର ପରାସ୍ତ ମନୋଭାବ ବୋଲି ଧରିବାକୁ ହେବ । ଯେଉଁ ସାହିତ୍ୟ ଓ କଳା ଦୃଢ଼ଭାବରେ ଜୀବନ-ସ୍ରୋତର ମଧ୍ୟଭାଗରେ ଠିଆ ହୋଇ ସମାଜର ସମସ୍ତ ପ୍ରକାର କ୍ଷତିକାରକ ବନ୍ଧନ ଓ କୁସଂସ୍କାର ବିରୁଦ୍ଧରେ ନିର୍ଭୀକ ଭାବରେ ଗତି କରି ନ ପାରେ, ତାହା ମାନବିକ ସାହିତ୍ୟ ପଦବାଚ୍ୟ ନୁହେଁ । କ୍ଷୁଦ୍ର ଝରଣାର ଅତି କ୍ଷୁଦ୍ର ଜଳଧାରା ସାମାନ୍ୟ ଟିକିଏ ଆଘାତ ପାଇଲାକ୍ଷଣି ପଛକୁ ହଟି ଆସେ, କିନ୍ତୁ ବହୁ ଶକ୍ତିଶାଳୀ ବିରାଟ ଜଳପ୍ରବାହ ଅତିପ୍ରବଳ ପ୍ରତିବନ୍ଧକ ଆଗରେ ସୁଦ୍ଧା ହଟିଯାଏନା – ଆଗକୁ ମାଡ଼ିଚାଲେ । ଅତି ବଳିଷ୍ଠ ଆତ୍ମବିଶ୍ୱାସୀ କଳାବିତ୍ ସମଗ୍ର ମାନବ ସମାଜକୁ ଆଖି ଆଗରେ ରଖି କଳା ସୃଷ୍ଟିକରେ ଏବଂ ସମାଜର କୌଣସି ପ୍ରତିବନ୍ଧନ ତାକୁ ଭୀତତ୍ରସ୍ତ କରିପାରେନା । ସେ ହିମାଳୟର ନିର୍ଜନ ଗୁହାରେ ବସି ନିଜର କାଳ୍ପନିକ ଜଗତରେ କଳା ସୃଷ୍ଟି କରେନା – ଦୁଃଖୀ, ରଙ୍କୀ, କ୍ଷୁଧିତ, ପ୍ରପୀଡ଼ିତ, ରୋଗାକ୍ରାନ୍ତ, ଅଭାବଗ୍ରସ୍ତ ବିରାଟ ଜନତାର ଠେଲାପେଲା ଭିତରେ ଏବଂ ମର୍ମଭେଦୀ କ୍ରନ୍ଦନ ଓ କଲରୋଳ ମଧ୍ୟରେ ବସି କଳା ସୃଷ୍ଟି କରେ ଏବଂ ସେହି ସୃଷ୍ଟି ଦ୍ୱାରା ସେମାନଙ୍କର ସେବା କରେ । ଏ ପ୍ରକାର ବଳିଷ୍ଠ କଳା ଓ ଆତ୍ମବିଶ୍ୱାସ ମାନସିକ ଐକ୍ୟ, ସମନ୍ୱିତ ଚିନ୍ତାଧାରା ଓ ସାର୍ବଜନୀନ ମୈତ୍ରୀ ପ୍ରତିଷ୍ଠାରେ ସୁଦୃଢ଼ ବିଶ୍ୱାସ ଯୋଗୁ ହିଁ ସମ୍ଭବ । ତେଣୁ ଆମର ବର୍ତ୍ତମାନ ସାମାଜିକ ପରିସ୍ଥିତିରେ ଏପରି କଳାବିତ୍ ବେଶି ସଂଖ୍ୟାରେ ଦେଖାଦେବା ଅସମ୍ଭବ ।

ଶ୍ରେଣୀବିଭକ୍ତ ସମାଜରେ ପ୍ରତିଯୋଗିତା ଖୁବ୍ ବେଶି ଦେଖାଯାଏ ଏବଂ ଅତି ମାତ୍ରାରେ ପ୍ରତିଯୋଗିତା ଯୋଗୁ ସମସ୍ତଙ୍କ ମନରେ ଗୋଟିଏ ଅଜ୍ଞାତ ଉଦ୍‌ବେଗ ଓ

ଅନିଶ୍ଚିତତା ସର୍ବଦା ଲାଗିରହିଥାଏ । ତା' ଫଳରେ ଧନ ସଞ୍ଚୟ ଲାଗି ପ୍ରବଳ ଆକାଂକ୍ଷା ଅତି ମାତ୍ରାରେ ଦେଖାଦିଏ ଏବଂ ଏ ପ୍ରକାର ମାନସିକ ବିକୃତି ସମାଜର ବହୁତ କ୍ଷତି କରେ । ସମାଜ ସଂଘର୍ଷପୂର୍ଣ୍ଣ ଥିବାରୁ କୋଟିପତି, ବ୍ୟବସାୟୀ, ରାଜାମହାରାଜାମାନେ ଯେପରି ଅନିଶ୍ଚିତତାର ବଶବର୍ତ୍ତୀ ହୋଇ ଆହୁରି ବେଶି ଶୋଷଣରେ ଲାଗି ପଡ଼ନ୍ତି, ଚାଷୀ ମଜଦୁର ମଧ୍ୟ ସେହିପରି ମାନସିକ ଅନିଶ୍ଚତତା ଯୋଗୁଁ ବିଦ୍ରୋହୀ ହୋଇପଡ଼ନ୍ତି – କ୍ରମେ କ୍ରମେ ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ଉଦ୍‌ବେଗପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି ହୁଏ ଏବଂ କ୍ରମବର୍ଦ୍ଧିଷ୍ଣୁ ତିକ୍ତତା ରାଷ୍ଟ୍ର ବିପ୍ଳବରେ ପରିଣତ ହୁଏ ।

ଆମ ଦେଶର ସାଧାରଣ ଜୀବନ ଦୁର୍ନୀତି, ଚୋରାବଜାର, ଚୋରି ଓ ନାନା ପ୍ରକାର ଅସାଧୁତାରେ କଳୁଷିତ । ତା'ର ମୂଳରେ ଅର୍ଥନୈତିକ ତାରତମ୍ୟ ଯେତିକି ଦାୟୀ, ଅସଂଖ୍ୟ ସାମାଜିକ ଶ୍ରେଣୀବିଭାଗ ଯୋଗୁଁ ମାନସିକ ଦ୍ୱନ୍ଦ୍ୱ ଓ ତା ଫଳରେ ଆମର ଅଚେତନ ମନ ଭିତରେ ଉପୁଜିଥିବା ଆତ୍ମ-ଧିକ୍‌କାର, ଭୟ, ବିଦ୍ୱେଷ, ତିକ୍ତତା ଓ ଅନିଶ୍ଚତତା ପ୍ରଭୃତି ମାନସିକ ବିକୃତି ମଧ୍ୟ ସେତିକି ଦାୟୀ । ତେଣୁ ବର୍ତ୍ତମାନ ଅରାଜକତାର ମୂଳଭିତ୍ତି ବିଷୟରେ ଜାଣିବାକୁ ହେଲେ, ବିଭିନ୍ନ କାରଣଗୁଡ଼ିକର ବୈଜ୍ଞାନିକ ବିଶ୍ଳେଷଣ କରି ପ୍ରତ୍ୟେକ ସାମାଜିକ ଶକ୍ତିର ବଳ, ଗତି ଓ ଦିଗ ପ୍ରଥମେ ନିର୍ଣ୍ଣୟ କରିବା ଦରକାର । ତା' ହେଲେ ଆମେ ପ୍ରଥମେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବିଭିନ୍ନ ଶକ୍ତି ଓ ସେମାନଙ୍କର ଫଳାଫଳ ବିଷୟରେ ଉପଯୁକ୍ତ ଜ୍ଞାନ ଅର୍ଜନ କରିପାରିବୁ ଏବଂ ତା'ପରେ ଯାଇ ଆମର ଇଚ୍ଛାନୁସାରେ ସେହି ଶକ୍ତିକୁ ନାନା ଉପାୟରେ ଓ ଭିନ୍ନ ଭିନ୍ନ ଦିଗରେ ଲକ୍ଷ୍ୟ ଅନୁସାରେ ଚାଳନା କରିବାକୁ ସମର୍ଥ ହୋଇ ପାରିବୁ । ଯେଉଁ ପରମାଣୁ ଓ ହାଇଡ୍ରୋଜେନ୍‌ର ଅନ୍ତର୍ନିହିତ ବିରାଟ ଶକ୍ତି ନିମିଷକେ ସହସ୍ର ସହସ୍ର ସହର, ଗ୍ରାମ ନଷ୍ଟ କରି ଦେଇପାରେ, ସେହି ଶକ୍ତିକୁ ଉପଯୁକ୍ତ ମାର୍ଗରେ ଚାଳିତ କରାଇପାରିଲେ ମନୁଷ୍ୟର ମଙ୍ଗଳ ପାଇଁ କି ଅସମ୍ଭବ ରକମର ଶକ୍ତି ଆମ୍ଭେମାନେ ପାଇପାରିବୁ, ତାହା ସହଜରେ ଅନୁମେୟ ।

ସେହିପରି ଆମର ସାମାଜିକ କ୍ଷେତ୍ରରେ ବିପଥ ମାର୍ଗରେ ପରିଚାଳିତ ହେଉଥିବା ବା ଅକାରଣରେ ନଷ୍ଟ ହୋଇ ଯାଉଥିବା ମାନବଶକ୍ତିକୁ ଉପଯୁକ୍ତ ମାର୍ଗରେ ବିଜ୍ଞତାର ସହିତ ପରିଚାଳିତ କରିପାରିଲେ ଯେ ଅଦ୍ଭୁତ ପରିବର୍ତ୍ତନ ଆସିପାରିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ବର୍ତ୍ତମାନ କେବଳ ଭୋଟ ହାସଲ ଉଦ୍ଦେଶ୍ୟରେ ଏପ୍ରକାର ଜାତିଗୋଷ୍ଠୀ ବିବାଦକୁ ତୀବ୍ରତର କରିବା ପାଇଁ ଯେଉଁ ଉଦ୍ୟମ ଲାଗିରହିଛି, ତାହା ଯେ ସମାଜକୁ ଯୁଗଯୁଗ ଧରି ବିବଦମାନ ଗୋଷ୍ଠୀର ହିଂସ୍ରତାରେ ରକ୍ତମୁଖା କରି ରଖିବ, ଏଥିରେ ସନ୍ଦେହ ନାହିଁ । ଏପରି ପରିସ୍ଥିତିରେ ଜାତି ବର୍ଣ୍ଣ ସମ୍ପ୍ରଦାୟ ସମନ୍ୱିତ ଗୋଟିଏ ସମାଜ ସୃଷ୍ଟି କରିବା ଅସମ୍ଭବ । ■□■

# ଯୁଗଧର୍ମ

ଧର୍ମ ଅର୍ଥ କେତେକଙ୍କ ମତରେ ଈଶ୍ୱର ବିଶ୍ୱାସ, ଦେବଦେବୀ ପୂଜା ଅର୍ଚ୍ଚନା ପ୍ରଭୃତି କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଧରଣର' ଆଚରଣକୁ ବୁଝାଇଥାଏ । ଏହି ଆଚାରବିଚାର ନେଇ ନାନା ପ୍ରକାରର ବାଦବିସମ୍ବାଦ ମନୁଷ୍ୟ ସମାଜରେ ଅହରହ ଲାଗିରହିଥାଏ । ଏହି ବାଦାନୁବାଦ ଭିତରେ ମନୁଷ୍ୟର ଚରମ ବିଷୟରେ ଅନେକ ସମୟରେ ଲୋକେ ଭୁଲିଯାଇ ନାନା ପ୍ରକାରର ଉଦ୍ଭଟ ଦାର୍ଶନିକ ତତ୍ତ୍ୱ ଆଲୋଚନାରେ ଉଦ୍‌ଭ୍ରାନ୍ତ ହୋଇ ମନୁଷ୍ୟ ସମାଜର ବହୁ କ୍ଷତି ସାଧନ କରନ୍ତି । ଧର୍ମ ଯୁଦ୍ଧ ନାମରେ ମନୁଷ୍ୟ ମନୁଷ୍ୟ ଭିତରେ ରକ୍ତପାତ ଲାଗି ରହିଥାଏ ।

ଧର୍ମ କହିଲେ ଯଦି ବୁଝାଯାଏ ଯେ, ଯାହା ସମାଜକୁ ଧରିରଖିଛି, ତାହାହେଲେ ଧର୍ମ ସେହି ଯୁଗମାନବ ସମାଜର ଜୀବନ ପ୍ରଣାଳୀର ସମନ୍ୱିତ ଧାରା ବୋଲି କୁହାଯାଇପାରେ । ତା'ହେଲେ, ଏହା ସନାତନ ନୁହେଁ କିମ୍ବା ଏହାର ଗତି ବା ରୂପ ବିଶ୍ୱବ୍ୟାପୀ ଓ ଯୁଗ ଯୁଗ ଧରି ଅପରିବର୍ତ୍ତନୀୟ ନୁହେଁ । ନଦୀର ଗତି ଅବସ୍ଥାକ୍ରମେ ବିଭିନ୍ନ ରୂପ ଧାରଣ କଲାପରି ଜୀବନ ପ୍ରବାହ ମଧ୍ୟ ଦେଶ-କାଳ-ପାତ୍ର ଅନୁସାରେ ବିଚିତ୍ର ରୂପରେ ପ୍ରକାଶିତ ହୋଇଥାଏ । ଧର୍ମ ଏ ପ୍ରକାର ପ୍ରବାହର ଗତି ନିରୂପକ ବୈଜ୍ଞାନିକ ବିଶ୍ଳେଷଣ କହିଲେ ଭୁଲ ହେବ ନାହିଁ ।

ମନୁଷ୍ୟ ଯେତେବେଳେ ଅନ୍ଧାରୀ ଗୁହା ଭିତରେ ବାସ କରୁଥିଲା, ନିଜକୁ ବଞ୍ଚାଇ ରଖିବାପାଇଁ ଶିକାର କରି ମାଂସ ସଞ୍ଚୟ କରୁଥିଲା, ବନ୍ୟଜନ୍ତୁମାନଙ୍କର ଚମଡ଼ା ତା'ର ପରିଧାନ ଥିଲା, ପଥର ବା କାଠର ମୋଟା ମୋଟା ଅସ୍ତ୍ରଶସ୍ତ୍ର ଛଡ଼ା ଆଉ କିଛି ଜାଣି ନଥିଲା, ସେତେବେଳର ସାମାଜିକ ଧର୍ମ ଥିଲା ଗୋଟିଏ ପ୍ରକାର । ଜୀବନଯାପନ ଲାଗି ଅତ୍ୟାବଶ୍ୟକୀୟ ନିୟମକାନୁନ୍ ଗଢ଼ିଉଠିଥିଲା ସମାଜର ସମଷ୍ଟିଗତ କାର୍ଯ୍ୟକଳାପରେ । ଜଣେ ଯଦି ଘଟଣାକ୍ରମେ ଏକା ଏକା ଗୋଟିଏ ଜନ୍ତୁ ମାରି ଦେଉଥିଲା, ତାହାହେଲେ ମଧ୍ୟ ଆଣି ପହଞ୍ଚାଉଥିଲା ଦଳର ବୟୋଜ୍ୟେଷ୍ଠ ସର୍ଦ୍ଦାର ଆଗରେ । ତା'ର ନିର୍ଦ୍ଦେଶ ଅନୁସାରେ ମାଂସ ଭାଗ ଭାଗ ହେଉଥିଲା– ସମସ୍ତେ ପାଉଥିଲେ ତା'ର ଅଂଶ । ଶ୍ରମ ଥିଲା ସମଷ୍ଟିଗତ୍ । ଏହାର ବ୍ୟତିକ୍ରମ ଅଧର୍ମ । ଯେ ଲୁଚାଇ ତା'ର ଶ୍ରମଫଳ କେଉଁ ନିରୋଳା ସ୍ଥାନରେ ବସି ଭକ୍ଷଣ କରୁଥିଲା, ସେ ନିଶ୍ଚୟ ବିଧର୍ମୀ । ଏ ପ୍ରକାର କାର୍ଯ୍ୟକ୍ରମ ସମାଜକୁ ବଞ୍ଚାଇ ରଖିଥିଲା । ଏହାର ଅନ୍ୟଥା ସେ ଯୁଗର ମନୁଷ୍ୟ ସମାଜକୁ ନଷ୍ଟ କରି ଦେଇଥା'ନ୍ତା । ତେଣୁ ସେତେବେଳେ ସମଷ୍ଟିଗତ ଶ୍ରମ ଓ ସହଯୋଗ ଥିଲା ଯୁଗଧର୍ମ ।

ବୁଦ୍ଧି ଓ ଅନ୍ୟାନ୍ୟ ମାନସିକ ଶକ୍ତିର କ୍ରମବିକାଶ ସହିତ ଜୀବନଯାପନ ଲାଗି ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ଘଟିଲା ଓ ସେଥି ସଙ୍ଗେ ସଙ୍ଗେ ମଧ୍ୟ ମନୁଷ୍ୟ ସମାଜର ଆକାର, ପ୍ରକାର, ଆଚାର, ବ୍ୟବହାର ସମ୍ପୂର୍ଣ୍ଣ ବଦଳିଗଲା । ଜୀବନର ଅଧିକାଂଶ ସମୟ

ବଣ୍ୟଜନ୍ତୁ ପଛରେ ହଜାର ବିପଦ ମଧ୍ୟଦେଇ ଆଉ ଦୌଡ଼ିବା ଦରକାର ହେଲା ନାହିଁ। ଖାଲି ଖାଦ୍ୟଦ୍ରବ୍ୟ ଲାଗି ସାରା ଜୀବନ ବ୍ୟସ୍ତ ହୋଇ ରହିବାର ଆବଶ୍ୟକତା ରହିଲା ନାହିଁ। ଶ୍ରମ ସରଳ ଓ ଜୀବନ ଉପଭୋଗ୍ୟ ତଥା ମଧୁର ହୋଇପାରିଲା। କୃଷି ବାଣିଜ୍ୟ ପ୍ରଭୃତି ବିସ୍ତାର ଲାଭ କଲା। ରାଜ୍ୟ, ରାଜା, ସାମ୍ରାଜ୍ୟ, ଦେଶରକ୍ଷା ଲାଗି ଯୁଦ୍ଧ, ଅନ୍ୟର ଦେଶ ଲୁଣ୍ଠନ ଲାଗି ବିରାଟ ସୈନ୍ୟ ସଙ୍ଗଠନ ପ୍ରଭୃତି ସାମାଜିକ ଅନୁଷ୍ଠାନସବୁ ଦେଖାଦେଲା ଏବଂ ଏହା କ୍ରମେ ଜଟିଳରୁ ଜଟିଳତର ହୋଇଉଠିଲା। ବଣ ମଣିଷର ଶିକାରଗତ ଧର୍ମ ନିଶ୍ଚୟ ବଦଳିଗଲା। କାରଣ ଜୀବନଯାପନ ଲାଗି ସେ ଧର୍ମର ଆଉ ଦରକାର ରହିଲା ନାହିଁ। ବରଂ ଯାହା ଦିନେ ଜୀବନର ଅବସ୍ଥିତି ଓ ଉନ୍ନତି ପାଇଁ ଖୁବ୍ ଦରକାରୀ ହୋଇଥିଲା, ତାହା ମାନବ ସମାଜର ଅଗ୍ରଗତିରେ ପ୍ରତିବନ୍ଧକ ହୋଇ ଠିଆହେଲା। ଯେଉଁ ମାନବ ସମାଜ ଏ ପ୍ରକାରର ପ୍ରତିବନ୍ଧକକୁ ପରାସ୍ତ କରି ନୂତନ ଯୁଗର ନୂତନ ଧର୍ମ ଗ୍ରହଣ କରିପାରିଲେ, ସେମାନେ ଆଗକୁ ଆଗକୁ ଚାଲିଗଲେ। ଉନ୍ନତ ଜାତି ହିସାବରେ ପୃଥିବୀସାରା ମାଡ଼ିଗଲେ। ଆଉ ଯେଉଁମାନେ ପୁରୁଣାକାଳିଆ ନୀତିର ମୁଠାଭିତରୁ ନିଜକୁ ମୁକ୍ତ କରି ପାରିଲେ ନାହିଁ, ସେମାନେ କ୍ରମେ ଲୋପ ପାଇଗଲେ, ଅର୍ଥାତ ଯେଉଁମାନଙ୍କର ଧର୍ମ ପରିସ୍ଥିତି ଅନୁସାରେ ନିଜର ରୂପ ଯେତେ ବେଶି ବଦଳେଇ ପାରିଲା, ସେହିମାନେ ସେତେ ବେଶି ଉନ୍ନତ ଓ ପ୍ରଗତିଶୀଳ ହୋଇପାରିଲେ।

ସେତେବେଳେ ମଧ୍ୟ ଦଳେ ଲୋକ ଥିଲେ, ଯେଉଁମାନେ ଖାଲି ଭାବୁଥିଲେ ଓ କହୁଥିଲେ ଯେ, 'ସେମାନଙ୍କର ବାପା, ଗୋସେଇଁ-ବାପା ଅମଳରେ କ'ଣ ଥିଲା ଏବଂ ଯାହା ଥିଲା ଖୁବ୍ ଭଲ ଥିଲା– ନୂତନ ଯୁଗର ଲୋକେ ଧ୍ୱଂସଆଡ଼କୁ ଆଗେଇ ଚାଲିଛନ୍ତି। ବିଧର୍ମୀ ହୋଇ ପଡୁଛନ୍ତି... ଇତ୍ୟାଦି। ନୂତନ ସମାଜର ଲୋକେ ବିଧର୍ମୀ ଥିଲେ ପୁରାତନ ଯୁଗର ଧର୍ମ ଅନୁସାରେ। କିନ୍ତୁ ପ୍ରକୃତ ଯୁଗଧର୍ମ ଅନୁସାରେ ସେହି ପୁରୁଣାକାଳିଆ ରକ୍ଷଣଶୀଳ ଲୋକେ ହିଁ ବିଧର୍ମୀ ଥିଲେ। ତେଣୁ କାଳକ୍ରମେ ଯୁଗର ନୂତନ ଯୁଦ୍ଧକ୍ଷେତ୍ରରେ ସେମାନେ ପରାସ୍ତ ହେଲେ– ଯେଉଁମାନେ ଜୀବନ ସ୍ରୋତସ୍ୱତୀର ମଧ୍ୟଭାଗରେ ରହି ସ୍ରୋତମୁଖରେ ନିର୍ଭୀକଭାବରେ ମୁଣ୍ଡ ଟେକି ଆଗକୁ ଆସୁଥିବା ନୂତନ ଆଲୋକ ପ୍ରତି ଆଗ୍ରହର ସହିତ ଆଗେଇ ଚାଲିଲେ, ସେହିମାନେ ହିଁ ଅନାଗତ ଭବିଷ୍ୟତର ଅଦୃଷ୍ଟ ଦେଶର ଉତ୍ତରାଧିକାରୀ ହେଲେ, ଆଉ ଯେଉଁମାନେ ଖାଲି ପଛକୁ ଚାହିଁ ରହିଲେ, ଅନାଗତକୁ ଭୟ କଲେ, ସେମାନେ କ୍ରମେ ଜୀବନର ପ୍ରଧାନ ପ୍ରବାହରୁ ଅଲଗା ହୋଇଗଲେ। ପ୍ରବାହ ଦୁଇ ପାଖର ସ୍ରୋତହୀନ କର୍ଦ୍ଦମ ଭିତରେ ପଡ଼ି ଶକ୍ତିହୀନ ଓ ଚଳାଚଳରହିତ ହୋଇ କ୍ରମେ ଧ୍ୱଂସ ହୋଇଗଲେ। ଐତିହାସିକ ଜୀବନ ପ୍ରବାହର ପାଖେ ପାଖେ ଏପରି ଅନେକ ପରାଜିତ ବ୍ୟକ୍ତି ଓ ଜାତିର କବର ବର୍ତ୍ତମାନ ଭୂପୃଷ୍ଠରୁ ଉଦ୍ଧାର କରାଯାଉଛି।

ତେଣୁ ଏହା ଅକ୍ଳେଶରେ କୁହାଯାଇପାରେ ଯେ, ରକ୍ଷଣଶୀଳତା ପ୍ରଗତିର ପରିମାପକ ନୁହେଁ– ପରିବର୍ତ୍ତନଶୀଳ ପରିସ୍ଥିତି ସହିତ ତାଳ ଦେଇ ଚାଲିପାରିବାରେ ହିଁ

ଜୀବନର ଉନ୍ନତି, ସଭ୍ୟତାର କ୍ରମବିକାଶ, ସଂସ୍କୃତିର ଉତ୍କର୍ଷତା । ଏହି ଗତିର ବୈଜ୍ଞାନିକ ବିଶ୍ଳେଷଣ ହେଉଛି ଉଚିତ ଯୁଗଧର୍ମ। ଅତୀତ କବରର ଅଯଥା ଆଲୋଚନାରେ ଜୀବନୀଶକ୍ତିର ବୃଥା ଅପଚୟ ଘଟିଥାଏ ଏବଂ ଯେଉଁ ଜାତି ଯେତେ ବେଶି ପଛକୁ ଚାହେଁ, ସେ ସେତେ ବେଶି ପରାସ୍ତ ମନୋଭାବାପନ୍ନ ଓ ଦୁର୍ବଳ। ଆଧୁନିକ ମନୋବିଜ୍ଞାନ ମଧ ଏହାକୁ ସମର୍ଥନ କରେ।

ଇତିହାସର ବିଶ୍ଳେଷଣରୁ ଜଣାଯାଏ ଯେ, ମନୁଷ୍ୟ ସମାଜ ପ୍ରତି ଯୁଗରେ ବଦଳି ଚାଲିଛି, ଆଗେଇ ଚାଲିଛି ଓ ସେଥି ସଙ୍ଗେସଙ୍ଗେ ଯୁଗଧର୍ମ ମଧ ପ୍ରୟୋଜନ ଅନୁଯାୟୀ ପରିବର୍ତ୍ତିତ ହୋଇ ଚାଲିଛି। ବର୍ତ୍ତମାନ ସାରା ମନୁଷ୍ୟ ସମାଜ ଅଭୂତପୂର୍ବ ବୈଜ୍ଞାନିକ ଶକ୍ତିରେ ନୂତନ ଆକାର ଧାରଣ କରିଛି, ମଣିଷ ଅସୀମ ଶକ୍ତିର ଅଧିକାରୀ ହୋଇ ପାରିଛି, ଯେଉଁ ପୃଥିବୀର ପର୍ଯ୍ୟବେକ୍ଷଣ କଥା ଦିନେ କଳ୍ପନାତୀତ ଥିଲା, ତାକୁ କେଇଟା ଘଣ୍ଟାରେ ଘୂରି ଆସି ପାରୁଛି। ଗୋଟିଏ ଜାଗାରେ ବସି ପୃଥିବୀର ପ୍ରତ୍ୟେକ କକ୍ଷର ବାର୍ତ୍ତା ପାଇ ପାରୁଛି। ଦୂରବୀକ୍ଷଣ ସାହାଯ୍ୟରେ ଲକ୍ଷ କୋଟି କୋଶ ଦୂରରେ ଥିବା ଜ୍ୟୋତିଷମାନଙ୍କୁ ଦୃଷ୍ଟିପଥକୁ ଆଣିପାରୁଛି ଓ ଅଣୁବୀକ୍ଷଣ ସାହାଯ୍ୟରେ କ୍ଷୁଦ୍ରାଦପିକ୍ଷୁଦ୍ର ଅଣୁପରମାଣୁକୁ ସୁଦ୍ଧା ଆୟତ୍ତାଧୀନ କରିପାରୁଛି। ନିଜ ବୁଦ୍ଧିବଳରେ ଚନ୍ଦ୍ରରେ ଯାଇ ପହଞ୍ଚି ପାରିଛି। ଏହି ଅଦ୍ଭୁତ ବିଜ୍ଞାନ ବଳରେ ଅପରିସୀମ ପୃଥିବୀ ଛୋଟ ହୋଇପଡ଼ିଛି ଓ ଅକିଞ୍ଚନ ମାନବ ଖୁବ୍ ବଡ଼ ହୋଇ ଉଠିଛି। ଜୀବନ ପ୍ରବାହର ଏ ବିରାଟ ଅଗ୍ରଗତି ସହିତ ଯେଉଁ ଜାତି ତାଳ ପକାଇ ଚାଲିପାରିଛି, ସେ ସଭ୍ୟ, ଶିକ୍ଷିତ ଓ ସଂସ୍କୃତ ବୋଲି ପରିଚିତ, ଆଉ ଯେ ଖାଲି ପଛକୁ ଚାହୁଁଛି, ସେ ଗରିବ, ଦୁର୍ବଳ ଓ ଅନୁନ୍ନତ ଜାତି ହିସାବରେ ପଛରେ ପଡ଼ିରହିଛି। ତା'ର ଶରୀର ବଳହୀନ, ମନ ବିଷାଦଗ୍ରସ୍ତ ଓ ସମାଜ ଧର୍ମଶୂନ୍ୟ ହେବା ସ୍ୱାଭାବିକ। ପ୍ରବାହ ଦୂର କଡ଼ର ଦୁର୍ଗନ୍ଧ ଆବର୍ଜନାମୟ କର୍ଦ୍ଦମାକ୍ତ ପଚା ପାଟ ଯେପରି ସ୍ରୋତର ଚଞ୍ଚଳତାର ସ୍ୱାଦୁ ଉପଭୋଗ କରିପାରେନା, ସେପରି ଏମାନେ ଜୀବନୀଶକ୍ତିର ଉଦ୍ଦାମତା ଅନୁଭବ କରି ପାରନ୍ତି ନାହିଁ। ତେଣୁ ଇତିହାସ ତିଆରି କରିବାରେ ଏମାନଙ୍କର ଅଧିକାର ନାହିଁ। ଘଣ୍ଟାରେ ଏକ ହଜାର ମାଇଲ ବେଗରେ ଗତି କରୁଥିବା ବ୍ୟୋମଯାନ ଚାଳକର ଉତ୍ସାହ ଓ ଦାୟିତ୍ୱ ରାସ୍ତାରେ ହାତଠେଲା ଗାଡ଼ି ଚଳାଉଥିବା ଲୋକର ଦାୟିତ୍ୱଠାରୁ ଯେ ଅନେକ ବେଶି, ଏଥିରେ ସନ୍ଦେହ ନାହିଁ। ବର୍ତ୍ତମାନ ବୈଜ୍ଞାନିକ ଯୁଗରେ ଯେଉଁମାନେ ଇତିହାସ ତିଆରି କରୁଛନ୍ତି, ସେହିମାନେ ବଳିଷ୍ଠ ମନୋଭାବସଂପନ୍ନ ଓ ଅନାଗତ ଭବିଷ୍ୟତର ସୁଯୋଗ୍ୟ ବଂଶଧର। ଆଉ ଯେଉଁମାନେ ରକ୍ଷଣଶୀଳ ମନୋବୃତ୍ତି ନେଇ ଖାଲି ଅତୀତକୁ ଚାହିଁ ରହିଛନ୍ତି, ସମୟର ଗତିଶୀଳ ରଥଚକ୍ରକୁ ପୁଣି ପଛକୁ ଫେରାଇ ନେବାର ପ୍ରୟାସ କରୁଛନ୍ତି, ସେମାନେ ହିଁ ବର୍ତ୍ତମାନ ଯୁଗଧର୍ମ ଅନୁସାରେ ବିଧର୍ମୀ। ସେମାନେ ଯେତେ ଚେଷ୍ଟା କଲେ ସୁଦ୍ଧା ମନୁଷ୍ୟ ସମାଜ କେବେଁ ପୁଣି ପଛକୁ ଫେରିପାରିବ ନାହିଁ। ଅତୀତ ଯୁଗର ରକ୍ଷଣଶୀଳମାନଙ୍କ ପରି ଏମାନେ ନିଶ୍ଚୟ ପରାସ୍ତ ହେବେ, କିନ୍ତୁ ତା' ପୂର୍ବରୁ ସେମାନେ ମାନବ ସମାଜର

ପ୍ରଭୂତ କ୍ଷତି କରିଦେଇ ପାରନ୍ତି। ମନୁଷ୍ୟ ଜାତି ମଧ୍ୟ ସେମାନଙ୍କ ଯୋଗୁଁ ଧରଣୀ ପୃଷ୍ଠରୁ ଲୋପ ହୋଇଯାଇପାରେ। ଅବଶ୍ୟ ଏମାନଙ୍କର ଯୁକ୍ତି ଯେ ବର୍ତ୍ତମାନ ବୈଜ୍ଞାନିକ ଯୁଗର ଉନ୍ନତି ସଙ୍ଗେ ସଙ୍ଗେ ଧ୍ୱଂସ ହିଁ ଲାଗିରହିଛି। ତେଣୁ କଳ୍ପନାପ୍ରସୂତ ଅତୀତର ରାମରାଜ୍ୟ କଥା ଉଦ୍ଧାର କରି ଏମାନେ ପୁଣି ସେହି ରାମରାଜ୍ୟକୁ ଫେରିଯିବାକୁ ଚାହାନ୍ତି। ପ୍ରଥମତଃ ଅତୀତରେ ରାମରାଜ୍ୟ ନଥିଲା, ଖାଲି ପଶ୍ଚାତ୍‌ମୁଖୀ ପରାଜିତ ଲୋକଙ୍କ ରଙ୍ଗିନ ଚଷମା ଭିତରଦେଇ ଏହା ଦେଖାଦେଇଥାଏ। ଦ୍ୱିତୀୟତଃ ଆଧୁନିକ ଯୁଗର ଦୋଷାବଳୀ ଏମାନଙ୍କ ଆଖିରେ ଅତିରଞ୍ଜିତ ହୋଇ ଦେଖାଯାଏ ଓ ତାହାର ଉପକାରିତା ଏମାନେ ପୂରାପୂରି ଭୁଲିଯାଆନ୍ତି। ସେମାନେ ନିରାଶାବାଦୀ ହୋଇଥିବାରୁ ଭବିଷ୍ୟତ ପ୍ରତି ଏମାନଙ୍କର ଆଶା ନଥାଏ ଏବଂ ଦୁର୍ବଳ ମନୋଭାବାପନ୍ନ ହୋଇଥିବାରୁ ନିଜ ପ୍ରତି ତଥା ମାନବ ସମାଜ ପ୍ରତି ଆସ୍ଥା ବଡ଼ କମ୍ ଥାଏ।

ଆଧୁନିକ ବୈଜ୍ଞାନିକ ଯୁଗର କୁଫଳ ଯେ ନାହିଁ ତାହା କହିବା ଭୁଲ, କିନ୍ତୁ ସୁଫଳ ମଧ୍ୟ କମ୍ ନାହିଁ। ସୁଫଳ ଓ କୁଫଳର ଅନୁପାତ ଦେଖିବା ଉଚିତ। ତା'ଛଡ଼ା ଯେଉଁ ମନୁଷ୍ୟ ବୈଜ୍ଞାନିକ ପ୍ରଣାଳୀରେ ଏତେ ବଡ଼ ପ୍ରାକୃତିକ ଶକ୍ତିକୁ ନିଜ ଆୟତ୍ତାଧୀନ କରିପାରିଛି, ସେହି ମନୁଷ୍ୟ ବର୍ତ୍ତମାନ ଯୁଗର କୁଫଳକୁ ମଧ୍ୟ ନିୟନ୍ତ୍ରିତ କରିପାରେ। ସେ ବୁଝୁଛି ଯେ, ମନୁଷ୍ୟର ରକ୍ଷଣଶୀଳ ମନୋବୃତ୍ତି ନାନା ପ୍ରକାର ବ୍ୟକ୍ତିଗତ ଓ ଜାତିଗତ ଭେଦଭାବ ଓ ସଂକୀର୍ଣ୍ଣତା ଏବଂ ମୁଷ୍ଟିମେୟ ସ୍ୱାର୍ଥପର ଲୋକଙ୍କର ଅବୈଜ୍ଞାନିକ ଶୋଷଣ ନୀତି ଓ ଅତିଶୟ ଲୋଭ ଯୋଗୁ ବର୍ତ୍ତମାନର ମାନବସମାଜ ଦ୍ୱାରା ହାସଲ ହୋଇଥିବା ବିରାଟ ଶକ୍ତି ଉପଯୁକ୍ତ ମାର୍ଗରେ ପରିଚାଳିତ ହୋଇପାରୁନାହିଁ।

ପୁରାତନ ଯୁଗୀୟ ସମାଜ ପଦ୍ଧତିର ଗଣ୍ଡି ଭିତରେ ନୂଆ ଯୁଗର ଅଗ୍ରଗତି ଖାପ ଖାଉନାହିଁ। ତେଣୁ ସମାଜ ଭିତରେ ଅନେକ ପରସ୍ପରବିରୁଦ୍ଧ ଶକ୍ତି କାର୍ଯ୍ୟ କରୁଛି ଏବଂ ସେଥିଲାଗି ଏକ ଦିଗରେ ପ୍ରଚୁର ଉତ୍ପାଦନ ସମ୍ଭବ ହେଉଥିଲାବେଳେ ଅନ୍ୟ ଦିଗରେ ଲୋକେ ଅଭାବରେ ମରୁଛନ୍ତି। ପୃଥିବୀର ସର୍ବଶ୍ରେଷ୍ଠ ଧନୀର ଦୁଆର ମୁହଁରେ ଲୋକେ ଭିକ ନ ପାଇ କ୍ଷୁଧାରେ ଉଦ୍ବେଳବିକଳ ହୋଇ ଛଟପଟ ହେଉଛନ୍ତି। ଆମେରିକାରେ କୋଟି କୋଟି ମହଣ ଗହମ ପୋଡ଼ା ହେଉଥିବାବେଳେ କେତେକ ଦେଶରେ ଲୋକେ ପେଟକୁ ଖାଦ୍ୟ ନପାଇ ମରୁଛନ୍ତି, କିନ୍ତୁ ଆମେରିକାରୁ ସେ ଦେଶକୁ ଆସିବା ଲାଗି ହୁଏତ ମୋଟେ ଦୁଇ ଚାରି ଘଣ୍ଟା ଲାଗୁଛି। ଏହି ବିସଂବାଦୀ ସମାଜର ଅସଲ ବିଶ୍ଳେଷଣ ଏବଂ ସେ ସବୁର ନିରାକରଣ କେବଳ ବିଜ୍ଞାନ ସାହାଯ୍ୟରେ ହିଁ ହୋଇପାରିବ। ଗତି କରୁଥିବାବେଳେ ଯଦି କୌଣସି ପ୍ରତିବନ୍ଧକ ସାମନାରେ ଆସି ଠିଆହୁଏ, ତାକୁ ଆହୁରି ଶକ୍ତି ଲଗାଇ ଚୂରମାର୍ କରି ଆଗକୁ ଚାଲିବାରେ ସିନା ମନୁଷ୍ୟର ବୀରତ୍ୱ, ସମାଜର ପ୍ରଗତି, ସଭ୍ୟତାର ପରାକାଷ୍ଠା, କିନ୍ତୁ ପଛକୁ ହଟିଆସିବା କାପୁରୁଷତା। ସେଥିରେ ମନୁଷ୍ୟର ପରାଜୟ ଓ ମୃତ୍ୟୁ। ସଭ୍ୟତାର ଚରମ ଅବନତି।

ପ୍ରତ୍ୟେକ ଯୁଗସୁଲଭ ପ୍ରଗତି ପୂର୍ବବର୍ତ୍ତୀ ଯୁଗର ପରସ୍ପର ବିରୁଦ୍ଧାତ୍ମକ ଶକ୍ତିର ସଂଘାତଜନିତ ସମସଂସ୍ଥାନ ବା ଦ୍ୱନ୍ଦ୍ୱ ଭଞ୍ଜନରୁ ହିଁ ଉତ୍ପତ୍ତି। ଏହା ପ୍ରଗତିର ପ୍ରତୀକ ରୂପେ ସଂବର୍ଦ୍ଧିତ ହୋଇଥାଏ ଏବଂ ତାହା ମଧ୍ୟ ଅବସ୍ଥାକ୍ରମେ ସେହିପରି ଭାବରେ ଅନ୍ୟ ଏକ ପ୍ରତିକ୍ରିୟାଶୀଳ ଯୁଗରେ ପରିଣତ ହୁଏ। ଏହିପରି ମାନବ ସଭ୍ୟତା କ୍ରମବର୍ଦ୍ଧିଷ୍ଣୁ ଗତିଶୀଳ ବଗଫ ପେଣ୍ଡୁଲା ପରି ଅନବରତ ଚାଲିଛି। ତେଣୁ ପଛକୁ ଫେରିବାର ସମ୍ଭାବନା କାହିଁ? ତା'ଛଡ଼ା ଯେ ନୂତନତ୍ୱର ମାଧୁର୍ଯ୍ୟ ପାଇଛି, ସେ କେବେହେଁ ପଛକୁ ଫେରିପାରିବ ନାହିଁ। ଆଧୁନିକ ଯୁଗର ବିଜ୍ଞାନ ସେ ନୂତନତ୍ୱର ଆଭାସ ଦେଇ ପାରିଛି। ମନୁଷ୍ୟ ନିଜେ ସୃଷ୍ଟିକର୍ତ୍ତାର ଆନନ୍ଦ ପାଇପାରିଛି। ତେଣୁ ଆଧୁନିକ ଯୁଗଧର୍ମ ମନୁଷ୍ୟ ସମାଜର ବିରାଟ ଶକ୍ତି ଓ ଗଭୀର ଆତ୍ମବିଶ୍ୱାସରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବାରେ ସମର୍ଥ ହୋଇଛି। ଦୁର୍ବଳ ମନର କଳ୍ପନାପ୍ରସୂତ ଭଗବାନର ସତ୍ତା ସେ ଉଡ଼ାଇ ଦେବାରେ ବସିଛି। କାରଣ ସୃଷ୍ଟିର ଉଦ୍ଦାମ ଆନନ୍ଦ ତା'ରି ମନ ଭିତରେ ସେ ଅନୁଭବ କରିପାରୁଛି। ତେଣୁ ନିଜ ଛଡ଼ା, ମାନବ ସମାଜ ଛଡ଼ା, ଆଉ କାହାରି ଉପରେ ଆସ୍ଥା ରଖିବାରେ ସେ ବିଶେଷ ଉତ୍ସୁକ ନୁହେଁ। ଦ୍ୱନ୍ଦ୍ୱହୀନ ବୈଜ୍ଞାନିକ ବିଶ୍ଳେଷଣରେ ହିଁ ତା'ର ସତ୍ୟ। ଯୁଗୋପଯୋଗୀ ସମାଜହିତକର ବୈଜ୍ଞାନିକ ସମାଧାନରେ ହିଁ ତା'ର ମୁକ୍ତି।

ସମାଧାନ ଚିରନ୍ତନ ନୁହେଁ, ତାହା ଆପେକ୍ଷିକ ସତ୍ୟ, ଦେଶକାଳପାତ୍ର ଓ ସମାଜର ସମନ୍ୱିତ ଚିନ୍ତାଧାରା ମାତ୍ର। ଅବସ୍ଥାକ୍ରମେ 'ତାହା' ପୁଣି ବଦଳିଯିବ ଏବଂ ତା'ର ରୂପ ବଦଳାଇବ ମନୁଷ୍ୟ। ମନୁଷ୍ୟ ସତ୍ୟର ସୃଷ୍ଟିକର୍ତ୍ତା, ଧର୍ମର ଜନ୍ମଦାତା, ତେଣୁ ଧର୍ମ ଓ ସତ୍ୟ ଯୁଗ ଯୁଗ ଧରି ଚିରନ୍ତନ ହୋଇ ରହିନାହିଁ। ଏଥିରେ ମନୁଷ୍ୟର ଯେଉଁ ଗଭୀର ଆତ୍ମବିଶ୍ୱାସ, ବଳିଷ୍ଠ ମନୋଭାବ ଏବଂ ନିତ୍ୟନୂତନ ସୃଷ୍ଟି ଲାଗି ଯେଉଁ ଅଦମ୍ୟ ଉତ୍ସାହ ଓ ବିରାଟ ଆଶା, ତାହା ଅନ୍ୟ କୌଣସି ପଶ୍ଚାତମୁଖୀ ଧର୍ମ ଭିତରେ ନାହିଁ। ତେଣୁ ବର୍ତ୍ତମାନର ଯୁଗଧର୍ମ ଅତୀତ ଧର୍ମଠାରୁ ଅଲଗା। ଏଥିରେ ଜାତି ନାହିଁ, ତଥାକଥିତ ଧର୍ମଭେଦ ନାହିଁ, ବର୍ଣ୍ଣଗତ ପାର୍ଥକ୍ୟ ନାହିଁ, କି ସଂକୀର୍ଣ୍ଣ ଦେଶକାଳ ପ୍ରୀତି ନାହିଁ। ଏହି କ୍ଷୁଦ୍ର ପୃଥିବୀର ସମସ୍ତ ନରନାରୀ ଏକ ଧର୍ମାବଲମ୍ବୀ, ଏକ ନୂତନ ସମାଜ ଅନ୍ତର୍ଭୁକ୍ତ ଏବଂ ଏକ ସାର୍ବଜନୀନ ମୈତ୍ରୀ ଭାବରେ ଅନୁପ୍ରାଣିତ। ଏହା ହିଁ ହେଉଛି ବର୍ତ୍ତମାନ ବୈଜ୍ଞାନିକ ଯୁଗର ଯୁଗଧର୍ମ। ଯେଉଁମାନେ ଏହି ଧର୍ମର ସ୍ରୋତମୁଖରେ ମୁଣ୍ଡ ଟେକି ଆଗେଇ ଚାଲିବେ, ସେହିମାନେ ବଞ୍ଚିପାରିବେ ଏବଂ ଯେଉଁମାନେ ପଛକୁ ଚାହିଁ ରହିବେ, ଯୁଗଧର୍ମ ପ୍ରତି ଅନାସ୍ଥା ଦେଖାଇବେ, ସେମାନେ ନିଶ୍ଚୟ ଲୋପ ପାଇଯିବେ।

ବର୍ତ୍ତମାନ ସୁଦ୍ଧା ପୃଥିବୀର ବହୁ ସ୍ଥାନରେ ଏବଂ ଆମ ଦେଶରେ ମଧ୍ୟ ପୁରାତନ ଯୁଗର ସାମନ୍ତବାଦୀ ସାମାଜିକ ସଂସ୍ଥା ଓ ବହୁ କୁସଂସ୍କାରଗତ ସଂକୀର୍ଣ୍ଣ ଆଚାର ବିଚାରକୁ ପ୍ରାଧାନ୍ୟ ଦିଆହେଉଛି। ଫଳରେ ଆମର ଅଗ୍ରଗତି ବାଧାପ୍ରାପ୍ତ ହେଉଛି। ମନୁଷ୍ୟ ସମାଜର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହୋଇପାରୁନାହିଁ। ତଥାପି ଏ ଯୁଗର ସର୍ବଜନ ସମ୍ମତ, ବଳିଷ୍ଠ ଯୁଗଧର୍ମ– ଜାତି ବର୍ଣ୍ଣ ଧର୍ମ ଦେଶ ନିର୍ବିଶେଷରେ ସମାଜବାଦୀ ଓ ଗଣତାନ୍ତ୍ରିକ ସାମାଜିକ ମୂଲ୍ୟବୋଧ– ସାରା ପୃଥିବୀରେ ପରିବ୍ୟାପ୍ତ ହୋଇ ଚାଲିଛି। ଆମ ଦେଶ ମଧ୍ୟ ଏହି ବିରାଟ ମାନବିକ ସ୍ରୋତରୁ ବାଦ୍ ଯାଇନାହିଁ। ■□■

# ମନୁଷ୍ୟକୈନ୍ଦ୍ରିକ ଯୋଜନା

ଉଡ଼ାଜାହାଜଟିଏ ଥରେ ତଳୁ ଉପରକୁ ଲମ୍ଫ ଦେଲାପରେ ବଡ଼ ସହଜଭାବରେ ଉପରକୁ ଉଠିପାରେ– ଇଚ୍ଛାନୁସାରେ ତା'ର ଗତି ଓ ଦିଗ ବଦଳାଇ ଦିଆଯାଇ ପାରେ; କିନ୍ତୁ ପ୍ରଥମରୁ ଲମ୍ଫ ଦେଇ ଉଠିବା ପାଇଁ ତାକୁ ବହୁତ ଶକ୍ତି ସଞ୍ଚୟ କରିବାକୁ ପଡ଼େ। ସେହିପରି କୌଣସି ଦେଶର ଅର୍ଥନୈତିକ ବା ସାମାଜିକ ବିପ୍ଳବ ଲାଗି ପ୍ରଥମେ କିଛି ବର୍ଷ ଏହିପରିଭାବରେ ଶକ୍ତି ସଞ୍ଚୟ କରିବା ଲାଗି କଟିଯାଏ। ଅତୀତର ଜଡ଼ତା ଭାଙ୍ଗିବା ଲାଗି ସମୟ ଲାଗେ। ତା'ପରେ ଖୁବ୍ ଶୀଘ୍ର ଶୀଘ୍ର ଦେଶ ସବୁ କ୍ଷେତ୍ରରେ ଆଗେଇଯାଏ। ଗୋଟିଏ କ୍ଷେତ୍ରରେ ଲୋକେ ଗତିଶୀଳ ହୋଇପାରିଲେ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଲୋକେ ଆଗେଇ ଯାଆନ୍ତି। କିନ୍ତୁ ଏହା ଯେ ସବୁବେଳେ ଆପେ ଆପେ ଘଟିଯାଏ, ତା ନୁହେଁ। ଅର୍ଥନୈତିକ ଉନ୍ନତି ଘଟାଇବାକୁ ଯାଉଥିବାବେଳେ ସାମାଜିକ, ଶିକ୍ଷାଗତ ପ୍ରଭୃତି ସବୁ କ୍ଷେତ୍ରରେ ଠିକ୍ ସେହି ପରିମାଣରେ ନଜର ଦେଲେ ସର୍ବାଙ୍ଗୀନ ପରିବର୍ତ୍ତନ ଖୁବ୍ ଶୀଘ୍ର ଦେଖାଦିଏ।

କିଛିବର୍ଷ ପୂର୍ବେ ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ କେବଳ ଅର୍ଥନୈତିକ ବିକାଶ ଉପରେ ବେଶି ଜୋର୍ ଦିଆହେଉଥିଲା; କିନ୍ତୁ ଗତ କେତେ ବର୍ଷର ସମାଜ ବିଜ୍ଞାନ ଓ ମନୋବିଜ୍ଞାନର କ୍ରମବିକାଶମାନ ଜ୍ଞାନ ଫଳରେ ଜନନାୟକ ତଥା ସମାଜ ବିଜ୍ଞାନବିତ୍‌ମାନଙ୍କର ଦୃଷ୍ଟିକୋଣ ବଦଳିଯାଇଛି। ଅର୍ଥନୈତିକ ବିକାଶ ସଙ୍ଗେ ସଙ୍ଗେ ସାମାଜିକ ବିକାଶ ପ୍ରତି ମଧ୍ୟ ନଜର ଦିଆଯାଉଛି ବରଂ ସାମାଜିକ ପରିବର୍ତ୍ତନ ପ୍ରତି ବେଶି ଜୋର୍ ଦେବା ଫଳରେ ଲୋକଙ୍କ ଭିତରେ ଏତେ ବେଶି ଉତ୍ସାହ ଦେଖାଯାଉଛି ଯେ ଦେଶର ସର୍ବାଙ୍ଗୀନ ଉନ୍ନତି ସହଜରେ ସମ୍ଭବ ହୋଇପାରୁଛି।

ଅର୍ଥନୈତିକ ବିକାଶ ପାଇଁ ପ୍ରଭୂତ ଅର୍ଥର ଆବଶ୍ୟକ; କିନ୍ତୁ ଅର୍ଥ କହିଲେ କେବଳ ସୁନା ରୂପା ବା ସରକାରୀ ମୁଦ୍ରା ନୁହେଁ, ଦେଶର ଜନସାଧାରଣଙ୍କର ପ୍ରଚୁର ଶାରୀରିକ ପରିଶ୍ରମର ମୂଲ୍ୟ ହିଁ ଦେଶର ପ୍ରଧାନ ସମ୍ପତ୍ତି। ତେଣୁ ଯେକୌଣସି ଜାତୀୟ ଯୋଜନା ହେଉନା କାହିଁକି, ଏହା ଲୋକସାଧାରଣଙ୍କର ପ୍ରେରଣା, ଉତ୍ସାହ ଉପରେ ନିର୍ଭର କରିବା ଉଚିତ ଏବଂ ଏଥିପାଇଁ ଲୋକଙ୍କଠାରେ ଉପଯୁକ୍ତ ପରିମାଣରେ ଉନ୍ମାଦନା ଓ ଆଗ୍ରହ ଜନ୍ମାଇବା ପାଇଁ ପ୍ରଥମରୁ ଯୋଜନା ହେବା ନିତାନ୍ତ ଆବଶ୍ୟକ। ଆଣବିକ ଶକ୍ତିଠାରୁ ସୁପ୍ତ ସାମାଜିକ ଶକ୍ତିର ବଳ ବହୁତ ଅଧିକ। ବିଦ୍ୟୁତ୍‌ଶକ୍ତି, ଲୁହା, କୋଇଲା ପ୍ରଭୃତି ଜିନିଷର ଉତ୍ପାଦନ ଉପରେ ଜୋର୍ ଦେଇ ଲୋକଙ୍କୁ ଭୁଲିଗଲେ ଯୋଜନାର ମୂଳଦୁଆ ବହୁତ ଦୁର୍ବଳ ହୋଇ ପଡ଼ିବ। ଆମ ଦେଶର ଯୋଜନାକୁ ଜନହିତକର ଯୋଜନା ବୋଲି ସମସ୍ତେ କହିଆସୁଛନ୍ତି। ଯୋଜନା ବହିରେ ଏହି ନୀତିକୁ ପରିଷ୍କାରଭାବରେ ଘୋଷଣା କରାହୋଇଛି। ବାରମ୍ବାର ସଭା ସମିତିରେ ତା' ଉପରେ ଜୋର୍ ଦିଆହେଉଛି; କିନ୍ତୁ ଜନହିତକର ବୋଲି ବଡ଼ପାଟିରେ କହିଲେ ଏହା ଜନମଙ୍ଗଳ ଯୋଜନାରେ ପରିଣତ ହୋଇଯିବ ନାହିଁ। ଲୋକକଲ୍ୟାଣ ଦୃଷ୍ଟିଭଙ୍ଗୀ ରହିଲେ, ପ୍ରତ୍ୟେକ ଯୋଜନାରେ ସର୍ବପ୍ରଥମ ଲୋକଙ୍କ ପ୍ରତି ଦୃଷ୍ଟିଦେବାକୁ ପଡ଼ିବ।

ସ୍ୱାଧୀନ ଗଣତାନ୍ତ୍ରିକ ଦେଶରେ ଲୋକଙ୍କର ଦୃଷ୍ଟିକୋଣ ବଦଳାଇବା କଷ୍ଟ ମଧ୍ୟ ନୁହେଁ। ତଥାପି ଯେତେଦିନଯାଏଁ କର୍ତ୍ତୃପକ୍ଷଙ୍କର ସେହି ପୁରୁଣା ବ୍ୟକ୍ତିକେନ୍ଦ୍ରିକ ସାମନ୍ତବାଦୀ ମନୋଭାବ ରହିଛି, ଯୋଜନାର ଜନକଲ୍ୟାଣ ଦୃଷ୍ଟିକୋଣ ଦେଖାଦେବା ସହଜ ନୁହେଁ; କିନ୍ତୁ ସେମାନଙ୍କର ବୁଝିବା ଉଚିତ ଯେ ଜନକଲ୍ୟାଣ ସମାଜ ଦ୍ୱାରା ହିଁ ଅର୍ଥନୈତିକ ଯୋଜନାର ଗତି ବହୁତ ବେଶି ପ୍ରସାରିତ କରାଯାଇପାରିବ।

ପ୍ରଥମେ ଲୋକମାନଙ୍କର ସ୍ପଷ୍ଟଧାରଣା ହେବା ଉଚିତ ଯେ ସେମାନଙ୍କ ମଙ୍ଗଳ ଦୃଷ୍ଟିରୁ ଦେଶରେ କାମ ହେଉଛି। କିଛିଏ ବେଶି ଖର୍ଚ୍ଚ ହେଲେ ସୁଦ୍ଧା ଆଖିଦୃଶିଆ କାମ ସବୁବେଳେ ଏବଂ ସବୁଆଡ଼େ କିଛି ନା କିଛି ହେଉଥିବା ଦରକାର। ତା' ହେଲେ ଯାଇ ଲୋକଙ୍କର ଉତ୍ସାହ କ୍ରମେ ବଢ଼ି ବଢ଼ି ଚାଲିଥିବ; କିନ୍ତୁ ବର୍ତ୍ତମାନ ସାମାଜିକ ପରିସ୍ଥିତି ଯାହା, ସେଥିରେ ବହୁଯୁଗରୁ ଚେରମାଡ଼ି ରହିଥିବା ଆମର ସାମାଜିକ ଉଦାସୀନତା ଓ ବ୍ୟକ୍ତିଗତ ନିଶ୍ଚେଷ୍ଟତା ଏତେ ବେଶି ପରିମାଣରେ ରହିଛି ଯେ ଯୋଜନାର ସର୍ବପ୍ରସାରୀ ଦିଗ ଏ ଦେଶର ଅଧିକାଂଶ ଲୋକଙ୍କୁ ସ୍ପର୍ଶ କରିପାରି ନାହିଁ। ଗତ କେତେ ବର୍ଷ ଭିତରେ ଆମର ଅନେକ ଯୋଜନା ଶେଷ ହୋଇ ଆସିଲାଣି। ବହୁ କ୍ଷେତ୍ରରେ ମଧ୍ୟ ଆମର ଆଶାନୁରୂପ ଫଳ ଫଳିଲାଣି। ସେଥିଲାଗି ଆମକୁ ବହୁତ ସାର୍ଟିଫିକେଟ ମଧ୍ୟ ମିଳିଲାଣି। ଲୁହା, କୋଇଲା, ବିଦ୍ୟୁତ ଶକ୍ତି ଉତ୍ପାଦନରେ ଆମେ ଆଗେଇଲୁଣି। ପୃଥିବୀର ଶକ୍ତିଶାଳୀ ଦେଶମାନଙ୍କ ସାଙ୍ଗରେ ଆଣବିକ ଶକ୍ତି ଉତ୍ପାଦନ ନେଇ ଆମେ ପ୍ରତିଯୋଗିତାରେ ଯୋଗ ଦେଇପାରିଛୁ ଇତ୍ୟାଦି; କିନ୍ତୁ ଦେଶର ଚାରିଆଡ଼େ ଦୃଷ୍ଟି ଦେଲେ ବିପ୍ଳବାତ୍ମକ ସାମାଜିକ ପରିବର୍ତ୍ତନ ଲାଗି ଯେଉଁ ପରିମାଣରେ ଜନଜାଗରଣ ଦେଖାଦେବା କଥା, ଆମେ କ'ଣ ସେହି ପରିମାଣରେ ପ୍ରାଣମତାଣିଆ ଉତ୍ସାହ, ଉଦ୍ୟମ ଓ ଆଗ୍ରହ ଲୋକଙ୍କଠାରେ ଦେଖୁଛୁ? ସମାଜ ଭିତରେ କେତେକ ମୁଷ୍ଟିମେୟ ଲୋକଙ୍କର ଯେଉଁ ପରିମାଣରେ ପ୍ରାଧାନ୍ୟ ଦେଖାଦେଇଛି, ସେହି ପରିମାଣରେ ସାଧାରଣ ଲୋକଙ୍କଠାରେ ନୈରାଶ୍ୟ ପ୍ରକାଶ ପାଇଛି। ରାଉରକେଲାରେ ଲୁହା ଉତ୍ପାଦନ ବଢ଼ିଛି, ହୀରାକୁଦରୁ ବିଦ୍ୟୁତ୍ ଶକ୍ତି ମିଳିଛି; କିନ୍ତୁ ରାସ୍ତାରେ ବୁଲୁଥିବା ଲକ୍ଷ ଲକ୍ଷ ଲୋକଙ୍କର କ'ଣ ଉପକାର ହୋଇଛି? ପାଣି କାଦୁଅରେ ପଡ଼ି କାମ କରୁଥିବା ଚାଷୀର କେତେ ଉନ୍ନତି ହୋଇଛି? ଗାଁ ସ୍କୁଲର ଅନ୍ଧାର ଘରେ ବସି ପାଠ ପଢ଼ାଉଥିବା ମାଷ୍ଟରର କେତେ ଆନନ୍ଦ ବଢ଼ିଛି? ତା'ର ଅର୍ଥ ଆମର ଯୋଜନା ଜନକଲ୍ୟାଣମୁଖୀ ନ ହୋଇ କେବଳ ଉତ୍ପାଦନମୁଖୀ ହୋଇ ପଡ଼ିଛି ଏବଂ ଏହି ଉତ୍ପାଦନର ଅଧିକାଂଶ ଲାଭାଂଶ ମୁଷ୍ଟିମେୟ ଲୋକଙ୍କ ଭାଗରେ ଯାଇ ପଡୁଛି। ଏହି ଦୁର୍ଦ୍ଦଶାରୁ ରକ୍ଷା ପାଇବାକୁ ହେଲେ, ଆମକୁ ସାହସର ସହିତ କେତୋଟି ସାଧାରଣ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ। ଯୋଜନାର ଦୃଷ୍ଟି ଚାରିଆଡ଼କୁ ସମାନ ଭାବରେ ପଡ଼ିବା ଦରକାର।

କେତୋଟି ସାଧାରଣ କଥା ସହରମାନଙ୍କରେ ଆମେ ଦେଖିବାକୁ ପାଉ, ଯାହା ପାଇଁ ଆମେ ଲାଜରେ ବାହାର ଲୋକଙ୍କ ଆଗରେ ମୁହଁ ଦେଖାଇପାରୁନା। ଅଥଚ

ଜନକଲ୍ୟାଣ ଦୃଷ୍ଟି ଯଦି ଆମର ଥାଆନ୍ତା ତାହାହେଲେ ଖୁବ୍ ଅଳ୍ପ ଦିନ ଓ ଅଳ୍ପ ଖର୍ଚ୍ଚରେ ଆମେ ଏହାର ସମାଧାନ କରିଦେଇପାରନ୍ତୁ। ଉଦାହରଣ ସ୍ୱରୂପ ଆମ ସହରମାନଙ୍କରେ ଭିକାରୀମାନଙ୍କର ଅବସ୍ଥା। କେତେକ ଭିକାରୀଙ୍କ ପକ୍ଷରେ ଏହା ଲାଭଜନକ ବୃତ୍ତି ହୋଇପାରେ; କିନ୍ତୁ ଅଧିକାଂଶ ଭିକାରୀ ଯେପରି ଦୀନହୀନଭାବରେ ମୁଠାଏ ଭାତ ପାଇଁ ରାସ୍ତା ରାସ୍ତା ବୁଲୁଥାଆନ୍ତି, ତାହା ଯେକୌଣସି ସଭ୍ୟ ସମାଜ ପକ୍ଷରେ ଭୟଙ୍କର କଳଙ୍କର କଥା ; କିନ୍ତୁ ଲକ୍ଷ ଲକ୍ଷ ଲୋକ ଯେପରି ଅଳ୍ପ କିଛି ଖାଇ ଘର ଭିତରେ ପଡ଼ିଛନ୍ତି, ଏମାନଙ୍କୁ କ'ଣ ସେପରି ଭାବରେ ରଖିପାରନ୍ତୁ ନାହିଁ? ଏମାନେ ତ ଉପାସରେ ରହୁନାହାନ୍ତି, କିଛି ନା କିଛି ଖାଇ ବଞ୍ଚୁଛନ୍ତି ଏବଂ ସେମାନଙ୍କୁ ସହରର ଲୋକେ ପୋଷୁଛନ୍ତି। ଖାଲି ଏପରି ଭାବରେ ଆମେ ଯୋଜନା କରିପାରନ୍ତୁ ଯେ ସେହି ଖାଇବା ଗଣ୍ଡାକ କାର୍ଯ୍ୟକ୍ଷମ ଭିକାରୀଙ୍କୁ କୌଣସି କାମ ପ୍ରତିପାଦନରେ ଦିଅନ୍ତୁ ଏବଂ ସଂପୂର୍ଣ୍ଣ ଅକର୍ମଣ୍ୟମାନଙ୍କୁ ବିଶ୍ରାମାଗାରରେ ରଖି କିଛି ଖାଇବାକୁ ଦିଅନ୍ତୁ। ଆଇନ ବଳରେ ଏହାକୁ ସହରରେ ବନ୍ଦ କରି ଦିଅନ୍ତୁ। ସମାଜସେବୀଙ୍କ ସାହାଯ୍ୟରେ ସେମାନଙ୍କୁ ଥଇଥାନ କରନ୍ତୁ। ଆମେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ କରି ଶିଳ୍ପ ପ୍ରତିଷ୍ଠାନମାନ କରିପାରିଲେ, ଅଜସ୍ର ଟଙ୍କା ଖର୍ଚ୍ଚ କରି ରାଜଆଡ଼ମ୍ବରପୂର୍ଣ୍ଣ ରାଜଭବନ କରିପାରିଲେ, ଲକ୍ଷ ଲକ୍ଷ ଟଙ୍କା ବୁଣି ଅଭ୍ୟର୍ଥନା ସଭାମାନ କରିପାରୁଛୁ, ଅଥଚ ଏତକ କରିପାରନ୍ତେ ନାହିଁ, ନିଶ୍ଚୟ ପାରନ୍ତେ, କିନ୍ତୁ ଆମମାନଙ୍କର ଦୃଷ୍ଟି ସାମନ୍ତବାଦୀ ଆଡ଼ମ୍ବର ଉପରେ ରହିଛି, ରାସ୍ତାକଡ଼ ମଣିଷଙ୍କ ଉପରେ ପଡ଼ିପାରୁନାହିଁ।

ସହରର ରାସ୍ତାକଡ଼ରେ କୁଷ୍ଠ ରୋଗୀମାନଙ୍କର ଯେଉଁ କରୁଣ ଘରକରଣା, ସେ ବିଷୟରେ ଆମର ଦୃଷ୍ଟି ନ ପଡ଼ିବାଠାରୁ ସାମାଜିକ ଉଦାସୀନତା, ବ୍ୟକ୍ତିଗତ ନିର୍ଦ୍ଦୟତା ଓ ନୀତିଗତ ଭଣ୍ଡାମି ଛଡ଼ା ଆଉ କ'ଣ ହୋଇପାରେ? ବିଦେଶରୁ ଆସିଥିବା ବିରାଟ ଗାଡ଼ିରେ ଆମର ରାଷ୍ଟ୍ରପତି ନ ବସିଲେ କୁଆଡ଼େ ଆମର ମାନ ସମ୍ମାନରେ ଆଞ୍ଚ ଆସିବ; କିନ୍ତୁ ରାସ୍ତା କଡ଼ର ଏ ଦୃଶ୍ୟରେ ଆମର କୌଣସି ଅସମ୍ମାନ ହୁଏନାହିଁ। ଏ ପ୍ରକାର ସାମାଜିକ ବାତୁଳତା ଓ ନୀତିଗତ ପ୍ରବଞ୍ଚନା ଭିତରେ ଯେଉଁ ଦୃଷ୍ଟିକୋଣ କାମ କରୁଛି, ତାହା ଜନକଲ୍ୟାଣ ସମାଜର ମୂଳଭିତ୍ତି ସ୍ଥାପନ କରିବାରେ ସଂପୂର୍ଣ୍ଣ ଅସମର୍ଥ ବୋଲି ମନେହୁଏ।

ଏ ପ୍ରକାର ଚିରାଚରିତ ଅମାନବୀୟ ଓ ଅମର୍ଯ୍ୟାଦାକର ଦୃଶ୍ୟ ଦେଖିଥିଲାବେଳେ ଲୋକଙ୍କଠାରେ ପ୍ରେରଣା କିପରି ଦେଖାଦେବ? ତେଣୁ ଦିଲ୍ଲୀ, ଭୁବନେଶ୍ୱରଠାରେ ତିଆରି ହେଉଥିବା ଯୋଜନାର ପୃଷ୍ଠାରେ ଭିକାରୀର ମ୍ଲାନ ଦୃଷ୍ଟି ଓ ରାସ୍ତାକଡ଼ ଅଥର୍ବର କରୁଣ ଛାପ ନ ପଡ଼ିଲା ଯାଏଁ, କେବଳ ବାହାରର ଲୋକଙ୍କର ପ୍ରଶଂସାପତ୍ର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ଚନ୍ଦନ କାଠ ବାକ୍ସ ଭିତରେ ରାଷ୍ଟ୍ରପତି ଭବନରେ ଶୋଭା ପାଇପାରେ; କିନ୍ତୁ ସାଧାରଣ ମନୁଷ୍ୟର ମନକୁ ଏହା ସ୍ପର୍ଶ କରିପାରିବ ନାହିଁ ଏବଂ ଏହି ପ୍ରଶ୍ନ ଶତ ମୁଖରେ ନ ଉଠିଲା ଯାଏଁ ଗଣତାନ୍ତ୍ରିକ ସାମାଜିକ ସଂସ୍ଥାର କୌଣସି ମୂଲ୍ୟ ନାହିଁ ବୋଲି ଭାବିବାକୁ ହେବ। ■□■

# ସମାଜ ଓ ବିଜ୍ଞାନ

ବିଜ୍ଞାନକୁ ବିଶେଷ ଜ୍ଞାନ ଦୃଷ୍ଟିରୁ ଅତି ବ୍ୟାପକ ଭାବରେ ଅର୍ଥ କଲେ ମନୁଷ୍ୟର ସହଜାତ କୌତୂହଳାଭିଭୂତ ଅନୁଭୂତି ସଙ୍ଗେ ସମାନ ହୋଇ ପାରେ। ତା' ହେଲେ ମନୁଷ୍ୟର ଚେତନା ଶକ୍ତିର ଆବିର୍ଭାବ ଓ ଚିନ୍ତାଧାରାର ବହିଃପ୍ରକାଶ ସଙ୍ଗେ ବିଜ୍ଞାନର ସୃଷ୍ଟି ସମ୍ଭବ ହୋଇଛି ବୋଲି ଭାବିବାକୁ ହେବ। କିନ୍ତୁ ଆଧୁନିକ ବିଜ୍ଞାନର କାର୍ଯ୍ୟକାରୀ ବ୍ୟାଖ୍ୟା ବା ବର୍ଣ୍ଣନା ଦୃଷ୍ଟିରୁ ଦେଖିଲେ ଏହାର ଧାରାବାହିକ କ୍ରମ ବିକାଶ ପ୍ରାୟ ତିନିଶହ ବର୍ଷ ହେଲା ହୋଇଛି ବୋଲି କହିଲେ ଚଳେ। ଅଭିକ୍ରିୟାସିଦ୍ଧ ଯେଉଁ ସୁନିୟନ୍ତ୍ରିତ ବାସ୍ତବ ଜ୍ଞାନ ଯୋଗୁଁ ବିଜ୍ଞାନର ପରିସର ଆଜି ଏତେ ବେଶି ବୃଦ୍ଧିପାଇଛି, ସେ ପ୍ରକାର ସୁବ୍ୟବସ୍ଥିତ ଚିନ୍ତାଧାରାର ତାତ୍ତ୍ୱିକ ମୂଳଭିତ୍ତି ୟୁରୋପୀୟ ଦେଶମାନଙ୍କରେ ପ୍ରଥମେ ସାମାଜିକ ଦୃଷ୍ଟିକୋଣରୁ ସ୍ଥାପିତ ହେଲା ଏବଂ ଏହି ମୂଳଭିତ୍ତିର ପରିବ୍ୟାପ୍ତି ଓ ଦୃଢ଼ତା ସେହି ଦେଶ ଗୁଡ଼ିକର ତତ୍କାଳୀନ ସାମାଜିକ ପରିସ୍ଥିତି ଯୋଗୁଁ ସମ୍ଭବ ହୋଇ ପାରିଲା। ଆନ୍ତର୍ଜାତୀୟ ନୌବାଣିଜ୍ୟ ଯୋଗୁଁ ଇଂଲଣ୍ଡ ପ୍ରଚୁର ଧନର ଅଧିକାରୀ ହେବା ଯୋଗୁଁ ସେଠାରେ ଶିଳ୍ପବିପ୍ଳବ ଦେଖାଦେଲା ଏବଂ ଏହି ଶିଳ୍ପବିପ୍ଳବ ବିଜ୍ଞାନ ଯୋଗୁ ହିଁ ସମ୍ଭବ ହେଲା। ଏହା ତତ୍କାଳୀନ ସମାଜ ବିଜ୍ଞାନର ସୃଷ୍ଟି ଓ ପରିବୃଦ୍ଧି କରାଇ ପାରିଲା ଏବଂ ବିଜ୍ଞାନର ଅଭିବୃଦ୍ଧି ସେଠାକାର ସାମାଜିକ ସଂସ୍ଥାକୁ ମଧ୍ୟ ଓଲଟ ପାଲଟ କରାଇଦେଲା। ମହାପ୍ରତାପଶାଳୀ ରାଜା ଓ ଅତି ଦୁର୍ଦ୍ଧର୍ଷ ସାମନ୍ତମାନଙ୍କ ଅପେକ୍ଷା ଇଷ୍ଟ୍ ଇଣ୍ଡିଆ କମ୍ପାନୀ ପରି କମ୍ପାନୀମାନଙ୍କର ପୁଞ୍ଜିପତି ଦଳ ବେଶି ଶକ୍ତିଶାଳୀ ହୋଇ ଉଠିଲେ। ବ୍ରିଟିଶ୍ ସାମ୍ରାଜ୍ୟ ସ୍ଥାପିତ ହେଲା, ପୁଞ୍ଜିପତି ଧନ କୁବେରଙ୍କ ଦ୍ୱାରା। ଖାଲି ଗୋଟିଏ ଦେଶ ନୁହେଁ, ପୃଥିବୀର ବହୁ ଦେଶ ବିଜ୍ଞାନ ବଳରେ ଉଣା ଅଧିକେ ବଦଳିଗଲେ। ଏହା ବଳରେ ଇଂଲଣ୍ଡ ସାମ୍ରାଜ୍ୟବାଦୀ ଦେଶ ହେଲା ଓ ଭାରତ ସେଥିଯୋଗୁଁ ପରାଧୀନ ହୋଇ ପଡ଼ିଲା।

ଏ ପ୍ରକାର ବିଜ୍ଞାନ ବା ବୈପ୍ଳବିକ ଦୃଷ୍ଟିକୋଣ ଓ ବିଚାର ପଦ୍ଧତି ଫଳରେ ପୁରାତନ ଓ ନୂତନ ପ୍ରସ୍ତର ଯୁଗର ପାଞ୍ଚଲକ୍ଷ ବର୍ଷ ଭିତରେ ମଣିଷ ଯେତେ ଆଗକୁ ଯାଇପାରି ନଥିଲା, ପଚାଶ ବର୍ଷ ଭିତରେ ତା'ଠାରୁ ବେଶି ଜ୍ଞାନ ଓ ତତ୍ଜନିତ ସାମାଜିକ ପରିବର୍ତ୍ତନ ଓ ବୈଷୟିକ ସୁଖ ସମୃଦ୍ଧିର ଅଧିକାରୀ ହୋଇପାରିଲା। ବୈଜ୍ଞାନିକ ଅଭିବୃଦ୍ଧି ଏପରି କ୍ରମବର୍ଦ୍ଧିଷ୍ଣୁ ଜ୍ୟାମିତିକ ରୀତିରେ ପରିଚାଳିତ ଯେ ଗତ ଦଶବର୍ଷ ଭିତରେ ଆମେ ଯେତେ ବେଶି ଜ୍ଞାନ ଅର୍ଜନ କରିପାରିଛୁ, ପୂର୍ବ ଶହେ ବର୍ଷ ଭିତରେ ବି ତାହା ସମ୍ଭବ ହୋଇ ପାରିନଥିଲା ଏବଂ ଆସନ୍ତା ଏକ ବର୍ଷ ଭିତରେ ଯାହା ସମ୍ଭବ, ଗତ ଦଶ ବର୍ଷରେ ମଧ୍ୟ ତାହା ସମ୍ଭବ

ହୋଇ ପାରି ନଥିବ। ମନୁଷ୍ୟର ବୌଦ୍ଧିକ ବିକାଶ ଓ ସମାଜର ଅସଂଖ୍ୟ ଦିଗ ପରିବ୍ୟାପ୍ତ ଓ କ୍ରମବର୍ଦ୍ଧିଷ୍ଣୁ ବିଜ୍ଞାନ ମାନବ ସମାଜକୁ ନାନାଭାବରେ ଆନ୍ଦୋଳିତ କରି ଚାଲିଛି ଏବଂ ସମାଜର ବିଭିନ୍ନ ସଂସ୍ଥା ଓ ସଭ୍ୟତାର ଭିନ୍ନ ଭିନ୍ନ ଅବସ୍ଥା ଉପରେ ମଧ୍ୟ ଏହାର ଗତି, ଦିଗ ଓ ରୂପ ନିର୍ଭର କରି ଆସିଛି।

ଯେଉଁ ସମାଜ ଯେପରି ଭାବରେ ବିଜ୍ଞାନର ଅତିଦ୍ରୁତ ଜୟଦ୍ରଥ ରଥର ବାଧାହୀନ ଅଗ୍ରଗତି ପାଇଁ ରାସ୍ତା ବାନ୍ଧି ଦେଇଛି, ସେହି ସମାଜରେ ଆଶାତୀତ ଭାବରେ ବହୁତ ଆଗରେ ଯାଇ ବିଜ୍ଞାନ ପହଞ୍ଚିବ ଯାଇଛି। ସିଧା ସଳଖ ପ୍ରଶସ୍ତ ପିଚ୍ ରୋଡ଼ରେ ମଟର ଗାଡ଼ି ଯେପରି ତୀରବେଗରେ ଛୁଟି ପାରିବ, ସହରର ଗଳି ଭିତରେ ତ ସେପରି ଯାଇ ପାରିବ ନାହିଁ? ସେହିପରି ରୁଷିଆ, ଆମେରିକାରେ ବିଜ୍ଞାନ ଯାହା କରିପାରିବ, ବର୍ତ୍ତମାନ ଭାରତରେ ତାହା କିପରି ସମ୍ଭବ ହୋଇ ପାରିବ ? ତେଣୁ ସାମାଜିକ ପରିସ୍ଥିତି ଉପରେ ବିଜ୍ଞାନର ରୂପରେଖ ବହୁ ପରିମାଣରେ ନିର୍ଭର କରେ। ଯେଉଁ ସାମାଜିକ ସଂସ୍ଥା ବିଜ୍ଞାନକୁ ସାମାଜିକ ତଥା ବ୍ୟକ୍ତିଗତ ଜୀବନର ଗୋଟିଏ ଓ ଅପରିହାର୍ଯ୍ୟ ଅଙ୍ଗ ହିସାବରେ ଗ୍ରହଣ ନ କରି ପାରିଛି, ସେହି ସାମାଜିକ ପରିସ୍ଥିତିରେ ଜୀବନ୍ତ ବିଜ୍ଞାନର ବହୁମୁଖୀ ଆତ୍ମପ୍ରକାଶ ହୋଇ ପାରିବନାହିଁ। ସରକାରୀ ସାହାଯ୍ୟରେ ବିରାଟ ବିଜ୍ଞାନ ମନ୍ଦିର ପ୍ରତିଷ୍ଠିତ ହୋଇପାରେ କିନ୍ତୁ ସାମାଜିକ ପ୍ରେରଣା ଅଭାବରୁ ତାହା ଗବେଷଣା ମନ୍ଦିର ନ ହୋଇ ପ୍ରଚାର ମନ୍ଦିର ହୋଇ ରହିପାରେ। ହଜାର ହଜାର ବୁଦ୍ଧିଜୀବୀ ବାହାର ଦେଶର ବିଜ୍ଞାନ ଶିକ୍ଷାରେ ପାରଦର୍ଶିତା ଲାଭକରି ସେହି ଡିଗ୍ରୀବଳରେ ମୋଟା ଦରମା ନେଇ ବଡ଼ଲୋକ ହୋଇପାରନ୍ତି, କିନ୍ତୁ ସେହିମାନଙ୍କ ଯୋଗୁ ହିଁ ବିଜ୍ଞାନର ଅଗ୍ରଗତି ପରିବର୍ତ୍ତେ ଅବନତି ଘଟିପାରେ। ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ ବା ଇଞ୍ଜିନିୟରିଂରେ ମୌଳିକ ଗବେଷଣା କରି ଡକ୍ଟରେଟ୍ ଉପାଧି ପାଇଲାପରେ ଜିଲା ମାଜିଷ୍ଟ୍ରେଟ୍, ସରକାରୀ ସେକ୍ରେଟେରୀ ବା କଲେଜ ଅଧ୍ୟକ୍ଷ ହେବା ଯେଉଁ ଦେଶରେ ଯେତେ ସୁବିଧା,ସେହି ଦେଶରେ ବିଜ୍ଞାନର ଉନ୍ନତିରେ ସେତେ ବେଶି ଅସୁବିଧା ବୋଲି ବୁଝିବାକୁ ହେବ।

ରୁଷ୍ ଓ ଆମେରିକା ପ୍ରଭୃତି ବିଜ୍ଞାନପ୍ରେମୀ ଦେଶମାନଙ୍କରେ ଅଧିକାଂଶ ଲୋକଙ୍କର ବୈଜ୍ଞାନିକ ର ବିଜ୍ଞାନର ପ୍ରଭାବ ବହୁତ ବେଶି। ସକାଳୁ ଉଠିଲା ବେଳୁ ରାତିରେ ଶୋଇବାକୁ ଗଲାଯାଏ ଏବଂ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟ ଓ ପ୍ରତ୍ୟେକ ପରିସ୍ଥିତିରେ ଆବାଳ-ବୃଦ୍ଧ-ବନିତା ବିଜ୍ଞାନର ଅସଂଖ୍ୟ ଚିନ୍ତାଧାରା ଦ୍ୱାରା କେବଳ ଅନୁପ୍ରାଣିତ ନୁହଁନ୍ତି, ବାସ୍ତବ ଦୁନିଆର ପ୍ରତ୍ୟେକ କ୍ଷେତ୍ରରେ ବିଜ୍ଞାନ-ପ୍ରସୂତ ଫଳାଫଳ ଦ୍ୱାରା ପ୍ରତି ମୁହୂର୍ତ୍ତରେ ପ୍ରଭାବିତ ମଧ୍ୟ। ବିଜ୍ଞାନକୁ ଛାଡ଼ି ସେମାନଙ୍କ ପକ୍ଷରେ ଚଳିବା ଅସମ୍ଭବ। ସେମାନଙ୍କର ସାମାଜିକ ଆଦର୍ଶ ବିଜ୍ଞାନର ରଙ୍ଗରେ ରଂଜିତ। ଦୈନନ୍ଦିନ ଚିନ୍ତାଧାରା ବିଜ୍ଞାନ ଦ୍ୱାରା ପ୍ରଭାବିତ ଏବଂ ଏହା ଜୀବନର

ଗୋଟିଏ ଅବିଚ୍ଛେଦ୍ୟ ଅଂଶ। ତେଣୁ ସେଠାରେ ବିଜ୍ଞାନର ଏ ପ୍ରକାର ଅଭୂତପୂର୍ବ ଉନ୍ନତି। କିନ୍ତୁ ଆମଦେଶର ଜନସାଧାରଣ ଯେ କେବଳ ବିଜ୍ଞାନର ବହୁତ ଦୂରରେ ତା'ନୁହେଁ, ଆମର ବୁଦ୍ଧିଜୀବୀ ଓ ନେତୃସ୍ଥାନୀୟ ଶିକ୍ଷିତ ଲୋକେ ମଧ୍ୟ ବିଜ୍ଞାନ ସମ୍ବନ୍ଧରେ ବିଶେଷ ଭାବରେ ଅନୁପ୍ରାଣିତ ପରି ମନେ ହୁଅନ୍ତି ନାହିଁ କି ବିଜ୍ଞାନ-ସିଦ୍ଧ ଜ୍ଞାନ ପ୍ରତି ଅଖଣ୍ଡ ବିଶ୍ୱାସ ଓ ପ୍ରଗାଢ଼ ଅନୁରକ୍ତି ଏମାନଙ୍କର ଥିଲାପରି ମନେ ହୁଏନାହିଁ। ଅନ୍ୟାନ୍ୟ ସାମାଜିକ କ୍ଷେତ୍ରରେ ଯେପରି ଶିକ୍ଷିତ ଲୋକମାନଙ୍କର ମନ ଦୁଇ ବା ତତୋଽଧିକ ବିରୁଦ୍ଧାତ୍ମକ ବିଭକ୍ତ ଅଂଶରେ (Split mind) ଦେଖାଯାଏ, ବିଜ୍ଞାନ ସମ୍ବନ୍ଧରେ ମଧ୍ୟ ସେହିପ୍ରକାର ଅସ୍ୱାଭାବିକ ଦୃଷ୍ଟିକୋଣ ପ୍ରକାଶ ପାଇଥାଏ। ସଭାରେ, କ୍ଲାସ ଭିତରେ, ବିଧାନସଭାରେ ବିଜ୍ଞାନର ଉନ୍ନତି ଲାଗି ଅତିଶୟ ଶ୍ରଦ୍ଧା ବକ୍ତାମାନଙ୍କଠାରେ ପ୍ରକାଶ ପାଇଥାଏ କିନ୍ତୁ ବାହାରକୁ ଆସିଲା କ୍ଷଣି ସେ ପ୍ରକାର ମନୋଭାବ କେଉଁଅଡ଼େ ଲୁଚିଯାଏ ଏବଂ ପୁରାତନ ସମାଜ ଓ ପରିବାର ଭିତର ଦେଇ ଗଢ଼ିଉଠିଥିବା ଆଉ ଗୋଟିଏ ମନ କ୍ଲାସରୁମ୍ ଭିତରେ ଗଢ଼ିଉଠିଥିବା ପଲ୍ଲବଗ୍ରାହୀ ମନକୁ ପୁରାତନ ସଂସ୍କାର ବା କୁସଂସ୍କାର ଦ୍ୱାରା ପୂରାପୂରି ଆଚ୍ଛାଦିତ କରି ପୁଣି ସହଜଭାବେ ଆତ୍ମପ୍ରକାଶ କରେ। ଯେଉଁ ଶିକ୍ଷିତ ଲୋକ ମହଣ ମହଣ ଘିଅ ନିଆଁରେ ଢ଼ାଳି ଦେବାକୁ କୁଣ୍ଠାବୋଧ କରେ ନାହିଁ, ସେ କେବେହେଲେ ସରକାରଙ୍କୁ କହେ କି କ୍ଷୁଦ୍ର ଜଳସେଚନ ବିଭାଗରେ କେତେକ ଅର୍ଥ ଯଜ୍ଞ ଲାଗି ଅଲଗା କରି ରଖିବା ପାଇଁ? ଯେଉଁ ଶାସକ ବା ଯେଉଁ ଡ଼ାକ୍ତର ବାବା ଓ ଗୁଣିଆମାନଙ୍କ ପାଖକୁ ଦୌଡ଼ିଯାଏ ଔଷଧ ପାଇଁ, ସେ ନିଶ୍ଚୟ ଲୁଚିକରି ଯାଏ ବା ପର୍ଯ୍ୟବେକ୍ଷକ ହିସାବରେ ଅବସ୍ଥା ଲକ୍ଷ୍ୟ କରିବା ବାହାନା କରି ବାହାରେ। ଯେ ଲୋକମାନଙ୍କ ଆଗରେ ପଞ୍ଚବାର୍ଷିକ ଯୋଜନା ଫଳରେ ଦେଶର ପରିସ୍ଥିତିର ଆମୂଳ ପରିବର୍ତ୍ତନ, ସାମାଜିକ ଦୋଷଦୁର୍ବଳତା ଓ ବ୍ୟକ୍ତି ବିଶେଷର ଦୁଃଖ ଦୁର୍ଦ୍ଦଶା ସମ୍ପୂର୍ଣ୍ଣ ଭାବରେ ଦୂରୀକରଣର ଆଶୁ ସମ୍ଭାବନା ବିଷୟରେ ବକ୍ତୃତା କରି ଲୋକଙ୍କର ଆତ୍ମଶକ୍ତି ବୃଦ୍ଧି ଲାଗି ଓଜସ୍ୱିନୀ ଭାଷାରେ ପ୍ରେରଣା ଦିଏ, ସେ ନିଜେ ପ୍ରତି ଘଟଣାରେ କର, କୋଷ୍ଠୀ, କପାଳରେ ବିଶ୍ୱାସ କରେ। ଏ ପ୍ରକାର ପରସ୍ପର ବିରୋଧୀ ମନୋଭାବ-ସଂପନ୍ନ ଲୋକମାନଙ୍କ ଦ୍ୱାରା ବିଜ୍ଞାନର ଉନ୍ନତି ଅସମ୍ଭବ। ଏ ପ୍ରକାର ଲୋକ ଯେଉଁ ସମାଜରେ ଯେତେ ବେଶି, ସେହି ସମାଜରେ ସେହି ପରିମାଣରେ ଆତ୍ମବିଶ୍ୱାସର ମାତ୍ରା କମ୍।

ସାମାଜିକ ଦୃଷ୍ଟିକୋଣରୁ ଆମ ଦେଶ ବର୍ତ୍ତମାନ ଏ ପ୍ରକାର ଗୋଟିଏ ପରିସ୍ଥିତି ଭିତର ଦେଇ ଗତି କରୁଛି। ବିଜ୍ଞାନରେ ଅଖଣ୍ଡ ଆତ୍ମବିଶ୍ୱାସ ଓ ପ୍ରେରଣା ଅଭାବରୁ ବିଜ୍ଞାନ ସପକ୍ଷରେ ଯେତେ ବକ୍ତୃତା ହେଲେ ସୁଦ୍ଧା ସାମାଜିକ ଜୀବନରେ ଏହାର ପ୍ରଭାବ ଖୁବ୍ ବେଶି ନୁହେଁ। ତା' ନ ହୋଇଥିଲେ ଆମ୍ଭେମାନେ ପ୍ରତିବର୍ଷ ବିଭିନ୍ନ ତଥାକଥିତ ସଂସ୍କୃତି ମେଳାରେ ଯେତେ ଟଙ୍କା ଖର୍ଚ୍ଚ କରୁଛେ, ଅନ୍ତତଃ

ସେତିକ ଟଙ୍କା ଓ ସମୟ ବିଜ୍ଞାନର ଉନ୍ନତି ଓ ପ୍ରଚାର ପ୍ରଭୃତିରେ ନିଶ୍ଚୟ ଖର୍ଚ୍ଚ କରନ୍ତୁ। ବିଜ୍ଞାନ ପ୍ରତିଷ୍ଠା କରି ଚାକିରିଆ ସୃଷ୍ଟି କରିବାରେ ଯେତେ ତତ୍ପର ହୁଅନ୍ତୁ, ତାଁଠାରୁ ବେଶି ତତ୍ପର ହୁଅନ୍ତୁ ବିଜ୍ଞାନର ଗବେଷଣା ଲାଗି। ଅନ୍ୟାନ୍ୟ କର୍ମଚାରୀ ପରି ବିଜ୍ଞାନୀର ଘନଘନ ନମସ୍କାର ଓ ଚାଟୁବାକ୍ୟ ଅପେକ୍ଷା ତା'ର ବୈଜ୍ଞାନିକ ଗବେଷଣା ଏବଂ ବିଜ୍ଞାନ ପ୍ରତି ନିଷ୍ଠା ପ୍ରତି ବେଶି ଦୃଷ୍ଟି ଦିଅନ୍ତୁ। ବିଜ୍ଞାନୀର କାର୍ଯ୍ୟ ଓ ସାମାଜିକ ମାନସମ୍ମାନ କେବଳ ଗବେଷଣା ଉପରେ ନିର୍ଭର କରନ୍ତା; ତା'ର ମୁଣ୍ଡର ପରିପକ୍ୱ କେଶ ବା ମସ୍ତକର କେଶହୀନ ସୁଚିକ୍କଣ ଅଂଶ ଉପରେ ନିର୍ଭର କରନ୍ତା ନାହିଁ; ମୋଟାମୋଟି ବିଜ୍ଞାନାନୁପ୍ରାଣିତ ସମାଜର ସମସ୍ତ ଶିକ୍ଷାପଦ୍ଧତି, ସାମାଜିକ ମୂଲ୍ୟ ନିର୍ଦ୍ଧାରଣ ମାନ ଓ ଚିନ୍ତାଧାରା ଆମ ସମାଜରେ ପ୍ରଚଳିତ ସାମାଜିକ ପଦ୍ଧତିଠାରୁ ସଂପୂର୍ଣ୍ଣ ଅଲଗା ହୋଇ ଯାଆନ୍ତା।

ଯେଉଁ ଶିକ୍ଷିତ ସଂପ୍ରଦାୟଙ୍କର ଦ୍ୱିବିଭକ୍ତ ମନୋଭାବ ଯୋଗୁଁ ବିଜ୍ଞାନର ଆଜି ଏ ଦୁରବସ୍ଥା, ସେମାନଙ୍କ ଦ୍ୱାରା ହିଁ ଏହାର ପରିବର୍ତ୍ତନ ସମ୍ଭବ, କିନ୍ତୁ ସେମାନଙ୍କ ଉପରେ ଏହାର ସଂପୂର୍ଣ୍ଣ ଦାୟିତ୍ୱ ଛାଡ଼ିଦେଲେ ଏପରି ଦୁରବସ୍ଥା ବହୁଦିନ ପର୍ଯ୍ୟନ୍ତ ରହିଯାଇପାରେ। ସୌଭାଗ୍ୟବଶତଃ ଆମ ଦେଶରେ ଗଣତାନ୍ତ୍ରିକ ମୂଳଭିତ୍ତିରେ ସାମାଜିକ ସଂସ୍ଥା ପ୍ରତିଷ୍ଠିତ ହୋଇଛି। ତେଣୁ କୌଣସି ଗୋଟିଏ ଦଳବିଶେଷ ବା ଗୋଷ୍ଠୀ ବେଶିଦିନ ପର୍ଯ୍ୟନ୍ତ ସେମାନଙ୍କର ଅବୈଜ୍ଞାନିକ ରାଜତ୍ୱ ଚଳାଇ ପାରିବେ ନାହିଁ। ଅନ୍ୟମାନଙ୍କର ଚାପ ଓ ଦାବୀ ଫଳରେ ଶିକ୍ଷିତ ସଂପ୍ରଦାୟ ଆହୁରି ବେଶି ବେଶି ଜାଗ୍ରତ। ନିମ୍ନତମ ଶ୍ରେଣୀ ସଂସ୍ଥାରୁ ବହୁ ଲୋକେ ନୂତନ ଆତ୍ମଚେତନା ଓ ଆତ୍ମପ୍ରତ୍ୟୟର ଅଧିକାରୀ ହୋଇ ଏମାନଙ୍କୁ ପଛରେ ପୋପାଡ଼ି ଦେଇ ଆଗେଇ ଯିବାର ସମ୍ଭାବନା ମଧ୍ୟ ଅଛି; କାରଣ ବର୍ତ୍ତମାନ ଆନ୍ତର୍ଜାତିକ ସାମାଜିକ ପରିସ୍ଥିତି ଯେପରି, ସେଥିରେ କୌଣସି ଗୋଟିଏ ସମାଜର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସଂପ୍ରଦାୟ ଦ୍ୱାରା ବିଜ୍ଞାନ ଅସ୍ୱାଭାବିକ ଓ ଅବୈଜ୍ଞାନିକ ପ୍ରଣାଳୀ ଦ୍ୱାରା ବେଶୀଦିନ ନିୟନ୍ତ୍ରିତ ହୋଇ ନ ପାରେ। ସ୍କୁଲ କଲେଜର ଦୋଷଯୁକ୍ତ ଓ ସଂକୀର୍ଣ୍ଣ ପୁସ୍ତକଗତ ବିଜ୍ଞାନ ଶିକ୍ଷାକ୍ରମ ଉପରେ ବିଜ୍ଞାନ ଶିକ୍ଷା ଆବଦ୍ଧ ହୋଇ ରହି ନ ପାରେ। ଶିଶୁ ଆଧୁନିକ ବିଜ୍ଞାନ-ଜଗତରେ ଜନ୍ମହେଲା ପରଠାରୁ ବିଜ୍ଞାନ ଶିକ୍ଷା ପାଇବାକୁ ବାଧ୍ୟ ଏବଂ ଏ ଦିଗରେ ଶିକ୍ଷକ ଠାରୁ ଯଥେଷ୍ଟ ଉତ୍ସାହ ନ ପାଇଲେ ମଧ୍ୟ ମନୁଷ୍ୟ ପ୍ରେରିତ କୃତ୍ରିମ ଚନ୍ଦ୍ରଠାରୁ ସେ ପାଇବ ଅସୀମ ଆନନ୍ଦ ଓ ପ୍ରେରଣା। ତେଣୁ ନୂତନ ଢାଞ୍ଚାରେ ସମାଜ ଗଢ଼ି ଉଠିବାକୁ ବାଧ୍ୟ।

ଦେଖାଯାଉ, ଆମର ଶିକ୍ଷିତ ସଂପ୍ରଦାୟ ପ୍ରଗତିଶୀଳ ବିଜ୍ଞାନ ଚାଳିତ ଐତିହାସିକ ରଥର ଗୌରବାନ୍ୱିତ ଚାଳକ ହିସାବରେ ଏକ ବିଂଶଶତାବ୍ଦୀ ମାନବ ଜାତିର କଳ୍ପିତ ସୁଖସମୃଦ୍ଧ ରାଜ୍ୟରେ ଗର୍ବ, ଦମ୍ଭ ଓ ବଳିଷ୍ଠ ଆତ୍ମବିଶ୍ୱାସ ସହ ଯାଇ ପହଞ୍ଚିବ ନା ଆତ୍ମବିଶ୍ୱାସହୀନ ଦୁର୍ବଳ ମନୋଭାବାପନ୍ନ ବିଶ୍ୱନିନ୍ଦୁକ ହିସାବରେ ଅଗ୍ରଗାମୀ ରଥର ପୃଷ୍ଠଦେଶରେ ପରାସ୍ତ ସୈନିକ ପରି ଟାଣି ଓଟାରି ହୋଇ ଚାଲିଥିବ। ■□■




# ନାରୀ ଜାତିର ସମ୍ମାନ ଓ ସ୍ୱାଧିକାର ଲାଗି ଲେଖକର ଅବଦାନ

ଯେକୌଣସି ପରିବର୍ତ୍ତନଶୀଳ ସମାଜରେ ପରସ୍ପର ବିରୋଧୀ ଓ ସଂଘର୍ଷାତ୍ମକ ସମସ୍ୟା ବିଷୟରେ ଲେଖକକୁ ଲେଖିବାକୁ ହେଲେ ତାକୁ ସେ ବିଷୟରେ ଗୋଟିଏ ବଳିଷ୍ଠ ଆଦର୍ଶଗତ ନୀତି ଗ୍ରହଣ କରିବାକୁ ହେବ। ସମାଜର ଅର୍ଥନୈତିକ ଓ ସାଂସ୍କୃତିକ ରୀତିନୀତି ଏବଂ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ପାରସ୍ପରିକ ସମ୍ପର୍କ ସମ୍ବନ୍ଧୀୟ ସାମଗ୍ରିକ ପୃଷ୍ଠଭୂମି ବିଷୟରେ ତା'ର ଗଭୀର ସମ୍ବେଦନଶୀଳତା ରହିବା ଦରକାର। ତେଣୁ ନାରୀର ସମ୍ମାନ ଓ ସ୍ୱାଧିକାର ନେଇ ଲେଖିବାକୁ ହେଲେ ଲେଖକଠାରେ ଗୋଟିଏ ବଳିଷ୍ଠ ଆଦର୍ଶଗତ ଦିଗନ୍ତ ରହିଲେ ତା'ର ଲେଖନୀ ଶକ୍ତିଶାଳୀ ହୋଇପାରିବ ଏବଂ ତାର ସାହିତ୍ୟ ନୂତନ ଦିଗ୍‌ଦର୍ଶନ ଦେଇପାରିବ।

ସମାଜରେ ଯେକୌଣସି ବ୍ୟକ୍ତି ବା ଗୋଷ୍ଠୀ ଶ୍ରେଣୀ ବା ସମ୍ପ୍ରଦାୟର ଅର୍ଥନୈତିକ ସ୍ଥିତି ଯେତେ ବେଶି ଉଚ୍ଚରେ ସେ ସେତେ ବେଶି ସାମାଜିକ ସମ୍ମାନ ଓ ମର୍ଯ୍ୟାଦାର ଅଧିକାରୀ ହୋଇଥାଏ। ସମାଜର ନିମ୍ନ ଦେଶରେ ଥିବା ଲୋକଙ୍କର ଅଧିକାର ଆଇନାନୁବଦ୍ଧ ହୋଇଥିଲେ ସୁଦ୍ଧା ବହୁ ସମୟରେ ଏହା ଠିକ୍‌ଭାବରେ କାର୍ଯ୍ୟକାରୀ ହୋଇପାରେ ନାହିଁ। ସେମାନଙ୍କ ଉପରେ ବେଆଇନ ଅତ୍ୟାଚାର ଓ ଜୁଲୁମ ହେଲେ ମଧ ସମାଜରେ ତା'ର ତୀବ୍ର ପ୍ରତିକ୍ରିୟା ଦେଖାଯାଏ ନାହିଁ। ଏହା ସାଧାରଣତଃ ପୃଥିବୀର ସବୁ ସମାଜରେ ଦେଖାଯାଇଥାଏ, କିନ୍ତୁ ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଏପ୍ରକାର ସାମାଜିକ ଉଚ୍ଚ ନୀଚ ସମ୍ବନ୍ଧୀୟ ବାଛବିଚାର ନେଇ ସାରା ପୃଥିବୀରେ ବହୁ ପ୍ରକାରର ଆନ୍ଦୋଳନ ଦେଖାଦେଇଛି। ଅର୍ଥନୈତିକ ଓ ସାମାଜିକ ପାର୍ଥକ୍ୟ ଉପରେ ଆଧାରିତ ଆପେକ୍ଷିକ ବିଚାରଗତ କାର୍ଯ୍ୟକଳାପ ପରିବର୍ତ୍ତେ ଗୋଟିଏ ସାର୍ବଜନୀନ ମାନବୀୟ ଦୃଷ୍ଟିକୋଣର ପ୍ରବର୍ତ୍ତନ ପାଇଁ ନାନାଭାବରେ ପୃଥିବୀର ସବୁ ଦେଶ, ସବୁ ସମାଜ ତଥା ସମ୍ପ୍ରଦାୟ ଭିତରେ ଜାଗରଣ ଦେଖାଦେଇଛି। ଅଧିକାଂଶ ସମାଜରେ ନିମ୍ନ ସ୍ତରରେ ଥିବା ନାରୀ ଜାତିର ସମ୍ମାନ ଓ ଅଧିକାରର ସୁରକ୍ଷା ଏହି ବିରାଟ ବିଶ୍ୱବ୍ୟାପୀ ଚେତନ ଓ ବୌଦ୍ଧିକ ଆଲୋଡନର ଗୋଟିଏ ମୁଖ୍ୟ ଦିଗନ୍ତ ହିସାବରେ ସମଗ୍ର ମାନବ ସମାଜରେ ଗୃହୀତ ହୋଇଯାଇଛି।

ପ୍ରତ୍ୟେକ ମନୁଷ୍ୟର- ସେ ସ୍ତ୍ରୀ ହେଉ ବା ପୁରୁଷ ହେଉ– ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ– ତା'ର ସର୍ବବିଧ ବିକାଶଗତ କଲ୍ୟାଣ ସମାଜର ସମ୍ପୂର୍ଣ୍ଣ ଦାୟିତ୍ୱ ହିସାବରେ ଯେଉଁ ବଳିଷ୍ଠ ନୀତି ଗଢ଼ିଉଠିଛି ତାହା ପୁଞ୍ଜିପତି, ସାମ୍ୟବାଦୀ, ସାମନ୍ତବାଦୀ ଏବଂ ଧନୀ ତଥା ଉନ୍ନତିଶୀଳ ଦେଶମାନଙ୍କରେ ମୋଟାମୋଟିଭାବରେ ଗୋଟିଏ ସର୍ବସମ୍ମତ ସମାଜ ଦର୍ଶନ ହିସାବରେ ଗୃହୀତ ହୋଇଛି। ଏହି ପରିପ୍ରେକ୍ଷୀରେ ନାରୀ ସ୍ୱାଧୀନତା ଓ ତା'ର ସମାଜିକ ସମ୍ମାନ କଥା ନୂତନଭାବରେ ଦେଖାଦେଇଛି। ନାରୀ ହୋଇ ଜନ୍ମ ହେବା

ଫଳରେ ପିଲାଦିନୁ ମୃତ୍ୟୁ ଯାଏ ସେ ଯେପରି ଅନାଦୃତ ହୋଇ ରହିଛି– ଅନେକ ସମୟରେ ତା'ର ଜନ୍ମହେବା ସମ୍ଭାବନାକୁ ମଧ୍ୟ ଭ୍ରୂଣ ହତ୍ୟା ମାଧ୍ୟମରେ ରୋକି ଦିଆଯାଉଛି– ଜନ୍ମ ପରେ ସେ ପୁଅଠାରୁ କମ୍ ଆଦରଯତ୍ନ ପାଉଛି। ମନୁସଂହିତାର ପରମ୍ପରା ଅନୁଯାୟୀ ନାରୀ- ବିବାହ ପୂର୍ବରୁ ବା ପର ବିବାହ ପରେ ସ୍ୱାମୀର ଏବଂ ସ୍ୱାମୀ ପରେ ପୁଅର ହେପାଜତ ଦ୍ରବ୍ୟବୋଲି ବିବେଚିତ ହୋଇଆସୁଅଛି। ଝିଅ ବୋଲି ଉପଯୁକ୍ତ ଶିକ୍ଷାଦାନରୁ ତାକୁ ବଞ୍ଚିତ କରାହେଉଛି – ଶେଷରେ ଯୌତୁକ ବୋଝଜନିତ ଅତ୍ୟାଚାରର ସେ ଶିକାର ହେଉଛି। ଆମ ଦେଶରେ ବର୍ତ୍ତମାନ ସୁଦ୍ଧା ଏହି ନିଦାରୁଣ ପକ୍ଷପାତିତା ଚାଲିଆସିଛି।

କିନ୍ତୁ ଗୋଟିଏ ସ୍ୱତଃସିଦ୍ଧ ଆଦର୍ଶ ଯେ ସହଜରେ ସର୍ବସାଧାରଣଙ୍କ ଦ୍ୱାରା ଦୈନନ୍ଦିନ ଆଚରଣବିଧିରେ ସହଜରେ ପରିଣତ ହୋଇଯିବ, ତାହା ସମ୍ଭବ ନୁହେଁ। ଯୁଗଯୁଗ ଧରି ଯେଉଁ ଆଚାର ବିଚାର ଲୋକଙ୍କର ସାଂସ୍କୃତିକ ଚାଲିଚଳଣର ବିଶେଷ ଅଂଶରୂପେ ସ୍ୱୀକୃତି ପାଇଆସିଛି ଯାହା ଯୁଗଯୁଗବ୍ୟାପୀ ସାମାଜିକ ନୀତି ନିୟମ ଓ ବ୍ୟାବହାରିକ ଅଭ୍ୟାସରେ ରୂପାନ୍ତରିତ ହୋଇଯାଇଛି, ତାହାର ପରିବର୍ତ୍ତନ ବହୁ କଷ୍ଟସାଧ୍ୟ ଓ ସମୟସାପେକ୍ଷ। ନାରୀ ଜାତିର ନିମ୍ନ ସାମାଜିକ ଓ ଅର୍ଥନୈତିକ ଅଧିକାର ନେଇ ଏହିପରି ଗୋଟିଏ ଅଭ୍ୟାସଗତ ଆଚରଣ ଆମ ଦେଶରେ କାହିଁକି ବହୁଦେଶରେ ବର୍ତ୍ତମାନ ସୁଦ୍ଧା ଚାଲିଆସିଛି। ଏ କ୍ଷେତ୍ରରେ ବହୁ ପ୍ରକାରର କୁସଂସ୍କାରଗତ ଅଯୌକ୍ତିକ ବିଚାରଧର୍ମ ଓ ପାରମ୍ପରିକ ନିର୍ଦ୍ଦେଶନା ଓ ଅନୁଶାସନ ଆମର ଦୈନନ୍ଦିନ ଆଚାରବିଚାରକୁ ନିୟନ୍ତ୍ରଣ କରିଆସୁଛି। ତେଣୁ ବିଂଶ ଶତାବ୍ଦୀର ପ୍ରଗତିଶୀଳ ଦର୍ଶନ ଏ କ୍ଷେତ୍ରରେ ଆମକୁ ସହଜରେ ଅନୁପ୍ରାଣିତ କରିପାରୁନାହିଁ। ଆଦର୍ଶଗତ ପ୍ରେରଣା ଥିଲେ ମଧ୍ୟ କାର୍ଯ୍ୟ କ୍ଷେତ୍ରରେ ଆମର ବ୍ୟବହାର ବଦଳି ପାରୁନାହିଁ। ସାମାଜିକ ପରିସ୍ଥିତି ଓ ଭାରତୀୟ ଐତିହ୍ୟ ପ୍ରଭୃତିର ଆଳ ଦେଖାଇ ଆମେ ଭବିଷ୍ୟତକୁ ଅପେକ୍ଷା କରୁଛୁ। କାରଣ ବର୍ତ୍ତମାନ ଅବସ୍ଥାରେ ସଂପୂର୍ଣ୍ଣ ନାରୀ ସ୍ୱାଧୀନତା ଫଳରେ ସମାଜରେ ଅରାଜକତା ବ୍ୟାପିଯିବା କଥା ଆମେ କହୁଛୁ। ଅନେକ ନାରୀ ମଧ୍ୟ ଏ ପ୍ରକାର ଚିରାଚରିତ ମନୋବୃତ୍ତିର ଦୃଢ଼ ସମର୍ଥକ ହୋଇ ଠିଆ ହେଉଛନ୍ତି– ସେମାନେ ନାରୀ ହୋଇ ମଧ୍ୟ ନାରୀ ଜାତିର ଅକଥନୀୟ ଯନ୍ତ୍ରଣା ଲାଗି ଦାୟୀ ହେଉଛନ୍ତି। ଏପରି ପରିସ୍ଥିତିରେ ଆଦର୍ଶବାଦୀ ଲେଖକ ଓ ସମାଜ-ସେବୀଙ୍କର ଅଗ୍ରଧର୍ଷୀ କାର୍ଯ୍ୟକ୍ରମ ଗ୍ରହଣ କରିବା ଉଚିତ।

ଭାରତରେ ବିଭିନ୍ନ ସମୟରେ ଯେ ବହୁ ବିଦୂଷୀ ଶାସ୍ତ୍ରନିପୁଣା ରାଜନୀତିରେ ସିଦ୍ଧହସ୍ତା ନାରୀ ଦେଖାଦେଇ ନାହାନ୍ତି ତା'ନୁହେଁ, କିନ୍ତୁ ସେମାନଙ୍କର ସଂଖ୍ୟା ଏତେ ଅଳ୍ପ ଯେ ଆଜି ପର୍ଯ୍ୟନ୍ତ ଭାରତ କେବଳ ପୁରୁଷପ୍ରଧାନ ସାମାଜିକ ଓ ଅର୍ଥନୈତିକ ପରମ୍ପରା ସୃଷ୍ଟି କରିଆସିଛି। ଯେଉଁ ଆଦର୍ଶସ୍ଥାନୀୟା ସର୍ବଜନ ନମସ୍ୟା ନାରୀମାନଙ୍କର ନାମ ଆମ ସମାଜରେ ପ୍ରସିଦ୍ଧ, ସେମାନେ ବହୁତ ଶକ୍ତିଶାଳିନୀ ହୋଇଥିଲେ ସୁଦ୍ଧା ସେମାନେ କେବଳ ନାରୀ ହୋଇଥିବାରୁ ପୁରୁଷମାନଙ୍କଠାରୁ ବହୁ ନିର୍ଯ୍ୟାତନା ଭୋଗ କରିଛନ୍ତି ଏବଂ ସେ

ସମୟରେ ସମାଜ ତାକୁ ଧର୍ମଗତ ଅନୁମୋଦନ ଦେଇଆସିଛି । ସୀତା ମା' ବସୁନ୍ଧରାଙ୍କ କନ୍ୟା ହୋଇ ସୁଦ୍ଧା ତାଙ୍କର କଥାରେ ବିଶ୍ୱାସ ନକରି ରାମରାଜ୍ୟର ପ୍ରତିଷ୍ଠାତା ଶ୍ରୀରାମ ଦୁଇଦୁଇଥର ତାଙ୍କୁ ତାଙ୍କର ସତୀତ୍ୱ ପ୍ରମାଣ ଲାଗି ଅଗ୍ନି ପରୀକ୍ଷା ଦେବାକୁ କହିଥିଲେ । ଅନ୍ୟ କେହି ଜଣେ ବି ତା'ର ପ୍ରତିରୋଧ କରିନଥିଲେ । କିନ୍ତୁ ରାମ ସୀତାଙ୍କ ଅନୁପସ୍ଥିତିରେ ଅଲଗା ରହିଥିଲେ ସୁଦ୍ଧା ତାଙ୍କର ସତୀତ୍ୱ ପରୀକ୍ଷାର ଆବଶ୍ୟକତା ହେଲା ନାହିଁ । କାରଣ ସୀତା ବର୍ତ୍ତମାନର ସ୍ତ୍ରୀଲୋକଙ୍କ ପରି ଗୋଟିଏ ମାଟି ହାଣ୍ଡି ଏବଂ ରାମ ପିତଳ ହାଣ୍ଡି ବୋଲି ଶାସ୍ତ୍ରାନୁମୋଦନ ପାଇଥିଲା ।

ଦ୍ରୌପଦୀ ସାମାନ୍ୟ ଗୋଟିଏ କଥାର ଭୁଲ ବୁଝାମଣା ଯୋଗୁ ପାଞ୍ଚଜଣ ପାଣ୍ଡବଙ୍କୁ ବର ହିସାବରେ ଗ୍ରହଣ କରିବାକୁ ବାଧ ହୋଇଥିଲେ । ପଞ୍ଚପତିଙ୍କର ପାଦସେବାଠୁ ଆରମ୍ଭକରି ସମସ୍ତ ପ୍ରକାରର ମନୋରଞ୍ଜନ କରି ତାଙ୍କର ଜୀବନକୁ ତଳିତଳାନ୍ତ କରିଦେଲେ, ତଥାପି ଧର୍ମରାଜ ଯୁଧିଷ୍ଠିର ତାଙ୍କୁ ଜୁଆଖେଳରେ ହାରିଲେ । ସମସ୍ତଙ୍କ ଆଗରେ କୁରୁସଭାରେ ତାଙ୍କୁ ବିବସ୍ତ୍ର କରାଯିବା ବୃତାନ୍ତ ଭାରତରେ ନାରୀ ନିର୍ଯ୍ୟାତନାର ଚରମ ନିଦର୍ଶନ । ଭୀଷ୍ମ, ଦ୍ରୋଣାଚାର୍ଯ୍ୟ ପ୍ରଭୃତି ମହାମନୀଷୀ ଧର୍ମରକ୍ଷକମାନେ ଦ୍ରୌପଦୀଙ୍କର ସମ୍ମାନ ରକ୍ଷା କରିବା ପାଇଁ ଆଗେଇ ଆସିଲେ ନାହିଁ । ବରଂ ଧର୍ମ ଓ ପରମ୍ପରାର ଅନୁମୋଦନ ଦେଲେ । ଏହି ଧର୍ମରାଜ ଯୁଧିଷ୍ଠିର ସ୍ୱଶରୀରରେ ସ୍ୱର୍ଗକୁ ଗଲାବେଳେ ଦ୍ରୌପଦୀଆଡ଼କୁ ଟିକିଏ ଚାହିଁଲେ ବି ନାହିଁ; ବରଂ କୁକୁରଟିକୁ ତା'ର ପ୍ରଭୁଭକ୍ତି ପାଇଁ ସାଙ୍ଗରେ ସ୍ୱର୍ଗକୁ ନେବାକୁ ଜିଦ୍ ଧରି କହିଲେ, ଦ୍ରୌପଦୀଙ୍କର ସାରାଜୀବନର ସେବା ତାଙ୍କୁ କୁକୁରଠାରୁ ଅଧିକ ପ୍ରଭୁଭକ୍ତ କରିପାରିଲା ନାହିଁ ।

ଅନେକ ଭାରତୀୟ ଉପରୋକ୍ତ ବର୍ବରୋଚିତ କାର୍ଯ୍ୟ ପାଇଁ ଦେବୋପମ ରାମ ଓ ଯୁଧିଷ୍ଠିରଙ୍କୁ ସମାଲୋଚନା କରିବାକୁ କୁଣ୍ଠାବୋଧ କରନ୍ତି । ବରଂ କହନ୍ତି ଯେ ଏହାର ନାନା ଦାର୍ଶନିକ ବ୍ୟାଖ୍ୟା ରହିଛି । କିନ୍ତୁ ଯେଉଁ ତଥ୍ୟ ଥାଉପଛକେ ସୀତା ଦ୍ରୌପଦୀ କେବଳ ନାରୀ ହୋଇଥିବାରୁ ଯେ ଏପରିଭାବରେ ନିର୍ଯ୍ୟାତିତା ହୋଇଛନ୍ତି, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ସେମାନେ ତ ତାଙ୍କ ଦେବୋପମ ସ୍ୱାମୀକୁ ଏଥିପାଇଁ କ୍ଷମା ଦେଇନାହାଁନ୍ତି ? ସୀତା ଆତ୍ମହତ୍ୟା କଲେ – ପ୍ରତିହିଂସାରେ ଜର୍ଜରିତା ଦ୍ରୌପଦୀ ତାଙ୍କର କେଶଗୁଚ୍ଛ ଖୋଲିରଖିଲେ – ପୁରୁଷ ଅତ୍ୟାଚାରୀର ରକ୍ତ ପ୍ରତୀକ୍ଷାରେ । ଶ୍ୱଶୁରଙ୍କର ଅପ୍ରତିଦ୍ୱନ୍ଦ୍ୱୀ ପାଣ୍ଡିତ୍ୟ ପଦମର୍ଯ୍ୟାଦା ରକ୍ଷା ଲାଗି ପ୍ରଚଣ୍ଡ ପ୍ରତିଭାଶାଳିନୀ ବୋହୂକୁ ଜିଭ କାଟିଦେବାକୁ ପଡ଼ିଲା । ତେଣୁ ପୁରୁଷ ବ୍ୟାଖ୍ୟାକାର ଏହାକୁ ଯେପରିଭାବରେ ତାତ୍ତ୍ୱିକ ବ୍ୟାଖ୍ୟା କରନ୍ତୁ ପଛକେ ସେ ଯୁଗର ପୁରୁଷ ପ୍ରଧାନ ସମାଜରେ ନାରୀ ମର୍ଯ୍ୟାଦା ତଥା ସ୍ୱାଭିମାନର ଆଦର ନଥିଲା । ସ୍ୱୟଂମ୍ବର ପରେ ସେ ଅନ୍ୟାନ୍ୟ ପତ୍ନୀମାନଙ୍କ ସହିତ ପୁରୁଷର କେବଳ ଉପଭୋଗ୍ୟା ହିସାବରେ ଆଦୃତ ହେଉଥିଲା- ତା'ର ସୌନ୍ଦର୍ଯ୍ୟ ଓ ପୁରୁଷ ଉପଭୋଗ୍ୟ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ବର୍ଣ୍ଣନା କରି କେବଳ କାବ୍ୟ କବିତା ଲେଖାଯାଉଥିଲା । ନାନାପ୍ରକାର ଲୋଭନୀୟ ଅଳଙ୍କାର ତିଆରି ହେଉଥିଲା – କିନ୍ତୁ ତା'ର ସ୍ୱାଧୀନତା ନଥିଲା । ସେ ପୁରୁଷର କ୍ରୀଡ଼ନକ ଦାସୀ ପରି ବ୍ୟବହୃତ ହେଉଥିଲା ।

ଯେଉଁ ହିନ୍ଦୁମାନେ ସରସ୍ୱତୀ, ଲକ୍ଷ୍ମୀ, ଦୁର୍ଗା ପ୍ରଭୃତି ଅତି ପରାକ୍ରମଶାଳିନୀ ନାରୀମୂର୍ତ୍ତିର ଆରଧନା କରନ୍ତି, ସେମାନେ କଅଣ ସାଧାରଣ ନାରୀକୁ ଉପଯୁକ୍ତ ସମ୍ମାନ ଓ ଅଧିକାର ଦେଉଛନ୍ତି ? ତେଣୁ ନାରୀ ପ୍ରତି ଅନାଚାର ଅତ୍ୟାଚାର ହେଲା ଆମର ବିରାଟ ଐତିହ୍ୟର ଗୋଟିଏ କରୁଣ ଚିତ୍ର। ଅବଶ୍ୟ ଏଥିରେ ବିଚିତ୍ରତା କିଛି ନାହିଁ। କାରଣ ସେ ଯୁଗର ସାମନ୍ତବାଦୀ ସମାଜର ସେହିପରି ଚରିତ୍ର- ବାହୁବଳ ଉପରେ ସାର୍ବଭୌମ କ୍ଷମତା ନ୍ୟସ୍ତଥିଲା। ରାଜ ଦରବାରରେ ପଣ୍ଡିତମାନେ ରାଜାଙ୍କୁ ଦେବତା ବୋଲି ଶ୍ଳୋକ ଲେଖିଲେ ସ୍ୱର୍ଣ୍ଣମୁଦ୍ରା ପାଉଥିଲେ। ଭୀଷ୍ମ ଦ୍ରୋଣାଚାର୍ଯ୍ୟଙ୍କ ପରି ପଣ୍ଡିତମାନେ ମଧ୍ୟ ରାଜାର ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରି ପାରୁନଥିଲେ। ଦ୍ରୌପଦୀଙ୍କର ବସ୍ତ୍ରହରଣ ବେଳେ ରାଜାନୁଗତ କାପୁରୁଷତା ଯୋଗୁ ଏମାନେ ପ୍ରତିବାଦ କରିପାରିନଥିଲେ – ଦ୍ରୌପଦୀଙ୍କୁ ଦ୍ୟୁତ କ୍ରୀଡ଼ାରେ ହାରିବାର ଅଧିକାର ଯୁଧିଷ୍ଠିରଙ୍କର ଅଛି ବୋଲି ଏମାନେ ମତ ଦେଇଥିଲେ। ଏମାନଙ୍କର କାଳ୍ପନିକ ସ୍ୱର୍ଗରାଜ୍ୟରେ ମଧ୍ୟ ରାଜଦରବାର ଥିଲା – ଅପସରାମାନେ ନୃତ୍ୟ କରୁଥିଲେ। ଇନ୍ଦ୍ର ସେମାନଙ୍କୁ ଅନ୍ୟ ତପସ୍ୟାରତ ପୁରୁଷମାନଙ୍କ ପାଖକୁ ପଠାଉଥିଲେ, ସେମାନଙ୍କୁ ରତିକ୍ରିୟାରେ ବ୍ରତୀ କରିବା ପାଇଁ। ଏପରି ଗୋଟିଏ ପରିସ୍ଥିତିରେ ମେନକା ଋଷି ବିଶ୍ୱାମିତ୍ରଙ୍କୁ ବିବାହ କରି ଜନନୀ ହେଲେ ଏବଂ ସ୍ୱାମୀ ଓ କନ୍ୟାକୁ ଛାଡ଼ିବାକୁ ଅନିଚ୍ଛୁକ ହେଲେ। କିନ୍ତୁ ଇନ୍ଦ୍ର ତାଙ୍କ ନିଜର ସ୍ୱାର୍ଥସାଧନ ପାଇଁ ଜବରଦସ୍ତ ତାଙ୍କୁ ସ୍ୱର୍ଗକୁ ଫେରାଇ ଆଣିଲେ। ଏ କଅଣ ନାରୀ ମର୍ଯ୍ୟାଦାର ପ୍ରଶଂସନୀୟ ଉଦାହରଣ ? ଏସବୁ ଥିଲା ସେ ଯୁଗର ସାମନ୍ତବାଦୀ ସମାଜର ନୀତି ନିୟମ କିନ୍ତୁ ତାହା କଅଣ ବର୍ତ୍ତମାନ ଯୁଗରେ ଅନୁକରଣୀୟ ? ତେଣୁ ଆମ ନାରୀଙ୍କୁ ଧର୍ମ ନାମରେ, ପରମ୍ପରା ନାମରେ ସେମାନଙ୍କୁ ଅନୁକରଣ କରିବା ପାଇଁ ଉପଦେଶ ପଛରେ ପୁରୁଷ ଜାତିର ସ୍ତ୍ରୀ ଜାତିକୁ ନିଜ ଅଧୀନରେ ରଖିବାର ନୀତିକୁ ପୁଣି ପ୍ରତିପାଦିତ କରାହେଉଛି ବୋଲି ମୋର ଦୃଢ଼ ମତ। ତେଣୁ ମର୍ଯ୍ୟାଦାବନ୍ତ ସ୍ଥାନ ମାନଙ୍କରେ ଆସୀନ ଯେଉଁ ପୁରୁଷମାନେ ଭାରତୀୟ ନାରୀକୁ ସୀତା ଦ୍ରୌପଦୀଙ୍କୁ ଅନୁକରଣ କରିବା ପାଇଁ ଉପଦେଶ ଦେଉଛନ୍ତି ସେମାନଙ୍କ ବିରୁଦ୍ଧରେ ପ୍ରବଳ ପ୍ରତିବାଦ ହେବା ଉଚିତ। ତେଣୁ ନାରୀର ସମ୍ମାନ ଓ ଅଧିକାର ନେଇ ବିଂଶ ଶତାବ୍ଦୀର ଯେଉଁ ନୂତନ ଜାଗରଣ, ତାହା ଆମ ଐତିହ୍ୟର ସମ୍ପୂର୍ଣ୍ଣ ପରିପନ୍ଥୀ ବୋଲି ଧରିନେବାକୁ ହେବ। ଏପରି ପରିସ୍ଥିତିରେ ପୁରାତନ ତଥା ପ୍ରଚଳିତ ସାମାଜିକ ରୀତି ନୀତି ବିରୁଦ୍ଧରେ ସଂଗ୍ରାମ କରି ନାରୀମାନଙ୍କର ନ୍ୟାଯ୍ୟ ସ୍ୱାଧିକାର ସାବ୍ୟସ୍ତ କରିବା ପାଇଁ ନୂତନ ଦିଗନ୍ତ ସୃଷ୍ଟି କରିବା ଦିଗରେ ନାରୀ ନେତୃତ୍ୱ ଏବଂ ସାମାଜିକ ଅନୁଷ୍ଠାନମାନେ ଯେ ଅତି ଶକ୍ତିଶାଳୀ ହେବା ଆବଶ୍ୟକ, ଏ ବିଷୟରେ ମତଦ୍ୱୈଧର ଅବକାଶ ନାହିଁ।

ଅନେକ ସମୟରେ ଗୋଟିଏ ମୌଳିକ ମତଭେଦ ରହୁଛି ଯେ ନାରୀମାନଙ୍କର ଅଧିକାର କେତେ ବେଶି ହେବା ଦରକାର ? ନାରୀ କଅଣ ପୁରୁଷମାନଙ୍କ ସହିତ ସବୁ କ୍ଷେତ୍ରରେ ସମାନ ହେବା ଉଚିତ ? ଆଧୁନିକ ସାର୍ବଜନୀନ ମାନବୀୟ ମୂଲ୍ୟବୋଧ ଦୃଷ୍ଟିରୁ ନାରୀ ପୁରୁଷଙ୍କ ଭିତରେ କୌଣସି ପ୍ରକାରର ଅର୍ଥନୈତିକ ଓ ସାମାଜିକ ପାର୍ଥକ୍ୟ ରହିବା

ଉଚିତ ନୁହେଁ। ପୁରୁଷଠାରୁ ବୁଦ୍ଧି ବିବେକ, ମାନସିକ କ୍ଷମତା ତଥା ଆଧ୍ୟାତ୍ମିକ ଯୋଗ୍ୟତା ପ୍ରଭୃତି କ୍ଷେତ୍ରରେ କୌଣସି କ୍ଷେତ୍ରରେ ନାରୀ କମ୍ ନୁହେଁ। ବରଂ ସହନଶୀଳତା, ଦୟା, ଆନୁଗତ୍ୟ ପ୍ରଭୃତି ବହୁ ମାନବୀୟ କୋମଳତା କ୍ଷେତ୍ରରେ ପୁରୁଷଠାରୁ ନାରୀ ଉଚ୍ଚରେ। ଆଧୁନିକ ଯୁଗର ପ୍ରଗତିଶୀଳ କାର୍ଯ୍ୟପନ୍ଥା ଯେପରି କ୍ଷିପ୍ରଭାବରେ ଗତିଶୀଳ, ଜ୍ଞାନବିଜ୍ଞାନର ପରିସର ଯେପରିଭାବରେ ଅଭିବୃଦ୍ଧି ଘଟୁଛି ସେଥିରେ ଅର୍ଦ୍ଧାଂଶ ନାରୀ ସମାଜ ପୁରୁଷଙ୍କ ସହିତ ସମକକ୍ଷ ହୋଇ ଆଗେଇଯିବା ବିଧେୟ – ଏ ବିଷୟରେ ମଧ୍ୟ ମତଦ୍ୱୈଧ ନାହିଁ। ତଥାପି ଏତେ ଯୁଗଧରି ଯେଉଁ ପାରସ୍ପରିକ ସମ୍ପର୍କ ଗଢ଼ିଉଠିଛି ତାକୁ ସହଜରେ ଛାଡ଼ିଦେବା ଲୋକଙ୍କ ପକ୍ଷରେ ସହଜ ନୁହେଁ, କିନ୍ତୁ ଏପରି ଅଯୌକ୍ତିକ ସାମାଜିକ ସମ୍ପର୍କ ଯୋଗୁ ନାରୀମାନଙ୍କର କେତେ ବେଶି ମାନସିକ ଯନ୍ତ୍ରଣା, କେତେ ବେଶି ନିଦାରୁଣ ଦୁଃଖ ଯାତନା ସେମାନଙ୍କୁ ଭୋଗିବାକୁ ପଡୁଛି, ତା'ର ମାନସିକ ବିଶ୍ଳେଷଣ ଲେଖକମାନଙ୍କ ବଳିଷ୍ଠ ଲେଖନୀରେ ହିଁ ପ୍ରକାଶ ପାଇପାରିବ। ଏମାନଙ୍କର ନିର୍ଯ୍ୟାତନା ସେମାନଙ୍କର ସନ୍ତାନସନ୍ତତି ତଥା ପୁରୁଷ ଜାତିକୁ ମଧ୍ୟ ଭାରାକ୍ରାନ୍ତ କରିପକାଉଛି। ସାହିତ୍ୟ ହିଁ ମନୁଷ୍ୟର ଦେବୀନାଭୂତିକୁ ପରିସ୍ଫୁଟ କରିବାରେ ସାର୍ବଜନୀନତା ସୃଷ୍ଟି କରିପାରେ। ସର୍ଜନାର ଆଲୋକବର୍ତ୍ତିକା ମନୁଷ୍ୟ ସମାଜର ଏହି ବିଷାଦମୟ କରୁଣ ଗାଥାକୁ ପରିପ୍ରକାଶ କରିବାରେ ବଳିଷ୍ଠ ଆଦର୍ଶ ପ୍ରତିଷ୍ଠା କରିପାରେ। ଏଥିପାଇଁ ଅଦମ୍ୟ ଉତ୍ସାହ ଓ ବିରାଟ ସାହସର ଆବଶ୍ୟକତା ରହିଛି।

ସାମାଜିକ ଓ ସାଂସ୍କୃତିକ ଐତିହ୍ୟ ବିରୁଦ୍ଧରେ ଲେଖନୀଚାଳନା ସହଜ ନୁହେଁ। ତେଣୁ ଅଗ୍ରଗାମୀ ମନୁଷ୍ୟ ସମାଜର ଦୂରଦର୍ଶୀ ଦାର୍ଶନିକ ହିସାବରେ ସାହିତ୍ୟରେ ଗତିମୟ ଦିଗ ସୃଷ୍ଟି ହେବା ବାଞ୍ଛନୀୟ। କାରଣ କେବଳ ଆଇନ ଦ୍ୱାରା ନାରୀମାନଙ୍କର ସମ୍ମାନର ଉପଯୁକ୍ତ ସୁରକ୍ଷା ସମ୍ଭବ ନୁହେଁ। ଅନେକ ସମୟରେ ଆଇନ ମଧ୍ୟ ପୁରୁଷପ୍ରଧାନ ସମାଜରେ ନାରୀ ବିରୁଦ୍ଧରେ କାମ କରିଥାଏ। ଉଦାହରଣସ୍ୱରୂପ, ବେଶ୍ୟାବୃତ୍ତି ପାଇଁ କଅଣ କେବଳ ନାରୀମାନେ ଦାୟୀ ? ତଥାପି ସବୁବେଳେ ନାରୀକୁହିଁ ପୁଲିସ ଧରିନିଏ - ପୁରୁଷକୁ ନୁହେଁ। ଯେଉଁ ପୁଲିସ ଧରିନିଏ ସେ ବେଶ୍ୟାବୃତ୍ତିର ପ୍ରଧାନ ପୃଷ୍ଠପୋଷକ। ଏପରିକି ନାରୀ ଦେହ ବିକ୍ରୀଲବ୍ଧ ରକ୍ତରଞ୍ଜିତ ରୋଜଗାରରେ ମଧ୍ୟ ପୁରୁଷ ଅଂଶୀଦାର ହୁଏ। ତା'ନହେଲେ ବେଶ୍ୟା ତା'ର ବୃତ୍ତି ଚଳାଇପାରିବ ନାହିଁ। କେତେ ଲେଖକ ପତିତା ନାରୀଙ୍କର ଏହି ଅମାନୁଷିକ ଯନ୍ତ୍ରଣା ବିଷୟରେ ନିର୍ଭୟରେ ଲେଖନୀ ଚାଳନା କରିପାରନ୍ତି ? ଏବଂ ଏହା ବିରୁଦ୍ଧରେ ସମାଜ ବିଦ୍ରୋହ ସୃଷ୍ଟି କରିପାରନ୍ତି। ନାରୀ ଜାତିର ସମ୍ମାନ ଓ ଅଧିକାର ତା'ର ଅର୍ଥନୈତିକ ସ୍ୱାଧୀନତା ଓ ଉତ୍ପାଦନଶୀଳତା ଉପରେ ଅନେକ ସମୟରେ ନିର୍ଭର କରିଥାଏ। କାରଣ ଅର୍ଥନୈତିକ ସ୍ୱାଧୀନତା ନ ଥିଲେ ତାକୁ କ୍ରୀତଦାସୀ ପରି ରହିବାକୁ ବାଧ୍ୟ କରାହେଲେ ମଧ୍ୟ ତା'ର ଅନ୍ୟ ଉପାୟ ନଥାଏ। ଏ ସମ୍ପର୍କରେ ଆମ ଦେଶରେ କିଛି କିଛି ଆଇନ ହୋଇଥିଲେ ମଧ୍ୟ ବହୁ ପରିବାର ସେମାନଙ୍କର ଝିଅଙ୍କୁ ସମ୍ପତ୍ତିର ଯଥାଯଥ ଅଂଶ ଦେବା ପାଇଁ ନାରାଜ। ଫଳରେ ଯୌତୁକ ପ୍ରଥା ଭୟାବହ

ଭାବରେ ଦେଖାଦେଇଛି। ବଧୂ ନିର୍ଯ୍ୟାତନା ମଧ୍ୟ ଏହାର ଗୋଟିଏ ବିଷମୟ ଫଳ। ଏ ବିଷୟରେ ଚେତନା ଜାଗ୍ରତ କରାଇବା ପାଇଁ ଲେଖକ-ସମାଜ କଅଣ ନିର୍ଭୀକ ଭାବରେ ଆଗେଇ ଆସୁଛନ୍ତି ? ନାରୀଧର୍ଷଣ ବଢ଼ି ବଢ଼ି ଚାଲିଛି। କାରଣ ଏ କ୍ଷେତ୍ରରେ ନିୟମ ଏପରି କୋହଳ ଯେ ବହୁ ଲୋକ ଧରାପଡ଼ନ୍ତି ନାହିଁ, ଧରାପଡ଼ିଲେ ମଧ୍ୟ କୋହଳ ଦଣ୍ଡ ପାଆନ୍ତି। କାରଣ ଧର୍ଷଣକାରୀକୁ ଧରିବେ ପୁରୁଷ ପୋଲିସ, ବିଚାର କରିବ ପୁରୁଷ ମାଜିଷ୍ଟ୍ରେଟ୍, ଆଇନ କରିବ ପୁରୁଷ ବିଧାୟକ, ଜନମତ ସୃଷ୍ଟି କରିବ ପୁରୁଷ ସାମ୍ବାଦିକ। ଭାରତରେ ନାରୀ ପ୍ରଧାନମନ୍ତ୍ରୀ ବହୁ ବର୍ଷ ରହିଲା ପରେ ମଧ୍ୟ ଏ କ୍ଷେତ୍ରରେ ସେପରି କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ସମ୍ଭବ ହୋଇ ପାରିନାହିଁ। ତେଣୁ ନାରୀର ନ୍ୟାଯ୍ୟ ସାମାଜିକ ଅଧିକାର ସାବ୍ୟସ୍ତ ନ ହେଲା ଯାଏ ତା'ର ସୁରକ୍ଷାର ପ୍ରଶ୍ନ ଉଠୁଛି କେଉଁଠି ?

ଲେଖକମାନେ ଏ କ୍ଷେତ୍ରରେ କିପରି ଜାଗରଣ ସୃଷ୍ଟି କରିପାରିବେ, ଏହା ଗୋଟିଏ ଦିଗ – କିନ୍ତୁ ଏ କ୍ଷେତ୍ରରେ ଆଉ ଗୋଟିଏ ଦିଗ ହେଉଛି ଯେ ପୁରୁଷପ୍ରାଧାନ୍ୟ ଦେଶରେ ସାହିତ୍ୟରେ ମଧ୍ୟ ସ୍ତ୍ରୀ ଚରିତ୍ରକୁ ନ୍ୟୂନ ଭାବରେ ଚିତ୍ରଣ କରାହେଉଛି। ସିନେମାରେ ଯେପରି ଭାବରେ ନାରୀମାନଙ୍କର ନଗ୍ନ ଶରୀର ପ୍ରଦର୍ଶନ କରି ତାକୁ ଅତି ନିମ୍ନଧରଣ ଚାଳିଚଳଣର ମୁଖ୍ୟ ଅଭିନେତ୍ରୀ କରି ନାରୀ ଆଦର୍ଶ ସୃଷ୍ଟି କରାହେଉଛି, ତାହା ନାରୀ ସମ୍ମାନର ସମ୍ପୂର୍ଣ୍ଣ ପରିପନ୍ଥୀ। ଏ ବିଷୟରେ କି ପ୍ରକାର ଆଇନ କରି ନାରୀର ସମ୍ମାନ ରକ୍ଷା କରାଯାଇପାରିବ ? ଏପରି ଲେଖକ ଓ କଳାକାରଙ୍କ ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମର ଆବଶ୍ୟକତା ରହିଛି। ଯେଉଁ ଦେଶରେ ମାତା ଭଗିନୀକୁ ଉପଯୁକ୍ତ ସମ୍ମାନ ଦେଖାଯାଇ ପାରିବ ନାହିଁ, ଯେଉଁ ଦେଶରେ ଦ୍ରୌପଦୀ ବସ୍ତ୍ରହରଣ ଭାରତୀୟ ଐତିହ୍ୟର ଗୋଟିଏ ସମ୍ମାନନୀୟ ଓ ଉଲ୍ଲେଖନୀୟ ଘଟଣା, କୃଷ୍ଣଙ୍କ ଦ୍ୱାରା ଗୋପୀମାନଙ୍କର ବସ୍ତ୍ରହରଣ ଛବି ସାଧାରଣ ସ୍ଥାନରେ ପ୍ରଦର୍ଶିତ ହୁଏ, ସେ ଦେଶରେ ନାରୀର ସମ୍ମାନ ସୁରକ୍ଷା ପାଇଁ ଆମମାନଙ୍କର ଏ ଦିଗରେ କି ବିରାଟ ବୈପ୍ଳବିକ ପଦକ୍ଷେପ ନେବା ଦରକାର, ତାହା ସହଜରେ ଅନୁମେୟ।

ଅଧିକାଂଶ ଲେଖକ ଓ ଚିନ୍ତାନାୟକ ଅନେକ ସମୟରେ ସେମାନଙ୍କର ପାରିପାର୍ଶ୍ୱିକ ପରିବେଶରୁ ମୁକ୍ତ ହୋଇ ଆଗାମୀ ଯୁଗର ଆଲୋକ ଦେଖିପାରନ୍ତି ନାହିଁ। ସେମାନେ ସେଥିପାଇଁ ଗୋଟିଏ ପ୍ରକାର ଦର୍ଶନ ଉପସ୍ଥାପିତ କରିଥାଆନ୍ତି ଯେ ଲେଖକ ତା'ର ଚାରିପାଖେ ଘଟୁଥିବା ଘଟଣାକୁ ସାହିତ୍ୟିକ ଛଟାରେ ସୂକ୍ଷ୍ମଭାବରେ ବିଶ୍ଳେଷଣ କରିପାରିଲେ ଯଥେଷ୍ଟ। କିନ୍ତୁ ପ୍ରତ୍ୟେକ ମନୁଷ୍ୟର ଭବିଷ୍ୟତ ସ୍ୱପ୍ନ ରହିଛି – ତା'ର ବର୍ତ୍ତମାନର ସୁଖଦୁଃଖର ମାୟାଜାଳ ଭିତରୁ ସେ ଭବିଷ୍ୟତର ସ୍ୱପ୍ନ ନେଇ ବଞ୍ଚେ। ତେଣୁ ଭବିଷ୍ୟତର ଆଦର୍ଶକୁ ତା'ର ସ୍ୱପ୍ନକୁ ଫୁଟାଇ ନପାରିଲେ ସାହିତ୍ୟର ସାର୍ବଜନୀନତା ରହିପାରିବ ନାହିଁ। ଚିନ୍ତା ଜଗତରେ ସୃଜନଶୀଳତା ସୃଷ୍ଟି ହୋଇପାରିବ ନାହିଁ। ଏ କ୍ଷେତ୍ରରେ ନାରୀ ଲେଖିକାର ଭୂମିକା ବହୁତ ବେଶି। ନାରୀ ତା'ର ଭବିଷ୍ୟତ ଓ ସ୍ୱପ୍ନକୁ ପ୍ରଚଣ୍ଡଭାବରେ ପରିସ୍ଫୁଟ କରିବା ପାଇଁ ବଳିଷ୍ଠ ପଦକ୍ଷେପ ନେଇପାରେ। ଭାରତ ତଥା

ଓଡ଼ିଶାର ନାରୀ ଲେଖିକାମାନେ ଏ ବିଷୟରେ କିଛି ଦିଗ୍‌ଦର୍ଶନ ଦେଇପାରିଛନ୍ତି ବୋଲି ମନେହୁଏ। ଏହାର ଅର୍ଥ ନୁହେଁ ଯେ ପୁରୁଷ ଲେଖକମାନେ ସାହିତ୍ୟରେ ନାରୀ ଚରିତ୍ରର ସମସ୍ୟା ଉପସ୍ଥାପିତ କରିବାରେ ଉପଯୁକ୍ତ ଭୂମିକା ନେଇପାରିବେ ନାହିଁ। ନାରୀର ଅସମ୍ମାନ ଓ ତା'ର ପରାଧୀନତା ଯୋଗୁ ନାରୀ ଯେପରି ଯାତନା ପାଉଛି, ପୁରୁଷକୁ ମଧ୍ୟ ସେଥିପାଇଁ ବହୁ ଯନ୍ତ୍ରଣା ଭୋଗିବାକୁ ପଡୁଛି। ସେ ସମ୍ପୂର୍ଣ୍ଣରୂପେ ତା'ର ସମକକ୍ଷ ଅର୍ଦ୍ଧାଙ୍ଗିନୀ ପାଇବାରେ ଅସମର୍ଥ ହେଉଛି। ଦୁଇଟି ଅସମଞ୍ଜସ ଲୋକ ଭିତରେ ପ୍ରକୃତ ଶ୍ରଦ୍ଧା ଓ ସମ୍ମାନଜନିତ ପାରସ୍ପରିକ ସ୍ନେହ ପ୍ରେମ ଫୁଟିଉଠିପାରିବ ନାହିଁ। ଅତ୍ୟାଚାରିତା ଓ ନ୍ୟୂନ ଭାବାପନ୍ନ ସ୍ତ୍ରୀ କଦାପି ଶକ୍ତିଶାଳିନୀ ଆଦର୍ଶବାଦିନୀ ମାତା ହୋଇପାରିବ ନାହିଁ। ଏହି ବିରାଟ ମନସ୍ତାତ୍ତ୍ୱିକ ସତ୍ୟଟିକୁ ଉଭୟେ ପୁରୁଷ ଓ ସ୍ତ୍ରୀ ଲେଖକମାନେ ନିଜ ନିଜ ଦୃଷ୍ଟିକୋଣରୁ ସୃଷ୍ଟି କରିପାରିବେ। ତଥାପି ବର୍ତ୍ତମାନର ପରିସ୍ଥିତିରେ ସ୍ୱାଧୀନତା ସ୍ୱପ୍ନାଭିଳାଷୀ ଓ ଯୁଗ ଯୁଗ ଧରି ଅବହେଳିତା ନାରୀ ଓ ସୁବିଧାଭୋଗୀ ପୁରୁଷଙ୍କ ଭିତରେ ନାନାଭାବରେ ସଂଘର୍ଷ ଦେଖାଦେବା ସ୍ୱାଭାବିକ। ତେଣୁ ନାରୀ ଲେଖିକା ଓ ଦାର୍ଶନିକମାନଙ୍କର ଅବଦାନ ଏ ଦିଗରେ ବହୁତ ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମନେହୁଏ।

ଅର୍ଥନୈତିକ ସ୍ୱାଧୀନତା ହାସଲ ହୋଇଗଲା ପରେ ଯେ ନାରୀର ସମ୍ମାନ ଓ ଗୌରବ ଆପେ ଆପେ ବଢ଼ିଯିବ ତା' ଭାବିବା ଭୁଲ୍,। ଯଦିଚ ଏହା ସେମାନଙ୍କର ଯଥାଯଥ ସାମାଜିକ ମର୍ଯ୍ୟାଦା ପାଇଁ ଗୋଟିଏ ବିରାଟ ପଦକ୍ଷେପ। ପାଶ୍ଚାତ୍ୟ ଦେଶମାନଙ୍କରେ ବିଶେଷତଃ ପୁଞ୍ଜିପତି ଦେଶରେ ନାରୀର ମର୍ଯ୍ୟାଦା ତଥା ସମ୍ମାନ ସବୁ କ୍ଷେତ୍ରରେ ସେପରି ଉନ୍ନତ ହୋଇପାରିନାହିଁ। ଯୁକ୍ତରାଷ୍ଟ୍ର ଆମେରିକାରେ ଜଣେ ଦି'ଜଣ ସ୍ତ୍ରୀଲୋକଙ୍କୁ ଛାଡ଼ିଦେଲେ ଗତ ଦୁଇ ଶହ ବର୍ଷଧରି ପଚାଶଟି ରାଜ୍ୟର ଗଭର୍ଣ୍ଣର ହେବା ନାରୀମାନଙ୍କର ସୌଭାଗ୍ୟ ହୋଇନାହିଁ। ପ୍ରେସିଡେଣ୍ଟ୍ ଭାଇସ୍ ପ୍ରେସିଡେଣ୍ଟ୍ ହେବାତ ଦୂରର କଥା, ଏପରିକି ନାରୀ କଲେଜରେ ମଧ୍ୟ ଅନେକ ସମୟରେ ପୁରୁଷ ପ୍ରେସିଡେଣ୍ଟ୍ ଦେଖିବାକୁ ମିଳନ୍ତି। ପୁଞ୍ଜିପତି ଦେଶରେ ବିଜ୍ଞାପନ ଓ ଅନ୍ୟାନ୍ୟ ଗଣମାଧ୍ୟମରେ ନାରୀକୁ କେବଳ ଯୌନ ଉପଭୋଗ୍ୟ ସାମଗ୍ରୀ ହିସାବରେ ପ୍ରତିପାଦିତ କରାହେଉଥିବାରୁ ଏବଂ ନାରୀ ସ୍ୱାଧୀନତା ଲାଗି କୌଣସି ବଳିଷ୍ଠ ସାମାଜିକ ଦର୍ଶନ ସେମାନଙ୍କ ଆଗରେ ନଥିବାରୁ ନାରୀମାନେ ବହୁପରିମାଣରେ ସ୍ୱାଧୀନ ହୋଇଥିଲେ ସୁଦ୍ଧା ପୁରୁଷଙ୍କ ସହିତ ସମକକ୍ଷ ହୋଇପାରୁ ନାହାଁନ୍ତି। ସମାଜବାଦୀ ଦେଶମାନଙ୍କରେ ନାରୀ ସ୍ୱାଧୀନତା ସପକ୍ଷରେ ଗୋଟିଏ ବଳିଷ୍ଠ ସାମାଜିକ ଦର୍ଶନ ଥିବାରୁ ସେମାନେ ସମାଜରେ ଅନେକ ବେଶି ଉଚ୍ଚସ୍ଥାନ ଅଧିକାର କରିଛନ୍ତି ସତ, ତଥାପି ରାଜନୈତିକ କ୍ଷେତ୍ରରେ ଏମାନଙ୍କର ପଦମର୍ଯ୍ୟାଦା ବର୍ତ୍ତମାନ ସୁଦ୍ଧା ଯଥେଷ୍ଟ ବୃଦ୍ଧି ପାଇପାରିନାହିଁ। ତଥାପି ଏସବୁ ଉନ୍ନତ ଦେଶରେ ନାରୀ ଜାଗରଣ ଆନ୍ଦୋଳନ ନିରବଚ୍ଛିନ୍ନଭାବରେ ଚାଲିଆସିଛି। ଏ ସମ୍ପର୍କରେ ବହୁ ବିଶିଷ୍ଟ ଲେଖକ ଲେଖିକା ବହୁ ଉପାଦେୟ ସାହିତ୍ୟ ସୃଷ୍ଟି କରିପାରିଛନ୍ତି— ଫଳରେ ଏ ଦିଗରେ ଉପଯୁକ୍ତ ସାମାଜିକ ବାତାବରଣ ସୃଷ୍ଟି ହୋଇଚାଲିଛି।

ଭାରତରେ ନାରୀ ଜାଗରଣ ଆନ୍ଦୋଳନ ବଡ଼ ସୀମିତ। ଅବଶ୍ୟ ସବୁଦେଶରେ ଏକାପରି ଆନ୍ଦୋଳନ ସମ୍ଭବ ନୁହେଁ। ତଥାପି ନାରୀ ଅଧିକାର ସାବ୍ୟସ୍ତ ଓ ସମ୍ମାନର ସୁରକ୍ଷା ଲାଗି ଆହୁରି ବେଶି ବୌଦ୍ଧିକ ଓ ସାମାଜିକ ଆଲୋଡନର ଆବଶ୍ୟକତା ଆମ ଦେଶରେ ରହିଛି। ଆମ ପରମ୍ପରାଗତ ପ୍ରଥାକୁ ଯୁକ୍ତିଯୁକ୍ତଭାବରେ ବିଶ୍ଳେଷଣ କରି ତା'ର ଦୁଃଖମୟ ଦିଗଟିକୁ ବଳିଷ୍ଠ ଭାବରେ ପ୍ରତ୍ୟାଖ୍ୟାନ କରିବା ପାଇଁ ବାତାବରଣ ସୃଷ୍ଟି ହେବା ଦରକାର।

ନାରୀଜାତି ସ୍ୱାଧୀନତା ପାଇଲେ ସମାଜରେ ବ୍ୟଭିଚାର ବଢ଼ିଯିବାର ଯେଉଁ ଭୟ, ତାହା ପୁରୁଷ ଉଚ୍ଛୃଙ୍ଖଳ ଯୌନାଭିଳାଷ ଯୋଗୁଁହିଁ ନାରୀମାନଙ୍କ ପ୍ରତି ଏହାର ମନସ୍ତାତ୍ତ୍ୱିକ ପ୍ରତିଫଳନ ହୋଇଥାଏ। ନାରୀର ସହଜାତ କାମପ୍ରବୃତ୍ତି ସାଧାରଣତଃ ଗୋଟିଏ ନିର୍ଦ୍ଦିଷ୍ଟ ପୁରୁଷ ପ୍ରତି ଆନୁଗତ୍ୟରେ ଆତ୍ମପ୍ରକାଶ କରିଥାଏ। କିନ୍ତୁ ପୁରୁଷର ଯୌନଲିପ୍ସା ଅଲଗା ଧରଣର। ତା'ର ଯୌନସଂଭୋଗ ବ୍ୟତୀତ ଅନ୍ୟ କୌଣସି ଗୁରୁ ଦାୟିତ୍ୱ ନଥିବାରୁ ସେ ଅତି ସହଜରେ ଏକାଧିକ ସ୍ତ୍ରୀପ୍ରତି ଆସକ୍ତ ହୋଇପଡ଼େ। ତଥାପି ସମାଜର ଯାବତୀୟ ଯୌନଗତ ଅନାଚାର ସ୍ତ୍ରୀ ଉପରେ ଚାପିଦିଆଯାଏ। ଏପରିକି ଶଙ୍କରାଚାର୍ଯ୍ୟଙ୍କ ପରି ଅଦ୍ୱୈତବାଦର ଶ୍ରେଷ୍ଠ ବ୍ୟାଖ୍ୟାକାର ମହାମନୀଷୀ ମଧ୍ୟ ଏପରି ଅଯୌକ୍ତିକ କୁସଂସ୍କାରଗତ ଦୋଷରୁ ମୁକ୍ତ ହୋଇ ନାହାଁନ୍ତି। ନାରୀକୁ ନରକର ଦ୍ୱାରସ୍ୱରୂପ ବୋଲି ସେ କହିଛନ୍ତି, ଯଦିଚ ସେ ଜଣେ ମାତୃଭକ୍ତ ପୁରୁଷ ଥିଲେ। ତେଣୁ ତାଙ୍କ ନାମଧାରୀ ବର୍ତ୍ତମାନ ଯୁଗର ତଥାକଥିତ ଭଣ୍ଡ ଧର୍ମାଧିକାରୀମାନଙ୍କର କଥା ଛାଡ଼। ଏ ପ୍ରକାର ପକ୍ଷପାତଗତ କୁସଂସ୍କାର ବିରୁଦ୍ଧରେ ଉନ୍ନତ ଦେଶମାନଙ୍କରେ ନାରୀ ଆନ୍ଦୋଳନକାରୀମାନେ ସ୍ୱର ଉତ୍ତୋଳନ କରିଛନ୍ତି– ସାହିତ୍ୟିକମାନେ ଏ ପ୍ରକାର ଭିତ୍ତିହୀନ ଅଯୌକ୍ତିକ କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଛନ୍ତି। କିନ୍ତୁ ଆମଦେଶରେ ଏପ୍ରକାର ଆନ୍ଦୋଳନର ବଳିଷ୍ଠ ସୂତ୍ରପାତ ହୋଇନାହିଁ କହିଲେ ଚଳେ।

ନାରୀ ପୁରୁଷ ଭିତରେ ସ୍ୱାଧିକାର ଓ ସମ୍ମାନ କ୍ଷେତ୍ରରେ କୌଣସି ପ୍ରଭେଦ ଦେଖାଦେବା ଉଚିତ ନୁହେଁ, ବରଂ ସେମାନେ ମାତୃଜାତିର ତଥା ପରିବାରର ମହାନ୍ ଦାୟିତ୍ୱ ସ୍ୱଚାରୁରୂପେ ତୁଲାଉଥିବାରୁ ସେମାନଙ୍କର ସାମାଜିକ ମର୍ଯ୍ୟାଦା ଓ ସ୍ଥିତି ଆଉ ଟିକିଏ ଉଚ୍ଚରେ ହେବା ଉଚିତ। ଏହି ବଳିଷ୍ଠ ଆଦର୍ଶଗତ ମାନବୀୟ ପ୍ରେରଣା ଯୋଗୁ ଲେଖକ ଓ ସମାଜବିପ୍ଳବୀଠାରେ ଦୁର୍ଦ୍ଦମନୀୟ ନିର୍ଭୀକତା ଗଢ଼ିଉଠିବ ଓ ସତ୍ୟସନ୍ଧାନ ଲାଗି ଗଭୀର ଜିଜ୍ଞାସା ସୃଷ୍ଟି ହେବ। ତା'ହେଲେଯାଇ ସେମାନେ ଅଗ୍ରଗାମୀ ଯୁଗର ପ୍ରଚଣ୍ଡ ସାହିତ୍ୟ ପ୍ରତିଭାର ଅଗ୍ରଧର୍ଷୀ ସ୍ରଷ୍ଟା ହୋଇପାରିବେ ଏବଂ ସାର୍ବଜନୀନ ମାନବିକ କୋମଳତାରେ ସମଧର୍ମୀ ମାନବ ସମାଜକୁ ସବୁଜିମ କରିପାରିବେ। ଏଥିପାଇଁ ତସଲିମାଙ୍କ ପରି ନାରୀ ଲେଖିକାକୁ ହୁଏତ ପ୍ରାଣଦଣ୍ଡରେ ଦଣ୍ଡିତ କରାଯାଇପାରେ– ଦେଶାନ୍ତର ଭୋଗିବାକୁ ପଡ଼ିପାରେ ; କିନ୍ତୁ ସେହିପରି ନାରୀମାନେ ହିଁ ନିଜ କଲମମୂନରେ ପ୍ରବଞ୍ଚିତା ନାରୀମାନଙ୍କର ଅସୀମ ଯନ୍ତ୍ରଣାର କରୁଣ ଛବି ଫୁଟାଇପାରିବେ। ■□■

# ସାମାଜିକ ପରିବେଷ୍ଟନୀ ଓ ପରିପୂର୍ଣ୍ଣତା

ବାଘ, ଭାଲୁ, ହାତୀ, ସିଂହ ପ୍ରଭୃତି ଅନେକ ଜୀବଜନ୍ତୁଙ୍କଠାରୁ ଶାରୀରିକ ଶକ୍ତିରେ ମନୁଷ୍ୟ ବହୁତ ଦୁର୍ବଳ। ହାତାହାତି ଯୁଦ୍ଧରେ ଜଣେ ମଣିଷ ଏମାନଙ୍କ ଭିତରୁ ଯେକୌଣସି ଜନ୍ତୁ ସହିତ ଯୁଦ୍ଧ କରିପାରିବ ନାହିଁ; ତଥାପି ସମଗ୍ର ଜୀବଜଗତ ମନୁଷ୍ୟର କରାଗତ। ପ୍ରାକୃତିକ ଜଗତର ସୁବିସ୍ତୀର୍ଣ୍ଣ ନଦନଦୀ, ବିରାଟ ଜଳପ୍ରପାତ, ଦିଗନ୍ତବ୍ୟାପୀ ସାଗରର ସୁବିସ୍ତୃତ ଜଳରାଶି ଓ ଅଗନାଗ୍ନି ଗିରିକନ୍ଦର ମଧ୍ୟ ମନୁଷ୍ୟ ଶକ୍ତିର ବହିର୍ଭୂତ ନୁହେଁ। ଜଡ଼ବସ୍ତୁର ଅତି ବିରାଟ ଭୌତିକ ଶକ୍ତି ମଧ୍ୟ ମନୁଷ୍ୟ ହାତରେ ରହି ଅସାଧ୍ୟ ସାଧନ କରିପାରୁଛି। ଏ ବିରାଟ ଶକ୍ତି ପଛରେ ରହିଛି ମନୁଷ୍ୟର ଅତି ଉନ୍ନତ ମାନସିକ ଶକ୍ତି, ବୁଦ୍ଧିମତ୍ତା ଓ ତା'ର ସାମାଜିକ ଦଳଗତ ସହଯୋଗ। ତେଣୁ ଗୋଟିଏ ସିଂହର ଅତି ସହଜରେ ଗୋଟିଏ ଲୋକକୁ ଗର୍ଭସାତ୍ କରିବାର କ୍ଷମତା ଥିଲେ ସୁଦ୍ଧା ଦଶ କୋଡ଼ିଏଟା ସିଂହକୁ ଏକାସାଙ୍ଗରେ ଗୋଟିଏ ଲୋକ ତା'ର ବୁଦ୍ଧିବଳରେ ନିଜ ଇଚ୍ଛାନୁସାରେ ଆୟତ୍ତ କରିପାରେ। ଗୋଟିଏ ଜନ୍ତୁ ଯଦି କୌଣସି ଗୋଟିଏ ମଣିଷକୁ ମାରିବାକୁ ଚେଷ୍ଟା କରେ ତା'ହେଲେ ଅନ୍ୟାନ୍ୟ ମନୁଷ୍ୟମାନେ ସଙ୍ଗେ ସଙ୍ଗେ ତାକୁ ସାହାଯ୍ୟ କରନ୍ତି ; କିନ୍ତୁ ଏ ପ୍ରକାର ଦଳଗତ ଚେଷ୍ଟା କେତେକ ଜନ୍ତୁଙ୍କଠାରେ ଦେଖାଗଲେ ସୁଦ୍ଧା ମନୁଷ୍ୟର ବୁଦ୍ଧି ପରି ଅତି ଉନ୍ନତ ବୁଦ୍ଧି ଅଭାବରୁ ଏମାନଙ୍କ ଭିତରେ ସଂଗଠିତ ଚେଷ୍ଟା ଏବଂ ଦଳଗତ ସହଯୋଗ ଦେଖାଯାଏ ନାହିଁ। ଏହି ସହଯୋଗ ଓ ଚେଷ୍ଟା ହିଁ ମନୁଷ୍ୟର ଉତ୍ତରୋତ୍ତର ଉନ୍ନତିର ମୂଳରେ ରହିଛି।

ଅତି ଆଦିମ ଯୁଗରେ ଯେତେବେଳେ ପ୍ରଥମେ ମନୁଷ୍ୟ ଅନ୍ୟାନ୍ୟ ବଣ୍ୟ ଜନ୍ତୁଙ୍କ ପରି ବଣ ଜଙ୍ଗଲରେ ବୁଲୁଥିଲା–ସେମାନଙ୍କ ପରି ନିଃସହାୟ ଅବସ୍ଥାରେ ନିଜର ପ୍ରାଣଧାରଣ କରୁଥିଲା, ବହୁ କଷ୍ଟରେ ଫଳମୂଳ ଓ ଅନ୍ୟାନ୍ୟ ଜୀବଜନ୍ତୁଙ୍କର ମାଂସ ସଂଗ୍ରହ କରୁଥିଲା, ବଞ୍ଚିବା ପାଇଁ, ସେତେବେଳେ ସେ ତା'ର ସମସାମୟିକ ଜନ୍ତୁଙ୍କଠାରୁ ବହୁତ ଦୁର୍ବଳ ଥିଲେ ସୁଦ୍ଧା କେବଳ ବୁଦ୍ଧି ଯୋଗୁଁ ଗୋଟିଏ ସାମାଜିକ ପରିସ୍ଥିତି ସୃଷ୍ଟି କରିପାରିଥିଲା। ବର୍ତ୍ତମାନ ଯୁଗ ତୁଳନାରେ ତାହା ଖୁବ୍ ସରଳ ଓ ତା'ର ଆବେଷ୍ଟନୀ ଖୁବ୍ ସଂକୀର୍ଣ୍ଣ ଥିଲେ ସୁଦ୍ଧା ଏହି ସାମାଜିକ ଆବେଷ୍ଟନୀ ମନୁଷ୍ୟକୁ ପ୍ରଗତି ପଥରେ ଆଗେଇ ନେଇଥିଲା। ସେତେବେଳେ ଗୋଟିଏ ମୁନିଆ ପଥର କିମ୍ବା ଗଛର ଡାଳ ସାହାଯ୍ୟରେ ଜଣେ ଏକା ଏକା ଗୋଟିଏ ବଡ଼ ଜନ୍ତୁକୁ ମାରିବା କଷ୍ଟକର ; କିନ୍ତୁ ଦଳେ ଏପାଖ ସେପାଖ ହୋଇ ଛକି ସେହି ଜନ୍ତୁଟିକୁ ମାରିବାକୁ ଚେଷ୍ଟା କଲେ ଏହା ସହଜ ହୋଇପଡ଼ିବା ସ୍ୱାଭାବିକ। ଜୀବନଧାରଣ ଲାଗି ଖାଦ୍ୟ ସଂଗ୍ରହ ତଥା ବାହାରର ଶତ୍ରୁଠାରୁ ନିଜକୁ ବଞ୍ଚାଇ ରଖିବା ଲାଗି ଚେଷ୍ଟା ଏପରି ଦଳବଦ୍ଧ ଭାବରେ ସମ୍ଭବ ହୋଇପାରୁଥିବାରୁ ମଣିଷ ସମାଜ ଅନ୍ୟମାନଙ୍କଠାରୁ ଟିକିଏ ଭଲରେ ରହିପାରିଥିଲା। କ୍ରମେ କ୍ରମେ ସାମାଜିକ ଆବେଷ୍ଟନୀ ଗଢ଼ିଉଠିଲା। ତା'ର ପ୍ରଭାବ ମଧ୍ୟ ପରିସ୍ଥିତିର ପରିବର୍ତ୍ତିତ ଅବସ୍ଥା ଓ ଯୁଗର ଜଟିଳ ସମୟ ଭିତର ଦେଇ ବିଭିନ୍ନ ପ୍ରକାରେ ଦେଖାଦେଲା। ଜୀବନ ସଂଗ୍ରାମରେ ଯେଉଁ ମାନବ ସମାଜର ସାମାଜିକ ଆବେଷ୍ଟନୀ ଯେତେ ପ୍ରଗତିଶୀଳ ଓ ଏହାର ମୂଳଦୂଆ ସ୍ୱରୂପ କାମ

କରୁଥିବା ଭିନ୍ନଭିନ୍ନ ବ୍ୟକ୍ତିମାନଙ୍କ ଭିତରେ ଯେତେବେଶି ଦ୍ୱନ୍ଦରହିତ ସହଯୋଗ ଦେଖାଯାଏ ତାହା ଅନ୍ୟାନ୍ୟ ମନୁଷ୍ୟ ସମାଜ ତୁଳନାରେ ସେତେବେଶି ଶକ୍ତିଶାଳୀ ଓ ସଭ୍ୟ ଜାତି ହିସାବରେ ବିବେଚିତ ହୋଇଥାଏ। ଇତିହାସରେ ସଭ୍ୟଜାତିମାନଙ୍କର ଉତ୍‌ଥାନ ପତନର ମୂଳକାରଣଗୁଡ଼ିକ ବିଶ୍ଳେଷଣ କଲେ ଏହା ଦେଖିବାକୁ ମିଳେ।

ବ୍ୟକ୍ତିବିଶେଷକୁ ସାମାଜିକ ଆବେଷ୍ଟନୀ ଗଢ଼େ ଓ ଅନେକ ସମୟରେ ଖୁବ୍ ପ୍ରଭାବଶାଳୀ ବ୍ୟକ୍ତିମାନେ ମଧ ଅତୀତର ଅଭିଜ୍ଞତା ଓ ଭବିଷ୍ୟତର ଦୂରଦୃଷ୍ଟି ସହ ସେହି ଆବେଷ୍ଟନୀକୁ ବଦଳାଇ ଦିଅନ୍ତି ଏବଂ ନୂତନ ସାମାଜିକ ପରିସ୍ଥିତି ସୃଷ୍ଟି ହୁଏ। ଏହିପରି ବ୍ୟକ୍ତି ଓ ସମଷ୍ଟିର ଜଟିଳ କ୍ରିୟା-ପ୍ରତିକ୍ରିୟା ଲାଗିରହିଥାଏ। ତେଣୁ ଯେକୌଣସି ଯୁଗର ଯେକୌଣସି ଲୋକର ମାନସିକ କ୍ରିୟା- ପ୍ରତିକ୍ରିୟା ବୁଝିବାକୁ ହେଲେ, ଯେକୌଣସି ଯୁଗର ସାହିତ୍ୟ, ସଭ୍ୟତା, ସଂସ୍କୃତି, କଳା ଓ ସାଧାରଣ ମନୋଭାବକୁ ବିଶ୍ଳେଷଣ କରିବାକୁ ହେଲେ ସେ ଯୁଗର ପ୍ରଚଳିତ ସାମାଜିକ ତଥା ଭୌତିକ ଆବେଷ୍ଟନୀ ପ୍ରତି ନଜର ଦେବା ଉଚିତ। ମାନବଶିଶୁ ଜନ୍ମହେଲାକ୍ଷଣି ହିଁ ପ୍ରଚଳିତ ସାମାଜିକ ଆବେଷ୍ଟନୀ ଭିତରେ ଶିକ୍ଷା ପାଇବାକୁ ଆରମ୍ଭ କରେ। ପିତା, ମାତା, ପରିବାର, ପରିସ୍ଥିତି ଓ ସାଙ୍ଗ ପଡ଼ିଶାର ମନୋଭାବ ତାକୁ ନିର୍ଦ୍ଦିଷ୍ଟ ଭାବରେ ପ୍ରଭାବିତ କରିଥାଏ। ସାମାଜିକ ରୀତିନୀତି, ବଂଶପରମ୍ପରାରୁ ଗଡ଼ିଆସୁଥିବା ସଂସ୍କାର, ସଂସ୍କୃତି ଓ ବିଭିନ୍ନ ପ୍ରଚଳିତ ଆଦର୍ଶ କ୍ରମବର୍ଦ୍ଧିଷ୍ଣୁ ଶିଶୁକୁ ପ୍ରଭାବିତ କରିଥାଏ। ଅବଶ୍ୟ ତା'ମାନେ ନୁହେଁ ଯେ ଏହି ପ୍ରଭାବଶାଳୀ ସାମାଜିକ ଆବେଷ୍ଟନୀ ଭିତରୁ ନିଜକୁ ମୁକ୍ତ କରିପାରିବାର କ୍ଷମତା ବ୍ୟକ୍ତି-ବିଶେଷର ନାହିଁ। ତା'ହେଲେ ତ କୁସଂସ୍କାର ଜଡ଼ିତ ସମାଜରେ ବିପ୍ଳବ ସମ୍ଭବ ହୋଇପାରନ୍ତା ନାହିଁ। ଅତି ବୁଦ୍ଧିମାନ ବ୍ୟକ୍ତିବିଶେଷର ପ୍ରଚଳିତ ସାମାଜିକ ପ୍ରଭାବରୁ ମୁକ୍ତିପାଇ ବୈପ୍ଳବିକ ପରିବର୍ତ୍ତନ ଆଣିବାର କ୍ଷମତା ଥିଲେ ସୁଦ୍ଧା ଜନସାଧାରଣଙ୍କର ଜୀବନ ଏହି ଆବେଷ୍ଟନୀ ଭିତରେ ହିଁ ଆବଦ୍ଧ ରହିଯାଏ। ସାମାଜିକ ଆବେଷ୍ଟନୀ ତାକୁ ବହୁତ ସାହାଯ୍ୟ କରେ। ପ୍ରତି କ୍ଷେତ୍ରରେ ତା'ର କର୍ତ୍ତବ୍ୟ-ଅକର୍ତ୍ତବ୍ୟ ପଥ ନିର୍ଦ୍ଦେଶ କରେ। ତେଣୁ ଯେକୌଣସି ସାମାଜିକ ଆବେଷ୍ଟନୀ ହେଉନା କାହିଁକି, ବ୍ୟକ୍ତିବିଶେଷର ନିଜତ୍ୱ ଏହା ଭିତର ଦେଇହିଁ ପ୍ରକାଶ ପାଏ। ଭଲ ପରିବେଷ୍ଟନୀ ହେଲେ ବ୍ୟକ୍ତିତ୍ୱର ଗଠନ ଭଲଭାବରେ ହୋଇଥାଏ ଅର୍ଥାତ୍ ଅନ୍ୟମାନଙ୍କ ତୁଳନାରେ ଏହା ଅଧିକ ଶକ୍ତିଶାଳୀ ଓ ଏହାର ପ୍ରଭାବ ସୁଦୂରବ୍ୟାପୀ ହୋଇଥାଏ ଏବଂ ଖରାପ ଆବେଷ୍ଟନୀ ହେଲେ ବ୍ୟକ୍ତିତ୍ୱର ବିକାଶ ସଂକୀର୍ଣ୍ଣ ହୋଇପଡ଼େ ଓ ଏହା ଅନ୍ୟମାନଙ୍କ ତୁଳନାରେ ଦୁର୍ବଳ ହୋଇଯାଏ। ତେଣୁ ଯେକୌଣସି ପରିସ୍ଥିତି ହେଉନା କାହିଁକି ବ୍ୟକ୍ତିବିଶେଷର ବ୍ୟକ୍ତିତ୍ୱ ଗଠନରେ ଏହା ବହୁତ ପ୍ରଭାବ ପକାଇଥାଏ।

ମନୁଷ୍ୟର ମନକୁ ବିଶ୍ଳେଷଣ କରି ଦେଖିଲେ ଜଣାଯାଏ ଯେ ତା'ର ପ୍ରତ୍ୟେକ ଭାବଧାରା, ସଂସ୍କାର, କୁସଂସ୍କାର, ବଦ୍ଧମୂଳ ଧାରଣା, ସାମାଜିକ ଦୃଷ୍ଟିକୋଣ ଓ ଆଦର୍ଶ ପ୍ରଭୃତି ସମସ୍ତ କଥା ତା'ର କ୍ରମବର୍ଦ୍ଧିଷ୍ଣୁ ସାମାଜିକ ଅଭିଜ୍ଞତାର କୌଣସି ନା କୌଣସି ସ୍ତରରୁ ଦେଖିବାକୁ ମିଳେ। ପ୍ରତ୍ୟେକ କ୍ରିୟାର ନିର୍ଦ୍ଦିଷ୍ଟ କାରଣ ଅଛି ; ତେଣୁ ଏ ପ୍ରକାର ମାନସିକ ବିକାଶର ନିର୍ଦ୍ଦିଷ୍ଟ କାରଣ ଥିବା ମଧ ସ୍ୱାଭାବିକ। ସୁତରାଂ କୌଣସି ସମାଜରେ ବ୍ୟକ୍ତିବିଶେଷର ଚରିତ୍ର ଗଠନ ଓ ତା'ର ମାନସିକ ଚିନ୍ତାଧାରା ସେହି ସମାଜ ଦ୍ୱାରା ହିଁ

ଗଠିତ ହୋଇଥାଏ । ଆହୁରି ମଧ ଦେଖାଯାଏ ଯେ ଏ ପ୍ରକାର ମନୋଭାବ ଓ ଚିନ୍ତାଧାରା ଜନ୍ମଗତ ନୁହେଁ, ଅର୍ଥାତ୍ ପିତାମାତାଙ୍କଠାରୁ ଏସବୁ ଅନ୍ତର୍ନିହିତ ଶକ୍ତିଭାବରେ ଆସି ନଥାଏ । ଏସବୁର ଉଦ୍ଭବ ହୁଏ କେବଳ ସାମାଜିକ ଶିକ୍ଷା ଦ୍ୱାରା । ତେଣୁ ଏହା ବିନାଦ୍ୱିଧାରେ କୁହାଯାଇପାରେ ଯେ ଏସବୁ ବ୍ୟକ୍ତିବିଶେଷର ନିଜ ଜୀବନର ସ୍ୱୋପାର୍ଜିତ ଶିକ୍ଷା । ତେଣୁ ବ୍ୟକ୍ତିର ବ୍ୟକ୍ତିଗତ ଚରିତ୍ର ଉପସ୍ଥିତ ସମାଜର ବିଭିନ୍ନ ଶକ୍ତି ମଧ୍ୟରୁ କେତେକ ଶକ୍ତିର କେନ୍ଦ୍ରୀଭୂତ ସଂଶ୍ଳେଷ ମାତ୍ର । ତା'ହେଲେ ବ୍ୟକ୍ତିବିଶେଷର ମନୋବୃତ୍ତି ଓ ଚରିତ୍ର ବଦଳାଇବାକୁ ହେଲେ ତା'ର ପ୍ରଧାନ ପ୍ରଧାନ ସାମାଜିକ କାରଣଗୁଡ଼ିକୁ ପ୍ରଥମେ ବିଶ୍ଳେଷଣ କରି ସେ ସବୁକୁ ବଦଳାଇବା ଦରକାର । କୌଣସି କାର୍ଯ୍ୟକୁ କିମ୍ବା ବିଭିନ୍ନ ଶକ୍ତି ସଂଭୂତ ଫଳକୁ ବଦଳାଇବାକୁ ହେଲେ ତା'ର ମୂଳ କାରଣଗୁଡ଼ିକୁ ଯେପରି ବଦଳାଇବା ପ୍ରଥମେ ଦରକାର, ସେହିପରି ମନୁଷ୍ୟର ଚିନ୍ତାଧାରା ବା ଚରିତ୍ରକୁ ବଦଳାଇବାକୁ ହେଲେ ସେହି ଯୁଗର ସାମାଜିକ କାରଣଗୁଡ଼ିକର ପରିବର୍ତ୍ତନ ପ୍ରଥମେ କରିବା ଉଚିତ । ଓଜସ୍ୱିନୀ ଭାଷାରେ ଖୁବ୍ ଲମ୍ବା ଲମ୍ବା ବକ୍ତୃତା ଦେଲେ ଯାହା ନ ହେବ, ସାମାଜିକ ଆବେଷ୍ଟନୀ ବଦଳାଇ ଦେଲା ପରେ ଚରିତ୍ରର ପୁନର୍ଗଠନ ସମ୍ଭବ ହୋଇପାରିବ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଆମ ଦେଶରେ ହରିଜନମାନଙ୍କର ମନୋବୃତ୍ତି ଓ ସେମାନଙ୍କ ପ୍ରତି ଉପରଶ୍ରେଣୀ ଲୋକଙ୍କର ସାମାଜିକ ନିର୍ଯାତନାର ଲୋପ ସାଧନ କରିବାକୁ ହେଲେ ପ୍ରଥମେ ସେମାନଙ୍କର ଆବେଷ୍ଟନୀ ସମ୍ପୂର୍ଣ୍ଣରୂପେ ବଦଳାଇବା ଦରକାର । ଆର୍ଥିକ ଓ ଅନ୍ୟାନ୍ୟ ସାମାଜିକ ସମ୍ପର୍କ ବଦଳାଇଦେଲେ ଆପେ ଆପେ ସମସ୍ତଙ୍କର ମନୋବୃତ୍ତି ମଧ ବଦଳିଯିବ । ତେଣୁ ବ୍ୟକ୍ତିବିଶେଷର ଦୋଷାଦୋଷର କାରଣ ତା'ର ସାମାଜିକ ଓ ଭୌତିକ ଆବେଷ୍ଟନୀ ଭିତରୁ ହିଁ ଖୋଜି ବାହାର କରିହେବ ।

ବର୍ତ୍ତମାନ ଦେଖାଯାଉ, ଆଧୁନିକ ସାମାଜିକ ଜୀବନର ମୂଳଭିତ୍ତି ଓ ବ୍ୟକ୍ତିତ୍ୱ ଗଠନରେ ତା'ର ଫଳାଫଳ । ବର୍ତ୍ତମାନ ସବୁ କ୍ଷେତ୍ରରେ ମନୁଷ୍ୟର ବୁଦ୍ଧିର ପରାକାଷ୍ଠା ଦେଖାଦେଇଛି । ବୁଦ୍ଧିବଳରେ ମନୁଷ୍ୟ ଅତି ଅଦ୍ଭୁତ ଶକ୍ତି ହାସଲ କରିପାରୁଛି । ତା'ର ସୃଷ୍ଟି କରିବାର ଶକ୍ତି ବହୁତ ବଢ଼ିଯାଇଛି । ଏହି ସୃଷ୍ଟି କରିବା ଶକ୍ତି ଉପରେ ତା'ର ସମସ୍ତ ସଭ୍ୟତା ସମସ୍ତ ଉନ୍ନତି ନିର୍ଭର କରିଛି । ଗତ ଏକଶତ ବର୍ଷ ଭିତରେ ମନୁଷ୍ୟ ଏତେବେଶି ସୃଷ୍ଟି କରିପାରିଛି ଯେ ତା'ର ସାମାଜିକ ଆବେଷ୍ଟନୀ, ତା'ର ମାନସିକ ଚିନ୍ତାଧାରା, ତା'ର ସାମାଜିକ ଦୃଷ୍ଟିଭଙ୍ଗୀ ଅସାଧାରଣ ଭାବରେ ବଦଳିଯାଇଛି । ଯାହା ଦିନେ ଅତି ଅସମ୍ଭବ ଓ କଳ୍ପନାତୀତ ଥିଲା ତାହା ଅତି ସହଜରେ ସମ୍ଭବ ହୋଇପାରୁଛି । ଏ ବିରାଟ ପୃଥିବୀ ତା'ଆଗରେ ଅତି ଛୋଟ ହୋଇପଡ଼ିଛି । ମନୁଷ୍ୟର ଶତାବ୍ଦୀବ୍ୟାପୀ ବହୁ ସ୍ୱପ୍ନ ବାସ୍ତବ ହୋଇ ପାରିଛି । ଏ ବିରାଟ ଶକ୍ତିରେ ବଳୀୟାନ୍ ହୋଇ ଓ କଳ୍ପନାତୀତ ସୃଷ୍ଟିର ସୃଷ୍ଟିକର୍ତ୍ତା ହୋଇ ଏବଂ ନିଜର ଅଦ୍ଭୁତ ଶକ୍ତିର କିଞ୍ଚିତ ଆଭାସ ପାଇ ମନୁଷ୍ୟ ସମାଜ ବିଜୟ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଛି ; କିନ୍ତୁ ଏ ମହନୀୟ ଅନୁଭବ ଓ ଆନନ୍ଦ ସଙ୍ଗେ ସଙ୍ଗେ ଅତି ଭୀଷଣ ସାମାଜିକ ଦ୍ୱନ୍ଦ୍ୱ ଓ ଧ୍ୱଂସର କରାଳ ମୂର୍ତ୍ତି ମଧ ଆସି ଉଙ୍କି ମାରୁଛି ।

ଆଧୁନିକ ମନୁଷ୍ୟ ସମାଜ ଭିତରେ ପ୍ରତ୍ୟେକ ଲୋକର ବ୍ୟକ୍ତିଗତ ପରିପୂର୍ଣ୍ଣତା ପାଇବାର ସମ୍ଭାବନା ବହୁ ପରିମାଣରେ ବୃଦ୍ଧି ପାଇଥିଲେ ସୁଦ୍ଧା ଅଧିକାଂଶ ବ୍ୟକ୍ତି ଏ

ବିରାଟ ଶକ୍ତିର ବାହାରେ ରହିଯାଇଛନ୍ତି। ଫଳରେ ସାମାଜିକ ଜୀବନରେ ଗୋଟିଏ ବିରାଟ ସଂଘର୍ଷ ଦେଖାଦେଇଛି। ସମସ୍ତଙ୍କର ସମାନ ଅଧିକାର ନ ଥିବାରୁ ସାମାଜିକ ଜୀବନ କୃତ୍ରିମ ହୋଇପଡ଼ିଛି। ମନୁଷ୍ୟତ୍ୱର ବିକାଶ, ମାନସିକ ଦମ ଓ ସ୍ଥିରତା ପରିବର୍ତ୍ତେ ମାନସିକ ଚଞ୍ଚଳତା ଓ ସାମାଜିକ ବ୍ୟର୍ଥତା ଦେଖାଦେଇଛି। ଯେଉଁମାନେ ଏହି ଶକ୍ତିର ବାହାରେ ସେମାନଙ୍କର ବ୍ୟର୍ଥତା ସାଙ୍ଗକୁ ଯେଉଁ ସାମାନ୍ୟ କେତେଜଣ ଏହାର ଅଧିକାରୀ, ସେମାନଙ୍କର ଅଯଥା ଦାମ୍ଭିକତା ଓ ଆତ୍ମବଡ଼ିମା ସାମାଜିକ ଜୀବନକୁ ଧ୍ୱଂସମୁଖକୁ ଠେଲିଦେବାକୁ ବସିଛି। ଏ ସଂଘର୍ଷ ଫଳରେ ସମସ୍ତଙ୍କ ମନରେ ଗୋଟିଏ ଭୟ ଦେଖାଦେଇଛି। ସାମାଜିକ ପରିପୂର୍ଣ୍ଣତା ଓ ସମଷ୍ଟିଗତ ଐକ୍ୟ ଜନିତ ମନବଳ ପରିବର୍ତ୍ତେ ବ୍ୟକ୍ତିବିଶେଷ ନିଃସହାୟ ହୋଇପଡ଼ିଛି। ଏହା ମାନବ ପକ୍ଷରେ ଅତି ଭୀଷଣ ପରୀକ୍ଷାର ସମୟ। ମାନବସଭ୍ୟତା ଜୀବନର ଐତିହାସିକ ପଥରେ ଦୁଇଆଡ଼କୁ ବାହାରିଥିବା ଦୁଇଟି ରାସ୍ତାର ଗୋଟିଏ ଛକମୁଣ୍ଡରେ ଆସି ପହଞ୍ଚିଛି। ଗୋଟିଏ ରାସ୍ତାରେ ଗତି କଲେ ଅତି ଅଦ୍ଭୁତ ଶକ୍ତି ଓ ପ୍ରଭୂତ ସମ୍ପଦର ଉତ୍ତରାଧିକାରୀ ହେବ ଏବଂ ଅନ୍ୟ ରାସ୍ତାଟିରେ ପାଦ ପକାଇଲେ ଧ୍ୱଂସର ଅତିଭୟଙ୍କର ଅତଳସ୍ପର୍ଶୀ କରାଳ କବଳରେ ନିଜକୁ ନିକ୍ଷେପ କରିଦେବ। ତେଣୁ ରାସ୍ତା ବାଛି ଠିକ୍ କରିବା ଭାର ବର୍ତ୍ତମାନ ଆମ୍ଭମାନଙ୍କ ଉପରେ ଏବଂ ଏହାରି ଉପରେ ହିଁ ସାମାଜିକ ଜୀବନର ପୂର୍ଣ୍ଣତା ଓ ବ୍ୟକ୍ତିବିଶେଷର ବିକାଶ ନିର୍ଭର କରେ। ଅବଶ୍ୟ ବର୍ତ୍ତମାନର ସମସ୍ୟାଟି ବଡ଼ କଠିନ ହେଲେ ହେଁ ହତୋତ୍ସାହ ବା ଭୟଭୀତ ହୋଇପଡ଼ିବାର କୌଣସି କାରଣ ନାହିଁ। କାରଣ ଜୀବନର ସଂଗ୍ରାମ କ୍ଷେତ୍ରରେ ମଝିମଝିରେ ସଭ୍ୟତାର ଯୁଗ ପରିବର୍ତ୍ତନକାରୀ ବିପ୍ଳବ ଦେଖାଦେଲେ ପ୍ରତ୍ୟେକ ମନୁଷ୍ୟ ସମାଜକୁ ଏ ପ୍ରକାର ସମସ୍ୟାର ସମ୍ମୁଖୀନ ହେବାକୁ ହୁଏ। ଯେଉଁମାନେ ଦୂରଦୃଷ୍ଟି ଓ ବିଜ୍ଞତାର ସହିତ ଶତ ବାଧାବିଘ୍ନକୁ ଠେଲି ଆଗେଇ ଚାଲିଯାଆନ୍ତି ସେମାନଙ୍କର ଜୟ ହୁଏ, ଆଉ ଦୁର୍ବଳଭାବାପନ୍ନ ଜାତି ପଛେଇଯାଏ ଓ କ୍ରମେ କ୍ରମେ ପରାସ୍ତ ହୋଇ ଧ୍ୱଂସ ହୋଇଯାଏ। ଏହା ମନୁଷ୍ୟ ଇତିହାସର ଚିରାଚରିତ ରୀତି।

ଅବଶ୍ୟ ବର୍ତ୍ତମାନ ଯୁଗର ସଂଘର୍ଷ ଖୁବ୍ ବଡ଼ଧରଣର ହେଲେ ମଧ୍ୟ ଯେଉଁମାନେ ଏହାର ସୃଷ୍ଟିକର୍ତ୍ତା, ସେହିମାନଙ୍କର ମଧ୍ୟ ଯଥେଷ୍ଟ ଶକ୍ତି ଅଛି ତା'ର ସମାଧାନ କରିବା ଲାଗି। କେବଳ ସେଥିଲାଗି ଯଥେଷ୍ଟ ସାହସ ଓ ବିଚାରବୁଦ୍ଧି ଆବଶ୍ୟକ। ମନେହୁଏ, ବର୍ତ୍ତମାନ ଚାରିଆଡ଼େ ଏହି ସଂଘର୍ଷର କରାଳଛାୟା ଦେଖାଦେଇଥିଲେ ସୁଦ୍ଧା ଓ ପ୍ରତିକ୍ରିୟାଶୀଳ ଲୋକମାନଙ୍କର ପ୍ରଭାବ ଖୁବ୍ ବେଶି ବୋଲି ମନେ ହେଉଥିଲେ ସୁଦ୍ଧା ଏହାର ପ୍ରତିରୋଧକାରୀ ପ୍ରଗତିଶୀଳ ଲୋକଶ୍ରେଣୀର ଶକ୍ତି ମଧ୍ୟ କମ୍ ନୁହେଁ। ସମଗ୍ର ପୃଥିବୀର ଲୋକମାନଙ୍କ ଭିତରେ ଏ ଯେଉଁ ସଂଘର୍ଷ ଦେଖାଦେଇଛି, ତା'ର ପରିଣାମ ଉଭୟ ଦୃଷ୍ଟିରୁ ଗୁରୁତର ; ଧ୍ୱଂସ ଦୃଷ୍ଟିରୁ ଯେପରି ଭୟଙ୍କର, ପୃଥିବୀବ୍ୟାପୀ ସାମାଜିକ ଗଠନ ଓ ମନୁଷ୍ୟ ସମାଜ ଭିତରେ ସାର୍ବଜନୀନ ଐକ୍ୟ ଓ ମହାମାନବୀୟ ଭ୍ରାତୃଭାବର ପ୍ରତିଷ୍ଠା ବିଷୟରେ ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ। ତେଣୁ କିଏ କହିବ କା'ର ଜୟ ଓ କା'ର ପରାଭବ ହେବ—ମନୁଷ୍ୟର ଦୁର୍ବଳତାର ନା ତା'ର ଶକ୍ତିର ?




# ଶ୍ରେଣୀହୀନ ସମାଜ

ଆଦିମ ଯୁଗର ଶ୍ରେଣୀହୀନ ସମାଜ ଓ ଭବିଷ୍ୟତର ବିଜ୍ଞାନ-ସମ୍ମତ ଏବଂ ବୈଜ୍ଞାନିକ ଚିନ୍ତାଧାରାପ୍ରସୂତ ଶ୍ରେଣୀହୀନ ସମାଜ ଭିତରେ ଆକାଶ ପାତାଳ ତଫାତ୍। ପ୍ରାଚୀନ ଶ୍ରେଣୀହୀନ ସମାଜ ସେ ସମୟର ପରିସ୍ଥିତି ଭିତରେ ମନୁଷ୍ୟ ସମାଜକୁ ବଞ୍ଚାଇ ରଖିବା ପାରିଥିଲା – ସେ ସମୟର ଯୁଗୋପଯୋଗୀ ସରଳ ସଭ୍ୟତାକୁ ମଧ୍ୟ ସୃଷ୍ଟି କରିଥିଲା ଓ ଭବିଷ୍ୟତର ସାମାଜିକ ବିପ୍ଳବ ପର୍ଯ୍ୟନ୍ତ ଏହାକୁ ନିୟମାଧୀନ ଓ ନିୟନ୍ତ୍ରିତ କରିପାରିଥିଲା। ଏ ସଭ୍ୟତା ଏତେ ସରଳ ଏବଂ ଜୀବନଯାପନ ପ୍ରଣାଳୀ ଏପରିଭାବରେ ସ୍ୱାଭାବିକ ଓ ସ୍ଥୂଳ ଥିଲା ଯେ ଖୁବ୍ ବେଶି ମାନସିକ ଚିନ୍ତା ଓ ସଙ୍ଘାତ ସାମାଜିକ ଚେଷ୍ଟାର ବିଶେଷ ଆବଶ୍ୟକ ନଥିଲା। ସାମାନ୍ୟ କେତୋଟି ମାତ୍ର ପ୍ରାକୃତିକ ବସ୍ତୁ ଉପରେ ମନୁଷ୍ୟର ପ୍ରଭାବ ପଡ଼ିଥିଲା। ପ୍ରାକୃତିକ ପରିସ୍ଥିତିରେ ମୌଳିକ ଶକ୍ତିସମୂହର ସହଜ ଓ ସ୍ୱାଭାବିକତା ସ୍ରୋତ ମୁଖରେ ସେ ଯନ୍ତ୍ରବତ୍ ପରିଚାଳିତ ହେଉଥିଲା। ମନୁଷ୍ୟର ଉତ୍ପାଦନ କ୍ଷମତା ବହୁତ ଅନୁନ୍ନତ ଥିବା ଫଳରେ ତା'ର ସୃଷ୍ଟିକାରୀ ବୈଜ୍ଞାନିକ ଚିନ୍ତାଧାରା ମଧ୍ୟ ଅତିଶୟ କ୍ଷୀଣ ଥିଲା। ଅର୍ଥାତ୍ ସେ ତାହାର ପରିସ୍ଥିତି ବିଷୟରେ ସମ୍ପୂର୍ଣ୍ଣଭାବେ ସଚେତ ନଥିଲା ଓ ସେଥିଯୋଗୁଁ ପ୍ରାକୃତିକ ଶକ୍ତି ଆଗରେ ସେ ଏତେ ଦୁର୍ବଳ ଥିଲା।

ଏ ପ୍ରକାର ଦୁର୍ବଳତା ଆପେକ୍ଷିକ ମାତ୍ର। ପରବର୍ତ୍ତୀ ଯୁଗର ମାନସିକ ବିକାଶ ଓ ଉତ୍ପାଦନ କ୍ଷମତାର ମାନଦଣ୍ଡରେ ଏହା ଦୁର୍ବଳ କିନ୍ତୁ ସେ ସମୟର ଅନ୍ୟାନ୍ୟ ପରିସ୍ଥିତି ଓ ଜୀବଜଗତର ମାନଚିତ୍ରରେ ଏହା ବହୁ ଉନ୍ନତ ଓ ଶକ୍ତିଶାଳୀ ଥିଲା ଏବଂ ସେଥିପାଇଁ ଶାରୀରିକ ଶକ୍ତିରେ ବଳୀୟାନ ଜୀବଜନ୍ତୁଙ୍କୁ ସମଷ୍ଟିଗତ ଚେଷ୍ଟା ଫଳରେ ଜୟକରି ସମାଜକୁ ସେମାନଙ୍କ ହାତରୁ ରକ୍ଷା କରିବା ସଙ୍ଗେସଙ୍ଗେ ସେମାନଙ୍କ ମାଂସରେ ନିଜକୁ ପରିପୁଷ୍ଟ କରିପାରିଥିଲା। ମନୁଷ୍ୟର ଏହି ଅନ୍ତର୍ନିହିତ ଶକ୍ତିର ଚରମ ବିକାଶ ହୋଇଛି ବର୍ତ୍ତମାନର ବୈଜ୍ଞାନିକ ଯୁଗରେ। କିନ୍ତୁ ଆଧୁନିକ ସମାଜର ଅତି ଉନ୍ନତ ବିଜ୍ଞାନ-ଲବ୍ଧ ଶକ୍ତିର ପ୍ରୟୋଗରେ ଯେଉଁ ଆତ୍ମଘାତୀ ଦ୍ୱନ୍ଦ୍ୱ ଓ ସଂକୀର୍ଣ୍ଣ ସ୍ୱାର୍ଥପରତା ରହିଛି, ତାହା ମନୁଷ୍ୟର ବହୁତ ଅନିଷ୍ଟ କରୁଛି– ସମଗ୍ର ମନୁଷ୍ୟ ସମାଜରେ ସୁଖ ସମୃଦ୍ଧି ବୃଦ୍ଧି ପାଇବାର ସମ୍ଭାବନା ଯେପରି ଅଦ୍ଭୁତଭାବରେ ବୃଦ୍ଧି ପାଇଛି, କେତେକ ବ୍ୟକ୍ତିବିଶେଷଙ୍କର ନିଜ ଅଭିଳାଷ ସିଦ୍ଧି ପାଇଁ ଧ୍ୱଂସ କରିବାର ବାସନା ମଧ୍ୟ ସେହି ପରିମାଣରେ ଦୁଃଖ, ଯନ୍ତ୍ରଣା ସୃଷ୍ଟି କରିଛି– ସମଷ୍ଟିଗତ ଉତ୍ପାଦିକା ଶକ୍ତି ବ୍ୟକ୍ତିଗତ ଖାମଖିଆଲରେ ପରିଚାଳିତ ହେଉଅଛି। ତେଣୁ ମନୁଷ୍ୟର ଚରମ ବିକାଶ ଲାଗି ଯେପରି ସାମାଜିକ ସଂସ୍ଥିତିର ଆବଶ୍ୟକ, ତାହା ପ୍ରତିଷ୍ଠିତ ହେଲେ ଯାଇ ବର୍ତ୍ତମାନ ସମାଜର ଆତ୍ମଘାତୀ ଦ୍ୱନ୍ଦ୍ୱ ଲୋପ ପାଇବ। ଏହା ହେଉଛି ମାନବ-ସମାଜର ବହୁ ଆକାଙ୍କ୍ଷିତ ଉଚ୍ଚତମ ଶ୍ରେଣୀହୀନ ସମାଜ।

ଏ ପ୍ରକାର ଶ୍ରେଣୀହୀନ ସମାଜର ପ୍ରତିଷ୍ଠା ବିଜ୍ଞାନ ସାହାଯ୍ୟରେ କେବଳ ଏହି ଯୁଗରେ ହିଁ ସମ୍ଭବ ହୋଇପାରିବ। ସମଗ୍ର ସମାଜର ସଜ୍ଞାତ ଚେଷ୍ଟା, ବିରାଟ ପ୍ରାକୃତିକ ଶକ୍ତିର ସୁସଙ୍ଗଠିତ ପ୍ରୟୋଗ, ସମାଜର ଶତ୍ରୁ ରୂପେ କାମ କରୁଥିବା ସବୁ ପ୍ରକାର ପ୍ରତିକ୍ରିୟାଶୀଳ ଅନୁଷ୍ଠାନ ବା ବ୍ୟକ୍ତିର ଚରମ ନିପାତ ଏବଂ ଏଥିଲାଗି ସମାଜସେବୀ ନେତା, ଲୋକହିତକାରୀ ବୈଜ୍ଞାନିକ, ଯୁଗୋପଯୋଗୀ ବିପ୍ଳବୀ ଓ ଅଦ୍ୟମ ଶକ୍ତି-ସମ୍ପନ୍ନ, ବଳିଷ୍ଠ ଆଦର୍ଶାନୁପ୍ରାଣିତ ପ୍ରଗତିଶୀଳ ଜନସମୂହର ପୃଥିବୀବ୍ୟାପୀ ସଂଗଠିତ ଚେଷ୍ଟାର ଏକାନ୍ତ ଆବଶ୍ୟକ।

ତେବେ କି କି ଉପାୟ ଅବଲମ୍ବନ କଲେ, ଏହି ଆଦର୍ଶସ୍ଥାନୀୟ ଶ୍ରେଣୀହୀନ ସମାଜର ପ୍ରତିଷ୍ଠା ସମ୍ଭବ ହୋଇପାରିବ ? ସର୍ବପ୍ରଥମେ ଏହା ମନେ ରଖିବାକୁ ହେବ ଯେ ଏହି ଶ୍ରେଣୀହୀନ ସମାଜ ଆଦିମ ଯୁଗର ସମାଜ ପରି ଅପୃଥକୀଭୂତ ସମଷ୍ଟି ନୁହେଁ, ବରଂ ଏହା ନାନା ବିଷୟରେ ପାରଦର୍ଶିତା ଲାଭ କରିଥିବା କାର୍ଯ୍ୟଦକ୍ଷ ନରନାରୀଙ୍କର ସଜ୍ଞାତ ଚେଷ୍ଟା ଫଳରେ ଗଢ଼ିଉଠିଥିବା ନୂତନ ସାମାଜିକ ଅନୁଷ୍ଠାନ। ତେଣୁ ଏହା ସମ୍ଭବ ହେବାକୁ ହେଲେ ଦେଶର ପ୍ରତ୍ୟେକ ନରନାରୀଙ୍କୁ ଉଚ୍ଚଧରଣର ଶିକ୍ଷା ଦେବା ଆବଶ୍ୟକ ଏବଂ ସେମାନଙ୍କୁ ବିଜ୍ଞାନର ଅପରିସୀମ ସମ୍ଭାବନା ଓ ମନୁଷ୍ୟର ସୃଷ୍ଟି କରିବାର ବିରାଟ ଅନ୍ତର୍ନିହିତ ଶକ୍ତି ବିଷୟରେ ଜାଗ୍ରତ କରାଇବା ଦରକାର। ବିଜ୍ଞାନର ଚରମ ବିକାଶ ଓ ସୁସଂଗଠିତ ପ୍ରୟୋଗ ଫଳରେ ହିଁ ସଂକୀର୍ଣ୍ଣ ଶ୍ରେଣୀ ବିଭାଗର କଠିନ ସୀମାରେଖା ଉଠାଇ ଦେଇ ହେବ। ଏଥିପାଇଁ ଜନସାଧାରଣଙ୍କ ଦ୍ୱାରା ମନୋନୀତ ପ୍ରକୃତ ଗଣତାନ୍ତ୍ରିକ ସରକାରର ଦ୍ୱିଧାହୀନ ସଂଗଠନ ଓ କଠୋର ନିୟନ୍ତ୍ରଣର ଏକାନ୍ତ ଆବଶ୍ୟକ। ତା' ନ ହେଲେ ବ୍ୟକ୍ତିସମୂହର ଉତ୍ପାଦିକାଶକ୍ତି ସମଗ୍ର ସମାଜର କଲ୍ୟାଣାର୍ଥେ ଉପଯୁକ୍ତ ଭାବରେ ନିୟୋଜିତ ହେବା ସମ୍ଭବ ନୁହେଁ। ପ୍ରତ୍ୟେକ ମନୁଷ୍ୟର ପ୍ରତ୍ୟେକ ମୁହୂର୍ତ୍ତ ଗୋଟିଏ ବିରାଟ ସମଷ୍ଟିଗତ ସଂଯୋଜନାରେ ବ୍ୟୟିତ ହେବା ଦରକାର – ତା' ହେଲେ ଯାଇ ଖୁବ୍ ଅଳ୍ପ ସମୟରେ ଅସମ୍ଭବ ରକମର ସୁଖସମୃଦ୍ଧି ବୃଦ୍ଧି ପାଇ ପାରିବ ଏବଂ ମନୁଷ୍ୟର ଖୁବ୍ ଜରୁରୀ ଅଭାବ ଅନଟନ ସବୁ ଶୀଘ୍ର ଦୂରୀଭୂତ ହୋଇପାରିବ। ମନୁଷ୍ୟର ପ୍ରଧାନ କେତୋଟି ଆବଶ୍ୟକତା ମେଣ୍ଟିଗଲା ପରେ ଯାଇ ପ୍ରକୃତ ସଭ୍ୟତାର ଆରମ୍ଭ ହେବ ଏବଂ ସେହି ସଭ୍ୟତାର ଆଦର୍ଶ ହେବ ଶ୍ରେଣୀହୀନ ସମାଜ। ଏ ପ୍ରକାର ଯୋଜନା ଓ ତାକୁ କାର୍ଯ୍ୟକାରୀ କରିବାର ଶକ୍ତି ଜାଗ୍ରତ ଜନସମାଜକୁ ଉପଯୁକ୍ତ ପ୍ରତିନିଧିମାନେ ହିଁ ସେହି ଲୋକମାନଙ୍କର ସାହାଯ୍ୟରେ କରିପାରିବେ ; କିନ୍ତୁ ଏହି ଯୋଜନାସବୁ କେଉଁ କ୍ଷେତ୍ରରେ ଓ କିପରି ଭାବରେ କାର୍ଯ୍ୟକାରୀ ହେବା ବାଞ୍ଛନୀୟ ; ବର୍ତ୍ତମାନ ତା'ର ଆଲୋଚନା କରାଯାଉ।

ବର୍ତ୍ତମାନର କଠିନ ସୀମା ପରିବେଷ୍ଟିତ ଅସମାନ ଶ୍ରେଣୀ ବିଭାଗକୁ ପୂରାପୂରି ବଦଳାଇ ଯୁଗୋପଯୋଗୀ ବୃତ୍ତିଗତ ବ୍ୟବସାୟ ଅନୁସାରେ ଅତି ସହଜରେ ପରିବର୍ତ୍ତନୀୟ

କ୍ଷୀଣରେଖା ଦ୍ୱାରା ସମାଜକୁ ପୁନର୍ବିଭକ୍ତ କରିବାକୁ ହେଲେ ବିଭିନ୍ନ ଶ୍ରେଣୀର କାର୍ଯ୍ୟ-ପଦ୍ଧତି ଓ ଜୀବନ ଯାପନ ପ୍ରଣାଳୀ ଭିତରେ ବିଶେଷ ପାର୍ଥକ୍ୟ ରହିବା ଉଚିତ ନୁହେଁ। ପ୍ରଫେସର, ଡେପୁଟି, ଡାକ୍ତରର ପୁଅକୁ ଚାଷ କରିବାକୁ ହେଲେ ଏ ଦୁଇପ୍ରକାର ଜୀବନ ପ୍ରଣାଳୀ ଭିତରେ ସାମାଜିକ ଓ ସାଂସ୍କୃତିକ ସାମଞ୍ଜସ୍ୟ ଆଣିବା ଦରକାର। ଡାକ୍ତର, ପ୍ରଫେସର ପ୍ରଭୃତି ଶ୍ରେଣୀର ଲୋକେ ଜୀବନ ଉପଭୋଗ କରିବା ଲାଗି ଯେ ପ୍ରକାର ସୁଯୋଗ ସୁବିଧା ଏବଂ ଜୀବନ ଯାପନ ପ୍ରଣାଳୀରେ ରମଣୀୟତା ପାଇବେ, ସେମାନଙ୍କର ପୁଅ ଚାଷ କରି ମଧ୍ୟ ସେହିପରି ଭାବରେ ବଞ୍ଚି ରହିବାର ସୁବିଧା ପାଇଲେ ଯାଇ ଡାକ୍ତରର ପୁଅ ଚାଷ କରିବାକୁ କୁଣ୍ଠାବୋଧ କରିବ ନାହିଁ–ଅର୍ଥାତ୍ ଡାକ୍ତର ବା ପ୍ରଫେସର ଶ୍ରେଣୀ ଭିତରୁ ଚଷା ଶେଣ୍ରୀ ଭିତରକୁ ଯିବାକୁ ଯେପରି କୌଣସି ପ୍ରକାର ଆର୍ଥିକ, ସାମାଜିକ ବା ସାଂସ୍କୃତିକ ପ୍ରତିବନ୍ଧକ ନ ରହେ, – ତା' ହେଲେ ଗୋଟିଏ ରେଖା ପାର ହୋଇ ଅନ୍ୟ ବିଭାଗକୁ ସହଜରେ ଗତି କରି ହେବ ଏବଂ ସେଥିଲାଗି ପରସ୍ପର ଶ୍ରେଣୀ ଭିତରେ ଅଯଥା ବାଧାର ସୃଷ୍ଟି ହେବନାହିଁ କିମ୍ବା ଦୁଇଦିଗରୁ ପ୍ରବଳ ପ୍ରତିରୋଧକାରୀ ଓ ବିରୁଦ୍ଧାତ୍ମକ ଶକ୍ତି ମଧରେ ଅଯଥା ଦ୍ୱନ୍ଦ୍ୱ ଦେଖାଦେବ ନାହିଁ। ଏହିପରି ଭାବରେ ଯେକୌଣସି ବିଭାଗକୁ ଯିବାପାଇଁ ଗତି ସହଜସାଧ ଓ ସୀମା ପ୍ରତିରୋଧକାରୀ ଶକ୍ତି ରହିତ ହେବା ଦରକାର। ବାଧବାଧକତା ଭାବରେ ସୀମାକୁ ହଟାଇବା ସହଜସାଧ କିମ୍ବା ବାଞ୍ଛନୀୟ ନୁହେଁ। ପ୍ରଥମେ ପ୍ରଥମେ ବାହ୍ୟ ଶକ୍ତିର ସାମାନ୍ୟ ସାହାଯ୍ୟ ଦରକାର ପଡ଼ିଲେ ସୁଦ୍ଧା ପାରିପାର୍ଶ୍ୱିକ ପରିସ୍ଥିତିକୁ ବିଜ୍ଞତାର ସହିତ ବୈଜ୍ଞାନିକ ପ୍ରଣାଳୀରେ ବଦଳାଇ ପାରିଲେ ଏ ପ୍ରକାର ଶକ୍ତି ପ୍ରୟୋଗର ଆଉ ଆବଶ୍ୟକତା ରହିବ ନାହିଁ। ଡାକ୍ତର, ଅଧାପକର ମାନସିକ କାର୍ଯ୍ୟ ଓ ମଜୁରିଆର ବିରକ୍ତିକର କଠିନ ଶାରୀରିକ ପରିଶ୍ରମ ଭିତରେ ଯେଉଁ ଆକାଶ ପାତାଳ ପ୍ରଭେଦ ଅଛି, ତାକୁ ଯଥାସମ୍ଭବ ଲୋପ କରିବା ଦରକାର।

ଚଷା କିମ୍ବା ମେହେନ୍ତର ଅତି ସ୍ଥୂଳ ଯନ୍ତ୍ରଦ୍ୱାରା ବା ନିଜ ହାତରେ କାମ କରୁଥିବାରୁ ତା'ର କାମ ବହୁ ପରିଶ୍ରମସାଧ ଓ ବିରକ୍ତିକର ହୋଇ ପଡୁଛି। ବୁଦ୍ଧିର ପ୍ରୟୋଗ ଓ ମାନସିକ ଚିନ୍ତାଧାରା ସହିତ ଏ ପ୍ରକାର କାମର କୌଣସି ସମ୍ପର୍କ ରହୁନାହିଁ। ବରଂ ଅନ୍ତର୍ନିହିତ ଧୀ ଶକ୍ତିର କ୍ରମାବନତି ଘଟୁଛି ଏବଂ ଖଟିଖିଆ ମଜୁରିଆ ଓ ଅଧାପକ ଭିତରେ ବିରାଟ ବୌଦ୍ଧିକ ବ୍ୟବଧାନ ଦେଖାଦେଉଛି। ଚାଷୀ ମଜୁରିଆଙ୍କ ପାଇଁ ବିଜ୍ଞାନ ସାହାଯ୍ୟରେ ଅତି ଶକ୍ତିଶାଳୀ କୃତ୍ରିମ ଯନ୍ତ୍ର ତିଆରି କରାଯାଇପାରେ, ଯାହା ସାହାଯ୍ୟରେ କି ସେ ନିଜ ବୁଦ୍ଧି ବଳରେ ଗୋଟିଏ ସ୍ଥାନରେ ବସି କେବଳ ଗୋଟିଏ ବୋତାମ ଟିପି ବା ଚକଟିଏ ମୋଡ଼ି ତା'ର ସମସ୍ତ କାମ ଖୁବ୍ ଅଳ୍ପ ସମୟ ଭିତରେ ଓ ପୂର୍ବାପେକ୍ଷା ଅନେକ ଭଲ ଭାବରେ କରିଦେଇ ପାରିବ। ସେଥିଲାଗି ତାକୁ ପ୍ରଥମରୁ ଅଧାପକ ପରି ଅଧ୍ୟୟନ କରିବାକୁ ହେବ–ଯନ୍ତ୍ରକୁ ସୁଚାରୁରୂପେ ଚଳାଇବା ପାଇଁ ବୁଦ୍ଧିର ଚାଳନା ଓ ହାତର

କୌଶଳ ପ୍ରୟୋଗ କରିବାକୁ ପଡ଼ିବ। ତା ଛଡ଼ା ଅଳ୍ପ ସମୟ ଭିତରେ ସେ କାମ ଶେଷ କରିଦେଇ ପାରିବାରୁ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟରେ ତା'ର ଅବଶିଷ୍ଟାଂଶ ସମୟ ବ୍ୟୟିତ ହୋଇପାରିବ ଏବଂ ସେ ଅନ୍ୟାନ୍ୟଙ୍କ ପରି ରାଜନୀତି, ଅର୍ଥନୀତି, କଳା କୃଷ୍ଟି ପ୍ରଭୃତିରେ ଅଧିକ ସମୟ ଦେଇ ସୁଖୀ ହୋଇପାରିବ। ତେଣୁ ଡାକ୍ତରର ପୁଅ ଚାଷ କରି ଫେରିବାବେଳକୁ ଡାକ୍ତର ଡାକ୍ତରଖାନାରୁ ଫେରି ଆସିଥିବ। ପ୍ରତ୍ୟେକେ ସେମାନଙ୍କ ନିଜ ନିଜ କାମରେ ଗର୍ବ ଅନୁଭବ କରୁଥିବେ ଏବଂ କେହି କାହାକୁ କୃଷ୍ଟି ବା ସଭ୍ୟତା ଦୃଷ୍ଟିରୁ ହୀନ ଚକ୍ଷୁରେ ଦେଖିବାର ଅବକାଶ ନ ଥିବ। ଖାଲି ସେତିକି ନୁହେଁ, ନୂତନ ସାମାଜିକ ଶିକ୍ଷା ପ୍ରଣାଳୀ ମୂଳରୁ ଏପରି ଭାବରେ ଗଢ଼ା ହୋଇଥିବ ଯେ ପ୍ରତ୍ୟେକ ନାଗରିକର ବିଭିନ୍ନ ବିଭାଗୀୟ କାର୍ଯ୍ୟ ପାଇଁ ଶ୍ରଦ୍ଧା ଓ ସମ୍ମାନ ଦେଖାଇବା ମନୋଭାବ ଗଠିତ ହୋଇପାରିଥିବ। କୌଣସି ପ୍ରକାର ଶ୍ରେଣୀଗତ କିମ୍ବା ସାମାଜିକ ପ୍ରଭେଦ ନ ଥିବାରୁ ଉଚ୍ଚ ନୀଚ ମନୋଭାବ ସୃଷ୍ଟି ହେବାର ମଧ୍ୟ କୌଣସି ଆବଶ୍ୟକତା ନ ଥିବ। ତେଣୁ ଲୋକର ଆଗ୍ରହ ଓ ଶକ୍ତି ଅନୁସାରେ ବିଭିନ୍ନ ବିଭାଗରୁ ନିଜର ବ୍ୟବସାୟ ବିଭାଗ ବାଛିନେବ ଓ ସେ ସେଥିରେ ସୁଖୀ ହୋଇ ପାରିବ–ସୁଖୀ ହୋଇ ନ ପାରିଲେ ଅନ୍ୟ ବିଭାଗକୁ ଚାଲିଯିବାରେ କୌଣସି ପ୍ରତିବନ୍ଧକ ନ ଥିବାରୁ ସେ ସହଜରେ ନିଜ ବୃତ୍ତି ବଦଳାଇ ପାରିବ।

ବର୍ତ୍ତମାନ ଜଣେ ବ୍ରାହ୍ମଣକୁ ଚାଷ କରିବାକୁ ଭଲ ଲାଗୁନାହିଁ। କିନ୍ତୁ ମଟର ଚଳାଇବାରେ କି କାରଖାନାରେ କାମ କରିବାରେ ତା'ର କୌଣସି ଆପତ୍ତି ନାହିଁ। ଯଦି ଲଙ୍ଗଳ ପରିବର୍ତ୍ତେ ଟ୍ରାକ୍ଟର ବ୍ୟବହୃତ ହୁଏ, ତାହା ହେଲେ ତାର ଚାଷ କରିବାରେ କୌଣସି ଆପତ୍ତି ରହିବ ନାହିଁ। ମେହେନ୍ତର କାମ ସବୁଠୁଁ ଗର୍ହିତ। ଯେଉଁମାନେ ସେ କାମ କରନ୍ତି, ସେମାନେ ଅସ୍ପୃଶ୍ୟ। ଏପରି ଭାବରେ ସେମାନେ ମଇଳା କାମ କରନ୍ତି ଯେ ଅନ୍ୟମାନଙ୍କର ଘୃଣା ହେବା ସ୍ୱାଭାବିକ। ତେଣୁ ଜଣେ ଡେପୁଟିର ପୁଅ କେଉଁ ହେଲେ ମେହେନ୍ତର ହେବାକୁ ମନ ବଳାଇବ ନାହିଁ; କିନ୍ତୁ ଯନ୍ତ୍ର ସାହାଯ୍ୟରେ ଯଦି ପାଇଖାନା ସବୁ ଧୁଆହୋଇ ମାଟି ତଳେ ତଳେ ମଇଳାପାଣି ଯାଇ ନଦୀ ସମୁଦ୍ରରେ ପକାଯାଏ ଏବଂ ସେଥିଲାଗି କେବଳ ଇଲେକ୍‌ଟ୍ରିକ୍ ସୁଇଚ୍ ଓ କଳକବ୍‌ଜାର ବ୍ୟବହାର କରିବା ଦରକାର ପଡ଼େ, ତା' ହେଲେ ଡେପୁଟିର ପୁଅ ସେଥିରେ ଅରାଜି ହେବନାହିଁ। ବର୍ତ୍ତମାନ କ'ଣ ଡେପୁଟିର ପୁଅ ଇଞ୍ଜିନିୟର ହେଉ ନାହିଁ? ମେକାନିକ୍ କାମ କରୁନି ? ନା ବିଦ୍ୟୁତ ବିଭାଗୀୟ ଇଞ୍ଜିନିୟର ହେବାକୁ ଅରାଜି ହେଉଛି? ତେଣୁ ଶ୍ରେଣୀ ବିଭାଗର ପ୍ରବଳ ପ୍ରତିରୋଧକାରୀ ଗଭୀର ରେଖା ସବୁକୁ ଉଠାଇବାକୁ ହେଲେ ପ୍ରଥମେ ଶାରୀରିକ ପରିଶ୍ରମକୁ ଯନ୍ତ୍ର ସାହାଯ୍ୟରେ ଲାଘବ କରିବାକୁ ହେବ। ମନୁଷ୍ୟ ମାଂସପେଶୀ ସାହାଯ୍ୟରେ ଯେଉଁ କଠିନ ପରିଶ୍ରମ କରୁଛି, ତାକୁ କୃତ୍ରିମ ଉପାୟରେ ଜଡ଼ ପଦାର୍ଥ ସାହାଯ୍ୟରେ କରିବା ଦରକାର। ଆଜିକାଲି କଟକରୁ କଲିକତା ଚାଲି ଚାଲି କିମ୍ବା ବଳଦ

ଗାଡ଼ିରେ ଯିବା ଯେପରି କେହି କଳ୍ପନା ସୁଦ୍ଧା କରି ପାରୁ ନାହାନ୍ତି, ସେହିପରି ଦିନ ଆସିବ, ଯେତେବେଳେ ଲୋକେ କଳ୍ପନା କରି ପାରିବେ ନାହିଁ କିପରି ଅତୀତରେ ମନୁଷ୍ୟ ହାତରେ ପାଇଖାନା ସଫା କରୁଥିଲା—ପିଠିରେ ମଇଳାବୋଝ ବୋହି ବୋହି ଦିନ ଦ୍ୱିପ୍ରହରରେ ମାଇଲ ମାଇଲ ରାସ୍ତା ଚାଲୁଥିଲା ଓ ରୋଗଗ୍ରସ୍ତ ମୁମୂର୍ଷ ବଳଦ ସାହାଯ୍ୟରେ ଜଣେ ଲୋକ ଦିନକୁ ଛୋଟିଆ ଖଣ୍ଡେ ମାତ୍ର ଜମି ଚାଷକରି ସନ୍ତୁଷ୍ଟ ରହି ପାରୁଥିଲା। ସେତେବେଳେ ଟଙ୍କା ମେହେନ୍ତରଙ୍କୁ ଇଞ୍ଜିନିୟର ଓ ସୁଦକ୍ଷ ଟେକ୍‌ନିସିଆନ୍ ହେବାକୁ ପଡ଼ିବ, ତେଣୁ ଶ୍ରେଣୀଗତ ପାର୍ଥକ୍ୟ ଉଠାଇବାକୁ ହେଲେ ବିଜ୍ଞାନ ସାହାଯ୍ୟରେ ଏ ପ୍ରକାର ବିପ୍ଳବାତ୍ମକ ପରିବର୍ତ୍ତନ ପ୍ରତି ପ୍ରଥମେ ଦୃଷ୍ଟି ଦେବାକୁ ହେବ।

ଯେତେବେଳେ ବିଜ୍ଞାନ ସାହାଯ୍ୟରେ ଏହା ସମ୍ଭବ ହୋଇପାରିବ, ସେତେବେଳେ ଆହୁରି ଅନେକ ପ୍ରକାରର ସାମାଜିକ ପାର୍ଥକ୍ୟ ମଧ୍ୟ ଲୋପ ପାଇଯିବ। ଆଜିକାଲି ଆମ ଦେଶ ନେତାମାନଙ୍କର ଅଭିଯୋଗ ଯେ ଶିକ୍ଷିତ ଲୋକେ ମଫସଲକୁ ଯିବାକୁ ମଙ୍ଗୁନାହାନ୍ତି—ଯେଉଁମାନେ ସହରରେ ବଢ଼ି ଆସୁଛନ୍ତି, ସେମାନେ ମନଖୁସିରେ ମଫସଲକୁ ଫେରିଯିବାକୁ ଇଚ୍ଛୁକ ନୁହଁନ୍ତି। ତା'ର କାରଣ କ'ଣ ? ସହରରେ କେତେଗୁଡ଼ିଏ ସୁବିଧା ଅଛି, ଯାହାକି ମଫସଲରେ ସମ୍ଭବ ନୁହେଁ। ସହରର ରାସ୍ତା ଭଲ—ଖାଇବା ପାଇଁ ବିଭିନ୍ନ ରୁଚିକର ଖାଦ୍ୟ ମିଳେ—ସିନେମା, ଥିଏଟର, ଦୋକାନ, ଡାକ୍ତରଖାନା ପ୍ରଭୃତି ବହୁ ଆବଶ୍ୟକୀୟ ସାମାଜିକ ଅନୁଷ୍ଠାନ ଅଛି, ଯାହାକି ଜୀବନକୁ ସୁଖମୟ କରିପାରୁଛି। କିନ୍ତୁ ଆମ ଦେଶ ଗାଁମାନଙ୍କର ଅବସ୍ଥା କ'ଣ ? ବର୍ଷାଦିନେ ଗୋଟିଏ ଗାଁରୁ ଅନ୍ୟ କୁଆଡ଼େ ଯାଇହେବନାହିଁ, ଦେହ ଖରାପ ହେଲେ କେହି ଦେଖିବାକୁ ନାହାନ୍ତି—ଦରକାର ଅନୁସାରେ କିଛି ଜିନିଷ ମିଳିବ ନାହିଁ—ଏପରିକି ଦୁଇ ତିନି ଖଣ୍ଡ ଗାଁ ପାଇଁ ଗୋଟିଏ ଦୋକାନ—ସମୟ କଟାଇବା ପାଇଁ କୌଣସି ସାଂସ୍କୃତିକ କି ଆମୋଦକର ଅନୁଷ୍ଠାନ ନାହିଁ—ସହରବାସୀଙ୍କ ଅପେକ୍ଷା ଗ୍ରାମବାସୀ ସାଧାରଣତଃ ବହୁତ ଗରିବ—ଏସବୁ କାରଣରୁ ସହର ଓ ମଫସଲ ଭିତରେ ଏତେ ବେଶି ପାର୍ଥକ୍ୟ ଓ ଶ୍ରେଣୀ ବିଭାଗ ରହିଛି। ବିଜ୍ଞାନର ପ୍ରୟୋଗ ଦ୍ୱାରା ଯେତେବେଳେ ଗ୍ରାମବାସୀଙ୍କର ଆର୍ଥିକ ଅବସ୍ଥା ସୁଧୁରିଯିବ ଓ ଯୋଜନା ଅନୁସାରେ ପ୍ରତ୍ୟେକ ଗ୍ରାମରେ ସହରର ସବୁ ସୁବିଧା କରିହେବ, ସେତେବେଳେ ଅନେକେ ଜନଗହଳ ସହର ଛାଡ଼ି ଗ୍ରାମକୁ ଯିବାକୁ ଇଚ୍ଛା ପ୍ରକାଶ କରିବେ। ଶିଳ୍ପର ବହୁଳ ପ୍ରସାର ଫଳରେ କୃଷି କାର୍ଯ୍ୟରେ ନିଯୁକ୍ତ ଥିବା ଲୋକଙ୍କର ଅନୁପାତ କମିଯିବ ଏବଂ କଳକବ୍‌ଜାର ପ୍ରସାର ଯୋଗୁଁ ଶାରୀରିକ ପରିଶ୍ରମ କମିଯିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଶ୍ରମିକର ଉତ୍ପାଦିକା ଶକ୍ତି ବହୁ ପରିମାଣରେ ବଢ଼ିଯିବ। କାୟିକ ଓ ମାନସିକ ପରିଶ୍ରମ ଭିତରେ ଯେଉଁ ଆକାଶ ପାତାଳ ପ୍ରଭେଦ ରହିଛି, ତାହା ଲୋପ ପାଇବା ଉପରେ ସହର ମଫସଲ ସମ୍ପର୍କ ନିର୍ଭର କରେ। ଜଣେ ସହରରେ ରହି ବିଜୁଳି ପଙ୍ଖା ତଳେ ବସି ଖାଲି କଲମ ଚଳାଇ ବହୁ ଟଙ୍କା ପାଉଥିବା ବେଳେ, ଜଣେ କାହିଁକି ଦିନଯାକ ଅକ୍ଳାନ୍ତ ପରିଶ୍ରମ କରି

ଏତେକମ୍ ଟଙ୍କା ପାଇବାକୁ ଇଚ୍ଛା ପ୍ରକାଶ କରିବ? ତେଣୁ ସହରୀ ମଫସଲ ଶ୍ରେଣୀ ବିଭାଗ ମୂଳରେ ରହିଛି ଶିକ୍ଷିତ, ଅଶିକ୍ଷିତ, ବୁଦ୍ଧିଜୀବୀ, ଶ୍ରମଜୀବୀ, ଧନୀ, ଗରିବ ଶ୍ରେଣୀ ବିଭାଗ ଓ ମାନଧାତା କାଳର ଉତ୍ପାଦନ ପ୍ରଣାଳୀ।

ଉପରୋକ୍ତ ଦୁଇଟି ପ୍ରଧାନ ଶ୍ରେଣୀ ବିଭାଗ ଉଠାଇବାକୁ ହେଲେ ସମଗ୍ର ଦେଶର ଆର୍ଥିକ ଅବସ୍ଥାର ବହୁ ଉନ୍ନତି ହେବା ସଙ୍ଗେ ସଙ୍ଗେ ଉତ୍ପାଦନର ବଣ୍ଟନ ପ୍ରଣାଳୀରେ ବିପ୍ଳବାତ୍ମକ ପରିବର୍ତ୍ତନ ଆସିବା ଦରକାର ଏବଂ ଏହା ନ ହେଲେ ଉପରୋକ୍ତ ଶ୍ରେଣୀ ବିଭାଗ ମଧ୍ୟ ଉଠିପାରିବ ନାହିଁ। ଅର୍ଥାତ୍ ଧନୀ ଓ ଗରିବ ଶ୍ରେଣୀ ବିଭାଗ ମଧ୍ୟ ତା ସଙ୍ଗେ ସଙ୍ଗେ ଲୋପ ପାଇଯିବା ଉଚିତ। ଉପଯୁକ୍ତ ବଣ୍ଟନ ପ୍ରଣାଳୀ ଦ୍ୱାରା ସମାଜର ଅର୍ଥନୈତିକ ସାମ୍ୟ ଆସିଗଲେ, ସମାଜରୁ ବହୁ ପ୍ରକାରର ଆତ୍ମଘାତୀ ପ୍ରତିଯୋଗିତା, ଅନିର୍ଦ୍ଦିଷ୍ଟତା, ଭୟ, ମାନସିକ ଅନିଶ୍ଚିତତା, ଚୋରି, ଡକାୟତି ପ୍ରଭୃତି ଅସାମାଜିକ ଆଚରଣ, ବ୍ୟକ୍ତି ବିଶେଷର ସମ୍ପତ୍ତି ସଞ୍ଚୟ ଲାଗି ଆତୁରତା, ସମ୍ପତ୍ତିଗତ ବିଦ୍ୱେଷ, ଆତ୍ମଗରିମା, ଦଳଗତ ବ୍ୟକ୍ତିଗତ ତିକ୍ତତା ପ୍ରଭୃତି ବହୁ ଦୋଷ ଦୂର ହୋଇପାରିବ। ପ୍ରତ୍ୟେକର ଅର୍ଥନୈତିକ ସ୍ୱାଧୀନତା ଓ ସୁସଙ୍ଗଠିତ ଶିକ୍ଷା ପ୍ରଣାଳୀ ଫଳରେ ଶିକ୍ଷିତ ଅଶିକ୍ଷିତ, ସଦ୍‌ବଂଶଜ କୁଳୀନ ସଂପ୍ରଦାୟର ସଂସ୍କୃତି ଓ ନିମ୍ନଶ୍ରେଣୀ ଲୋକର କୁସଂସ୍କାର ଭିତରେ ଥିବା ପ୍ରଭେଦ ମଧ୍ୟ ବହୁତ କମିଆସିବ। ସାମାଜିକ କୃଷ୍ଟି ସାମାନ୍ୟ କେତେକ ଶିକ୍ଷିତ ଲୋକଙ୍କର ଏକଚାଟିଆ ଅଧିକାର ନ ହୋଇ ସାରା ସମାଜକୁ ମୂଳଭିତ୍ତି କରି ଗଢ଼ିଉଠିବ। ଉଚ୍ଚକୋଟୀର କଳା ସହରବାସୀ ଯେପରି ଉପଭୋଗ କରିପାରିବେ, ପ୍ରତ୍ୟେକ ଗ୍ରାମରେ ମଧ୍ୟ ଲୋକେ ସେହିପରି ଭାବରେ ଉପଭୋଗ କରିପାରିବେ। ସାହିତ୍ୟିକ, କଳାବିତ୍ ଓ କବିମାନେ ସମସ୍ତଙ୍କ ଦ୍ୱାରା ଆଦୃତ ହେବେ ଏବଂ ଖଣ୍ଡେ ଖଣ୍ଡେ ବହିର ପ୍ରଥମ ସଂସ୍କରଣ ହଜାର ଖଣ୍ଡରେ ଆବଦ୍ଧ ନ ରହି ଲକ୍ଷ ଲକ୍ଷ ସଂଖ୍ୟାରେ ପ୍ରକାଶ ପାଇବ। ଗୋଟିଏ ଚଳଚ୍ଚିତ୍ର ଲକ୍ଷ ଲକ୍ଷ ସିନେମା ଘରେ ପ୍ରଦର୍ଶିତ ହେବ ଏବଂ କୋଟି କୋଟି ରେଡ଼ିଓ, ଟେଲିଭିଜନର ବ୍ୟବହାର ହୋଇପାରିବ। ଏ ପ୍ରକାର ବଳିଷ୍ଠ ସାଂସ୍କୃତିକ ସଙ୍ଗଠନ ତୁଳନାରେ ଆଜିକାଲିକାର ସଂକୀର୍ଣ୍ଣତମ କୃଷ୍ଟି କେତେ ଯେ ନିମ୍ନ ଧରଣର– ଏହା ସହଜରେ କଳ୍ପନା କରିହେବ।

ଶିକ୍ଷା ତଥା କୃଷ୍ଟି ଗତ ଦିଗ୍‌ମଣ୍ଡଳ ଏପରି ଭାବରେ ପ୍ରସାରିତ ହୋଇଗଲେ–ଜ୍ଞାନର ଆଲୋକ ସମସ୍ତଙ୍କୁ ସ୍ପର୍ଶ କରିପାରିଲେ ଧର୍ମଗତ, ଜାତିଗତ, ଗୋଷ୍ଠୀଗତ, ଦେଶଗତ ଓ ପ୍ରାଦେଶିକତା ପ୍ରଭୃତି ବହୁପ୍ରକାର ସଂକୀର୍ଣ୍ଣତା, କୁଶିକ୍ଷା ବା ଅଶିକ୍ଷାଜନିତ କୁସଂସ୍କାର ମଧ୍ୟ କମିଯିବ। ବର୍ତ୍ତମାନର ଶିକ୍ଷିତ ଓ ଧନୀ ସଂପ୍ରଦାୟର ଲୋକେ ଜନତାର ଅଜ୍ଞତା ଓ କୁସଂସ୍କାର ଯୋଗୁଁ କୁଶିକ୍ଷା ପ୍ରଚାର କରିବାର ସୁବିଧା ପାଉଛନ୍ତି ଓ ନିଜର ସ୍ୱାର୍ଥ ପାଇଁ ସେମାନଙ୍କ ମନରେ ନାନାପ୍ରକାର ସଂକୀର୍ଣ୍ଣ ବିଦ୍ୱେଷଭାବ ଉଦ୍ରେକ କରାଇ ସେମାନଙ୍କୁ ବନ୍ଧୁକ ଆଗରେ ରଖି ନିଜ କାମ ହାସଲ କରୁଛନ୍ତି–କୌଣସି ବ୍ୟକ୍ତିବିଶେଷ ଆରାମରେ

ବସି ଭୋଜନ କଲାବେଳେ ଭୋକିଲା କୁକୁରମାନେ ଯଦି ବିଶେଷ ଗଣ୍ଡଗୋଳ କରନ୍ତି, ତାହେଲେ ଖଣ୍ଡେ ହାଡ଼ ଫୋପାଡ଼ି ଦେଲେ ଯେପରି ସେମାନଙ୍କ ଭିତରେ କଳିତକରାଳ ଆରମ୍ଭ ହୋଇଯାଏ ଏବଂ ନିଜେ ମନ ଆନନ୍ଦରେ ଆହାରରେ ବ୍ୟସ୍ତ ରହେ, ସେପରି ମୁଷ୍ଟିମେୟ ଶିକ୍ଷିତ ଲୋକେ ଅର୍ଦ୍ଧ ବୁଭୁକ୍ଷୁ କୁସଂସ୍କାରାଚ୍ଛନ୍ନ ବିରାଟ ଜନତା ଭିତରେ ବହୁ ପ୍ରକାର କଳହର ମଞ୍ଜି ପୋତି ନିଜେ ତା'ର ସୁବିଧା ଉଠାଇ ପାରୁଛନ୍ତି; କିନ୍ତୁ ସମସ୍ତେ ଶିକ୍ଷିତ ଓ ସଚେତ ହୋଇପାରିଲେ ଏହା ସମ୍ଭବ ହୋଇ ପାରିବ ନାହିଁ। ଫଳରେ ସମାଜ ଭିତରେ କାହିଁକି, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ସଂଘର୍ଷ ବହୁପରିମାଣରେ କମିଯିବ। ପ୍ରତ୍ୟେକ ଆନ୍ତର୍ଜାତିକ ଯୁଦ୍ଧ ମୂଳରେ ରହିଛି ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀଙ୍କର ପୃଥିବୀର ସମ୍ପତ୍ତିକୁ ପରସ୍ପର ଭିତରେ ବାଣ୍ଟିବାର କୂଟ ଚକ୍ରାନ୍ତ। ସେମାନେ ଜନସାଧାରଣଙ୍କ ମନରେ ସ୍ୱଦେଶାନୁରାଗ, ଅନ୍ୟ ଜାତି ପ୍ରତି ଭୟଙ୍କର ବିଦ୍ୱେଷ ଓ ତିକ୍ତତା ଜାତ କରାଇ ପରସ୍ପର ଭିତରେ ସଂଘର୍ଷ ସୃଷ୍ଟି କରି ନିଜେ ପଛରେ ରହି ନିଜ ସ୍ୱାର୍ଥସିଦ୍ଧିରେ କୃତକାର୍ଯ୍ୟ ହୁଅନ୍ତି। କିନ୍ତୁ ଉପରୋକ୍ତ ଉପାୟରେ ବିଭିନ୍ନ ଶ୍ରେଣୀବିଭାଗ ଉଠିଗଲେ ଏସବୁ ବହୁ ପରିମାଣରେ ନିଶ୍ଚୟ ଲୋପ ପାଇଯିବ।

ଅନେକ ଦେଶରେ ସ୍ତ୍ରୀ ଓ ପୁରୁଷ ଭିତରେ ଗୋଟିଏ ବିରାଟ ପ୍ରଭେଦ ରହିଛି। ଯା ଫଳରେ ପୁରୁଷ ସ୍ତ୍ରୀକୁ ନିଜର ଅର୍ଦ୍ଧାଙ୍ଗିନୀ ବୋଲି କହି ଗର୍ବ କରୁଥିଲେ ସୁଦ୍ଧା ସ୍ତ୍ରୀ ପୁରୁଷର ସେବାକାରିଣୀ ଛଡ଼ା ଆଉ କିଛି ନୁହେଁ। ଅଶିକ୍ଷିତ ଲୋକମାନଙ୍କ ଭିତରେ ବରଂ ଏ କ୍ଷେତ୍ରରେ ଟିକିଏ ସାମ୍ୟ ଅଛି, କିନ୍ତୁ ଶିକ୍ଷିତ ସଂପ୍ରଦାୟ ଭିତରେ ବହୁତ ବେଶି ପାର୍ଥକ୍ୟ ପରିଲକ୍ଷିତ ହୁଏ। ସ୍ୱାମୀ ରାଜନୀତି, ଅର୍ଥନୀତି, ବିଜ୍ଞାନ ପ୍ରଭୃତିରେ ଗବେଷଣା କରି ଘରକୁ ଫେରିଲାବେଳକୁ ସ୍ତ୍ରୀ ପିଲାକାମ, ଘରକାମ କରି ଘୁଙ୍ଗୁଡ଼ି ମାରୁଥାଏ—ସ୍ୱାମୀର ଚିନ୍ତାଧାରା ସହିତ ସ୍ତ୍ରୀର କୌଣସି ସଂପର୍କ ନ ଥାଏ। ଏପରି କ୍ଷେତ୍ରରେ ସ୍ତ୍ରୀ ପୁରୁଷର ଯୌନସଙ୍ଗିନୀ ଛଡ଼ା ଆଉ କୌଣସି କ୍ଷେତ୍ରରେ ତା' ସହିତ ସମାନ ହେଇପାରେନା। ଫଳରେ ମାନସିକ ଐକ୍ୟ ଆଶା କରିବା ବିଡ଼ମ୍ବନା ମାତ୍ର। ସ୍ତ୍ରୀର ଅର୍ଥନୈତିକ ସ୍ୱାଧୀନତା ନ ଥିବାରୁ ପୁରୁଷର ଦାସୀ ହୋଇ ରହିବା ଛଡ଼ା ତା'ର ଅନ୍ୟ ଉପାୟ ନ ଥାଏ। ଆମ ସମାଜର ଆଦର୍ଶ ହେଉଛି, ଯେତେଦିନଯାଏ ଝିଅ ବାହା ହୋଇନାହିଁ, ସେ ବାପର—ବାହା ହେଲା ପରେ ସ୍ୱାମୀର; ବୃଦ୍ଧା ଅବସ୍ଥାରେ ପୁତ୍ରର। ଏଥିରୁ ବୁଝାଯାଏ ସ୍ତ୍ରୀକୁ କି ଅର୍ଥରେ ଦେଖାଯାଏ। କିନ୍ତୁ ସମାଜର ସର୍ବାଙ୍ଗୀନ ଉନ୍ନତି କରି ଶ୍ରେଣୀହୀନ ସମାଜ ଗଢ଼ିବାକୁ ହେଲେ ସ୍ତ୍ରୀକୁ ପୁରୁଷ ପରି ସବୁ କ୍ଷେତ୍ରରେ ସମାନ ଅଧିକାର ମିଳିବା ଦରକାର। ତା'ହେଲେ ଯାଇ ସେ ପୁରୁଷ ପରି ଉତ୍ପାଦନ କରିପାରିବ ଏବଂ ସମାଜର ସମୂହ ସୁଖ ସମୃଦ୍ଧି ବୃଦ୍ଧି ପାଇପାରିବ। ପୁରୁଷ ଓ ସ୍ତ୍ରୀ ଭିତରେ ଉପଯୁକ୍ତ ମାନସିକ ଐକ୍ୟ ଆସି ପାରିବ- ନାନା ପ୍ରକାର ବ୍ୟକ୍ତିଗତ ଦୁର୍ବଳତା ଓ ଅସାମାଜିକ କାର୍ଯ୍ୟାବଳୀ ସାମାଜିକ ଜୀବନକୁ ଦୁର୍ବଳ କରିଦେବ ନାହିଁ।

ଶ୍ରେଣୀହୀନ ସମାଜରେ ଶ୍ରେଣୀ ରହିବ ନାହିଁ ଏବଂ ସମସ୍ତ ଭିତରେ ଉଣାଅଧିକେ ସାମ୍ୟାବସ୍ଥା ଆସିଯିବ। କିନ୍ତୁ ତା' ଅର୍ଥ ନୁହେଁ ଯେ ଜଣେ ମଟରଚାଳକ ଓ ଜଣେ ବିଶିଷ୍ଟ ବୈଜ୍ଞାନିକ, ବା ଜଣେ ସୁଦକ୍ଷ ଗାୟକ ଓ ଜଣେ ସାଧାରଣ ଶିକ୍ଷକ ଭିତରେ କିଛି ପାର୍ଥକ୍ୟ ରହିବ ନାହିଁ। ଆଜିକାଲି ଜଣେ ସିନେମା ଅଭିନେତ୍ରୀ ଗୋଟିଏ ଚଳଚ୍ଚିତ୍ର ପାଇଁ ଲକ୍ଷ ଲକ୍ଷ ଟଙ୍କା ପାଉଛି, ଜଣେ ମଟର ଡ୍ରାଇଭର ବା ଜଣେ ଶିକ୍ଷକ ସାରା ଜୀବନରେ ଦଶ କୋଡ଼ିଏ ହଜାର ଟଙ୍କା ରୋଜଗାର କରି ପାରୁନାହିଁ—ଏପରି ତଫାତ୍ ରହିବ ନାହିଁ; ଅର୍ଥନୈତିକ ଦିଗରେ ସାମାନ୍ୟ ପାର୍ଥକ୍ୟ ରହିଲେ ସୁଦ୍ଧା ଗାୟକ ବା ବୈଜ୍ଞାନିକ ବେଶି ଜନପ୍ରିୟ ହୋଇ ପାରିବେ ଏବଂ ଏଥିପାଇଁ ବହୁ ସମ୍ମାନ ପାଇବେ। ଯେ ସମାଜର ଯେତେ ବେଶି ଉପକାର କରି ପାରିବ, ସେ ସେତେ ବେଶି ଆଦୃତ ହେବ। ଏଥିରେ ବିଦ୍ୱେଷ ଓ ବ୍ୟକ୍ତିଗତ ତିକ୍ତତା ରହିବା ସମ୍ଭବ ନୁହେଁ; ଏ ପ୍ରକାର କାର୍ଯ୍ୟରେ ତ ସାରା ମନୁଷ୍ୟ ସମାଜର ଶ୍ରଦ୍ଧା ସେମାନଙ୍କ ପ୍ରତି ସ୍ୱତଃ ପ୍ରକାଶ ପାଇବ। ବରଂ ଏମାନଙ୍କର କାର୍ଯ୍ୟ ଶ୍ରେଣୀଗତ ପ୍ରତିବନ୍ଧକଶୂନ୍ୟ ସମାଜରେ ବହୁଲୋକଙ୍କୁ ସେହିପରି କାମରେ ଅନୁପ୍ରାଣିତ କରିବ। ସମସ୍ତଙ୍କର ଆଗ୍ରହ ହେବ ନୂତନ ଉଦ୍ଭାବନା ବା ଅନ୍ୟ ଉପାୟରେ ସମାଜସେବା କରି ଜନପ୍ରିୟ ହେବା ପାଇଁ। ମନୁଷ୍ୟର କାର୍ଯ୍ୟ ଓ ସମ୍ମାନ ଅର୍ଥ ଦ୍ୱାରା ନିରୂପିତ ନ ହୋଇ ନୂତନ ସାମାଜିକ ମାନଦଣ୍ଡ ଦ୍ୱାରା ନିୟନ୍ତ୍ରିତ ହେବ। ଶ୍ରେଣୀକ୍ଲିଷ୍ଟ ସମାଜର ଚତୁର୍ଦ୍ଦିଗରେ ଏତେ ବେଶୀ ପ୍ରତିବନ୍ଧକ ଅଛି ଯେ ବହୁ ପ୍ରତିଭାଶାଳୀ ଲୋକେ ବଣମାଳତୀ ପରି ଅଜ୍ଞାତ ଅଶ୍ରୁତ ଭାବରେ ଶୁଖି ମରିଯା'ନ୍ତି।

ଶେଷରେ ଏତିକି କୁହାଯାଇପାରେ ଯେ ଜନତାର ହିତକାମୀ ପ୍ରକୃତ ଗଣତାନ୍ତ୍ରିକ ସରକାର ହିଁ ଜନସମାଜର ସହଯୋଗସଂପନ୍ନ ଯୋଜନା ଓ ଜନଶକ୍ତିର ଉପଯୁକ୍ତ ସଙ୍ଗଠନ ଦ୍ୱାରା ଏପରି ପରିସ୍ଥିତି ସୃଷ୍ଟି କରିଦେଇ ପାରିବ, ଯା' ଫଳରେ ଅତି ସହଜରେ ଓ ବିନା ବାଧବାଧକତାରେ ଦ୍ୱନ୍ଦ୍ୱରହିତ ଶ୍ରେଣୀହୀନ ସମାଜ ପ୍ରତିଷ୍ଠିତ ହୋଇପାରିବ। ତେଣୁ ଶ୍ରେଣୀହୀନ ସମାଜ ବକ୍ତୃତା ଓ ବାହ୍ୟ ବଳ ପ୍ରୟୋଗ ଦ୍ୱାରା କେବେ ସମ୍ଭବ ହୋଇପାରେନା; କେବଳ ପାରିପାର୍ଶ୍ୱିକ ପରିସ୍ଥିତି ବଦଳାଇବା ଦ୍ୱାରାହିଁ ଏହା ସମ୍ଭବ ହୋଇପାରିବ। ଜଡ଼ ଜଗତର ତଡ଼ିତ—ଚୁମ୍ବକ କ୍ଷେତ୍ରରେ ଯେପରି କେତେକ ଶକ୍ତିର ପରିବର୍ତ୍ତନ କରି ସମଗ୍ର ପରିସ୍ଥିତିର ଅନ୍ୟ ପ୍ରକାର ସଂସ୍ଥିତି ସୃଷ୍ଟି କରିହୁଏ, ସାମାଜିକ କ୍ଷେତ୍ରରେ ମଧ୍ୟ ବିଭିନ୍ନ ଅବସ୍ଥାରେ ପରିବର୍ତ୍ତନ କରି ସେହିପରି ନିଜ ଇଚ୍ଛାନୁରୂପ ନୂତନ ପରିସ୍ଥିତି ସୃଷ୍ଟି କରିହେବ। ତଫାତ୍ ଏତିକି ଯେ ଜଡ଼ଜଗତରେ ବାହ୍ୟଶକ୍ତି ଦ୍ୱାରା ଏହା କରିହେବ, କିନ୍ତୁ ସାମାଜିକ କ୍ଷେତ୍ରରେ ଏପରି ପରିବର୍ତ୍ତନ ଆଣିବାକୁ ହେଲେ ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ଓ ସଜ୍ଞାନ ଚେଷ୍ଟା ଫଳରେ ହିଁ ସମ୍ଭବ ହେବ।

ଏହି ନିରବଚ୍ଛିନ୍ନ ଉଦ୍ୟମଜନିତ ବାସ୍ତବ ପରିବର୍ତ୍ତନ କ୍ରମେ କ୍ରମେ ମନୁଷ୍ୟର ମାନସିକ କ୍ରିୟା ପ୍ରକ୍ରିୟାକୁ ମଧ୍ୟ ବଦଳାଇଦେବ ; କାରଣ ଜାଗତିକ ଓ ସାମାଜିକ ପରିବର୍ତ୍ତନ ଏବଂ ମାନସିକ ପ୍ରତିକ୍ରିୟା ଭିତରେ ଘନିଷ୍ଠ କାର୍ଯ୍ୟକାରଣ ସମ୍ପର୍କ ଲାଗିରହିଛି।

■□■




# ଇତିହାସରେ ପ୍ରତିଭାଶାଳୀ ବ୍ୟକ୍ତିର ସ୍ଥାନ

## (୧)

ଯେତେପ୍ରକାର ଭୌତିକ, ଜୈବିକ, ମାନସିକ ଓ ସାମାଜିକ ଅବସ୍ଥିତି ଆମେ ଦେଖିବାକୁ ପାଉଁ– ସେ ସବୁର ଏକ ଧାରାବାହିକ ଇତିହାସ ଅଛି। ଜଡ଼ ପଦାର୍ଥର କ୍ରିୟା ପ୍ରକ୍ରିୟା, ପରସ୍ପର ସମ୍ପର୍କ, ତା'ର ଅନ୍ତର୍ନିହିତ ଶକ୍ତି, ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଓ ପ୍ରତିକ୍ରିୟା ବିଷୟରେ ଗଣନା କରି ଠିକ୍ ଠିକ୍ ଭାବରେ ଆଗରୁ କହିହେବ; କିନ୍ତୁ କୌଣସି ଜଡ଼ ପଦାର୍ଥର ରାସାୟନିକ ପ୍ରକ୍ରିୟା ପଛରେ ପ୍ରତ୍ୟେକ ଅଣୁ, ପ୍ରତ୍ୟେକ ପରମାଣୁର କିପରିଭାବରେ, କେଉଁ ଦିଗକୁ ଓ କେତେ ବେଗର ସହିତ ଗତି କରିବେ ତାହା କହିବା ଅସମ୍ଭବ। ତଥାପି ସ୍ଥୂଳ ପଦାର୍ଥଟିର ସାଧାରଣ ପ୍ରକ୍ରିୟା କିପରି ଭାବରେ ସମ୍ପାଦିତ ହେବ ଏବଂ ତା'ର ଶେଷ ଫଳ କଣ ହେବ ତାହା ଗଣନା କରିବା ସହଜ। ଏପରି ଗଣନାରେ ମଧ୍ୟ ଗୋଟିଏ ଗୋଟିଏ କ୍ଷେତ୍ରରେ ଭୁଲ ଭଟକା ରହିଯାଇ ପାରେ। ଗଣନା ଅନୁସାରେ ଶତକଡ଼ା ଶହେ ସତ ନ ହୋଇପାରେ, ତଥାପି ଏ ସମ୍ପର୍କରେ ଯେଉଁ ତଥ୍ୟ ପ୍ରଣୟନ କରାହୁଏ ତାର ସର୍ବପ୍ରସାରୀ ସତ୍ୟତା ଅଛି ବୋଲି ବୈଜ୍ଞାନିକମାନେ ଗ୍ରହଣ କରନ୍ତି। ଅର୍ଥାତ୍ ଭୌତିକ ନିୟମ କୌଣସି ଘଟଣା ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ଘଟିବାର କେତେଦୂର ସମ୍ଭାବନା ଅଛି ତା'ର ଗୋଟିଏ ସଂକ୍ଷିପ୍ତ ବ୍ୟାଖ୍ୟା ମାତ୍ର। ଜଗତର ଜଡ଼ବସ୍ତୁ ସମ୍ବନ୍ଧୀୟ ତଥ୍ୟାତଥ୍ୟ ଓ ନିୟମାବଳୀ ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଅନେକଟା ନିଶ୍ଚିତ ସତ୍ୟ ହିସାବରେ ଗ୍ରହଣ କରାଯାଇପାରେ। ପଦାର୍ଥର ମାଧ୍ୟାକର୍ଷଣ ଶକ୍ତି, ଗ୍ରହ ନକ୍ଷତ୍ର ଓ ଜ୍ୟୋତିଷ ମଣ୍ଡଳର ସାର୍ବଭୌମ ଗତିବିଧି, ନିୟମ, ମୌଳିକ ପଦାର୍ଥର ସାଧାରଣ କ୍ରିୟା ପ୍ରକ୍ରିୟା, ବାୟୁ ଓ ମେଘର ସଞ୍ଚାରଣ ପ୍ରଭୃତି ବିଷୟରେ ଗଣନାସିଦ୍ଧ ନିୟମଗୁଡ଼ିକର ନିଶ୍ଚୟତା ସମ୍ବନ୍ଧରେ କେହି ସହଜରେ ଅବିଶ୍ୱାସ କରିପାରନ୍ତି ନାହିଁ; କିନ୍ତୁ ସାମାଜିକ ରୀତିନୀତି ବା ମାନସିକ କ୍ରିୟା ପ୍ରକ୍ରିୟା ବିଷୟରେ ଏପରି ସାର୍ବଭୌମ ନିଶ୍ଚିତ ନିୟମ ବିଷୟରେ ବହୁ ବିରୁଦ୍ଧାତ୍ମକ ମତ ଦେଖାଯାଏ। କେତେକ ଯଦି କହନ୍ତି ଯେ ଏସବୁର ମଧ୍ୟ ନିୟମ ଅଛି ଏବଂ ତାକୁ ଠିକ୍ ଠିକ୍ ଭାବରେ ଗଣନା କରି କହିହେବ, ଆଉ କେତେକ କହନ୍ତି ଯେ ଏସବୁ କ୍ଷେତ୍ରରେ କୌଣସି ପ୍ରକାର ସର୍ବସାଧାରଣ ନିୟମ ଆଦୌ କରିହେବ ନାହିଁ। ଆଉ କେତେକ ମତ ଦିଅନ୍ତି ଯେ ଜଡ଼ବସ୍ତୁ ବିଷୟରେ ସାର୍ବଭୌମ ନିଶ୍ଚିତ ନିୟମ ପରି ସ୍ଥିର ସିଦ୍ଧାନ୍ତ ଏ କ୍ଷେତ୍ରରେ ସମ୍ଭବ ନ ହେଲେ ସୁଦ୍ଧା ମୋଟାମୋଟି ଭାବରେ ଯୁକ୍ତିସଙ୍ଗତ ଓ କାର୍ଯ୍ୟକାରୀ ନିୟମ ପ୍ରଣୟନ ସମ୍ଭବ ହୋଇପାରିବ।

ଜୀବଜଗତର କ୍ରମବିକାଶ ନେଇ ବିଜ୍ଞାନସମ୍ମତ ଯେଉଁ ବିବର୍ତ୍ତନ ମତବାଦର ସୃଷ୍ଟି ହୋଇଛି, ସେହି ଦୃଷ୍ଟିକୋଣରୁ ମନୁଷ୍ୟ ଇତିହାସ ବିଚାର କରାଗଲେ ଆମେମାନେ ବହୁ ଜଟିଳ ସାମାଜିକ ପରିସ୍ଥିତିରୁ ମଧ୍ୟ କେତେଗୁଡ଼ିଏ ଯୁକ୍ତିଯୁକ୍ତ ସର୍ବସାଧାରଣ ନିୟମ

ଦେଖିବାକୁ ପାଉଁ। ସବୁ ମନୁଷ୍ୟଙ୍କର ଶାରୀରିକ ଗଠନ ଏକାବେଳକେ ସମାନ ନ ଥିଲେ ସୁଦ୍ଧା ଶରୀରତତ୍ତ୍ୱବିତ୍ ମନୁଷ୍ୟ ଶରୀରର ସାଧାରଣ ମାନଚିତ୍ର ତିଆରି କରିଥାଏ ଏବଂ ଏହି ମାନଚିତ୍ର ବା ମଡ଼େଲଟି ଯେ ଶରୀର ବିଜ୍ଞାନ ସମ୍ମତ ଏବଂ ଡାକ୍ତର ଓ ଶରୀତତ୍ତ୍ୱବିତ୍‌ଙ୍କର ବହୁ ଉପକାର ସାଧନ କରେ, ଏଥିରେ ସନ୍ଦେହ ନାହିଁ। କେତେକ ମନୁଷ୍ୟ ଅନ୍ୟ କେତେକଙ୍କଠାରୁ ତଫାତ୍ ବୋଲି ଯଦି ଆମେମାନେ କୌଣସି ନିର୍ଦ୍ଦିଷ୍ଟ ନିୟମରେ ନ ପହଞ୍ଚୁ ତା' ହେଲେ ଶରୀର ବିଜ୍ଞାନ କୌଣସିମତେ ଆଗେଇ ପାରିବ ନାହିଁ। ଏହି ମଡ଼େଲର ସତ୍ୟତା ଶରୀରତତ୍ତ୍ୱବିତ୍‌ମାନଙ୍କର ଅଭିଜ୍ଞତା ଓ ଗବେଷଣାଗାରରେ ପରୀକ୍ଷିତ ନମୁନାଗୁଡ଼ିକର ସଂଖ୍ୟା ଉପରେ ନିର୍ଭର କରେ ; କିନ୍ତୁ ଯେତେ ବ୍ୟକ୍ତିଗତ ପ୍ରଭେଦ ଥିଲେ ସୁଦ୍ଧା ଅସ୍ଥି, ଚର୍ମ, ମାଂସ ପ୍ରଭୃତି ପଦାର୍ଥ ଓ ରକ୍ତ ସଞ୍ଚାଳନ, ଜୀର୍ଣ୍ଣକରଣ ପ୍ରଭୃତି ପ୍ରକ୍ରିୟାର ଗୋଟିଏ ସାଧାରଣ ନିୟମ ନିଶ୍ଚୟ ପ୍ରଣୟନ କରିହୁଏ ଏବଂ ଅନେକ ସ୍ଥଳରେ ଏସବୁ କାର୍ଯ୍ୟକାରୀ ହୋଇପାରିଲେ ଆମେମାନେ ତାକୁ ମୋଟାମୋଟି ଭାବରେ ଗ୍ରହଣ କରିନେଉ। ଭବିଷ୍ୟତରେ ଯେ ଏହାର ପରିବର୍ତ୍ତନ ହେବ ନାହିଁ ତା' ନୁହେଁ ; କିନ୍ତୁ ସେଥି ସକାଶେ ଯଥେଷ୍ଟ ଅବକାଶ ରଖି ଦୈନନ୍ଦିନ କାମ ପାଇଁ ଆମେମାନେ ତାରି ଉପରେ ନିର୍ଭର କରୁଁ। ଏପରିଭାବରେ ବିଜ୍ଞାନର ବିଭିନ୍ନ ତଥ୍ୟାତଥ୍ୟର କ୍ରମବିକାଶ ସମ୍ଭବ ହୋଇଛି ଏବଂ ତା'ରି ଉପରେ ଆମମାନଙ୍କର ଜ୍ଞାନର ପରିସର ନିର୍ଭର କରି ଆସିଛି।

ଏହି ଦୃଷ୍ଟିରୁ ଦେଖିଲେ ମନୁଷ୍ୟ ଇତିହାସରେ ଲକ୍ଷ ଲକ୍ଷ ରାଜା, ଦେଶଜୟୀ ଯୋଦ୍ଧା, ଭାବୁକ, ବୈଜ୍ଞାନିକ, କୋଟି କୋଟି ସାଧାରଣ ଲୋକଙ୍କର ବିଭିନ୍ନ ମତାମତ, ଆଦର୍ଶ ଓ କଳ୍ପନାତୀତ କ୍ରିୟା ପ୍ରକ୍ରିୟା ବହୁ ଜଟିଳ ଓ ସାଧାରଣ ନିୟମ ବହିର୍ଭୂତ ବୋଲି ମନେ ହେଉଥିଲେ ସୁଦ୍ଧା ଚିନ୍ତାର ସହିତ ଆଲୋଚନା କଲେ ଏସବୁ ଭିତରେ କେତୋଟି ସାଧାରଣ ନିୟମ ଦେଖିବାକୁ ମିଳେ। ଏହି ନିୟମଗୁଡ଼ିକ ନାନା ଘଟଣା ଭିତରୁ ନିର୍ଦ୍ଧାରିତ ହୋଇଥାଏ ଏବଂ ଏସବୁ ନିୟମାନୁଯାୟୀ ଯେଉଁ ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିରୀକୃତ ହୁଏ, ତା'ର କାର୍ଯ୍ୟକାରୀ ସତ୍ୟତା ଉପରେ ଏହାର ଭବିଷ୍ୟତ ନିର୍ଭର କରିଥାଏ। ତେଣୁ ମନୁଷ୍ୟର ବୁଦ୍ଧି ଏବଂ ବିଚାର ସଂଭୂତ ଜ୍ଞାନ ଅତୀତ ଓ ଭବିଷ୍ୟତର ଘଟଣାବଳୀ, ଅଭିଜ୍ଞତା ଓ ସଙ୍ଗଠିତ ବୈଜ୍ଞାନିକ ପ୍ରଣାଳୀ ଦ୍ୱାରା ଉତ୍ତମରୂପେ ପରୀକ୍ଷିତ ହେଲା ପରେ ହିଁ ଯୁକ୍ତିଯୁକ୍ତ ନିୟମ ହିସାବରେ ଗ୍ରହଣ କରାହେବା ଉଚିତ। ତେଣୁ ଏହା ବହୁ କଷ୍ଟସାଧ ହେଲେ ସୁଦ୍ଧା ସମ୍ଭବ ଏବଂ ଭୌତିକ ତଥ୍ୟ ପରି ସୁନିଶ୍ଚିତ ନ ହେଲେ ସୁଦ୍ଧା ବିଜ୍ଞାନ ପଦବାଚ୍ୟ !

ଏ ପ୍ରକାର ଜ୍ଞାନ ସମାଜର ବହୁ ଉପକାର କରେ। ମନୁଷ୍ୟ ମନ ଅତୀତ ବିଷୟରେ ଅଯଥା ରହସ୍ୟାବୃତ ହୋଇ ରହେନା। ନାନା ଦୈବୀ କ୍ରିୟା ଓ ଆକସ୍ମିକ ଘଟଣା ସାହାଯ୍ୟରେ ମନୁଷ୍ୟ ସାମାଜିକ ଇତିହାସକୁ ବିକଳାଙ୍ଗ ଓ ନିଜର ମନକୁ କୁସଂସ୍କାରପୂର୍ଣ୍ଣ କରେନାହିଁ। ଏହା ଅତୀତର ଅନ୍ଧକାର ଭିତରେ ଆଲୋକ ପଥ ସ୍ୱରୂପ କାର୍ଯ୍ୟ କରେ ଏବଂ ଭବିଷ୍ୟତ ପ୍ରତି ପଥ ନିର୍ଦ୍ଦେଶ କରିବାରେ ସାହାଯ୍ୟ କରେ।

ବ୍ୟକ୍ତିବିଶେଷର ଖାମଖିଆଲି ନୀତି ଓ ରୁଚି ଅନୁସାରେ କିମ୍ବା କୌଣସି ଆକସ୍ମିକ ଘଟଣା ଯୋଗୁଁ କୌଣସି ଜାତିର ଭାଗ୍ୟ ବିପର୍ଯ୍ୟୟ ବା ଅଭ୍ୟୁଥାନ ନ ଘଟି ବିଭିନ୍ନ ସାମାଜିକ ଶକ୍ତି ଓ ମନୁଷ୍ୟର ସଙ୍ଗଠିତ ଚେଷ୍ଟା ଏବଂ ଉପଯୁକ୍ତ ପ୍ରାକୃତିକ, ଅର୍ଥନୈତିକ ପ୍ରଭୃତି ପରିସ୍ଥିତିର କ୍ରିୟା ପ୍ରକ୍ରିୟା ଫଳରେ ହିଁ ସମ୍ଭବ ହୋଇଛି ବୋଲି ଜାଣିପାରିଲେ ମନୁଷ୍ୟର ପ୍ରକୃତ ଜ୍ଞାନ ବଢ଼ିବା ସାଙ୍ଗେ ସାଙ୍ଗେ ସେହି ସବୁ ଶକ୍ତିର ଉପଯୁକ୍ତ ସନ୍ନିବେଶ କରି ଇଚ୍ଛା ଅନୁସାରେ ଇତିହାସ ସୃଷ୍ଟି କରିବାର ଚେତନା ଶକ୍ତି ଓ ଅଭିଳାଷ ବୃଦ୍ଧି ପାଏ। ବିଜ୍ଞାନସମ୍ମତ ନିୟମ ସାହାଯ୍ୟରେ ମନୁଷ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ପାରିପାର୍ଶ୍ୱିକ ଅବସ୍ଥିତି, ଶକ୍ତି ସମୂହର ପାରସ୍ପରିକ ସମ୍ପର୍କ ଓ କ୍ରିୟା ପ୍ରକ୍ରିୟା ବିଷୟରେ ସଜାଗ ହେବା ସାଙ୍ଗେ ସାଙ୍ଗେ ସେ ସବୁକୁ ନିୟନ୍ତ୍ରଣ କରିବାର କ୍ଷମତା ହାସଲ କରିପାରେ। ତେଣୁ ସାମାଜିକ ଇତିହାସର ଅନ୍ତର୍ନିହିତ ତତ୍ତ୍ୱ ଓ ବିଭିନ୍ନ ଶକ୍ତିର ଘାତ—ପ୍ରତିଘାତ ଜନିତ ଐକ୍ୟ ବା ଧ୍ୱଂସାତ୍ମକ ବିପ୍ଳବ ବିଷୟରେ ଜ୍ଞାନ ହାସଲ କରିପାରିଲେ ବର୍ତ୍ତମାନ କ୍ଷେତ୍ରରେ ସେ ସବୁକୁ ନିୟନ୍ତ୍ରଣ କରି ପ୍ରୟୋଜନମତ କାମ କରିହୁଏ ; କିନ୍ତୁ ଏହାର ମୌଳିକ ନିୟମ ନ ବୁଝି ଯଦି ବ୍ୟକ୍ତିଗତ ଖାମଖିଆଲ ଓ ରୁଚି ବିଷୟରେ କେବଳ ଗଦା ଗଦା ଗବେଷଣା କରାହୁଏ, ତାହେଲେ ସେଥିରୁ ମନୁଷ୍ୟର ବିଶେଷ କିଛି ଶିଖିବାର ନ ଥାଏ। କାରଣ ମନୁଷ୍ୟର ଖିଆଲ, ରୁଚି—ଅରୁଚି ପ୍ରଭୃତି ଏତେ ବେଶି ବ୍ୟକ୍ତିଗତ ଓ ଅନିୟମିତ ଯେ ହଜାର ହଜାର ରାଜାଙ୍କର ଖିଆଲ ବିଷୟରେ ବହୁକଥା ପଢ଼ିଲେ ସୁଦ୍ଧା ଏସବୁ ଉପରେ ନିର୍ଭର କରି ବିଶେଷ କିଛି କହିହେବ ନାହିଁ।

ନିୟମ ସାର୍ବଭୌମିକ ଓ ସର୍ବସାଧାରଣ, କିନ୍ତୁ ରୁଚି ବା ଖିଆଲ କେବଳ ବ୍ୟକ୍ତିଗତ। ଦୁର୍ଘଟଣା ପଛରେ ମଧ୍ୟ କୌଣସି ବିଜ୍ଞାନ ବା ନିୟମ ନାହିଁ। ଯେତେ ଚେଷ୍ଟା କଲେ ସୁଦ୍ଧା ଦୁର୍ଘଟଣା ବିଷୟରେ ପୂର୍ବରୁ କିଛି ଜାଣିବାର ଉପାୟ ନାହିଁ। ତେଣୁ ଇତିହାସକୁ ଦୁର୍ଘଟଣା ଓ ପ୍ରତିଭାଶାଳୀ ମହାପୁରୁଷ ବା ଦୁର୍ଦ୍ଦମନୀୟ ପାଷାଣ୍ଡର ବ୍ୟକ୍ତିଗତ ରୁଚି ଓ ଖିଆଲରେ ପରିପୂର୍ଣ୍ଣ ବୋଲି ଭାବିଲେ ମନୁଷ୍ୟ ପକ୍ଷରେ ଏହାର କୌଣସି ମୂଲ୍ୟ ନାହିଁ। ମନୁଷ୍ୟ ପକ୍ଷରେ ମୂଲ୍ୟହୀନ ବୋଲି ଯେ ଏହା ମିଥ୍ୟା ତା' ନୁହେଁ; କିନ୍ତୁ ବିଚାରଶୀଳ ମନୁଷ୍ୟ ସମାଜ ଇତିହାସର ବୈପ୍ଳବିକ ଘଟଣାବଳୀ, ଯୁଗ ପରିବର୍ତ୍ତନକାରୀ ଶକ୍ତି ସମୂହ, ଅନିୟମିତ ଗୋଳମାଳିଆ ପରିସ୍ଥିତି ଜନିତ ଦୁର୍ଘଟଣା ଓ ବ୍ୟକ୍ତିଗତ ଖାମଖିଆଲି ଇଚ୍ଛା ଅନିଚ୍ଛା ଯୋଗୁଁ ପରିଚାଳିତ ବୋଲି କହିଲେ ନିହାତି ମିଥ୍ୟା ହେବ। ହଠାତ୍ ଜଣେ ଲୋକ ଏକା ଏକା ଜନଶୂନ୍ୟ ଜଙ୍ଗଲରେ ଗୋଟିଏ ବିରାଟ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରିବାକୁ ଭାବିଲାକ୍ଷଣି କାରଖାନା ସୃଷ୍ଟି ହୋଇଯିବା ଯେପରି ଅସମ୍ଭବ, ପ୍ରଗତିଶୀଳ ମାନବ ସମାଜର ସଙ୍ଗଠିତ କ୍ରମବିକାଶ ଏପରି ଭାବରେ ଦୁର୍ଘଟଣା ଏବଂ ବ୍ୟକ୍ତିଗତ ଇଚ୍ଛା ଯୋଗୁଁ ସମ୍ଭବ ବୋଲି ଭାବିବା ସେପରି ହାସ୍ୟାସ୍ପଦ। ଇତିହାସ ପ୍ରସିଦ୍ଧ ଘଟଣାବଳୀ ପୂର୍ବରୁ ଘଟିଯାଇଥିବା ନାନା ଅବସ୍ଥା ଓ ପାରିପାର୍ଶ୍ୱିକ ପରିସ୍ଥିତି ସହିତ କାର୍ଯ୍ୟକାରଣ ସୂତ୍ରରେ ଜଡ଼ିତ। ତେଣୁ ଇତିହାସରେ ଆକସ୍ମିକ ଓ ବ୍ୟକ୍ତିଗତ ଇଚ୍ଛାର

ପ୍ରଭାବ ଥିଲେ ସୁଦ୍ଧା କୌଣସି ପ୍ରଧାନ ପରିବର୍ତ୍ତନ ବା ବିପ୍ଳବ କେବଳ ଏହା ସାହାଯ୍ୟରେ ବିଚାର କରିବା ଠିକ୍ ହେବ ନାହିଁ।

ପ୍ରସ୍ତର ଯୁଗର ଲୋକ ପୃଥିବୀର ଯେଉଁ ସ୍ଥାନର ଏବଂ ଯେଉଁ ସମୟରେ ଥାଆନ୍ତୁ ପଛକେ ସେମାନଙ୍କର ଜୀବନ ଯାପନ ପ୍ରଣାଳୀ, ଖାଦ୍ୟଦ୍ରବ୍ୟ ଆହରଣ କରିବା ପଦ୍ଧତି ପ୍ରଭୃତି କେତୋଟି ସାଧାରଣ ବିଷୟରେ ସାମ୍ୟ ଥିବାର ଦେଖାଯାଏ। ସେମାନେ ସମସ୍ତେ ଯନ୍ତ୍ରବତ୍ ଏକପ୍ରକାର ବ୍ୟବହାର ନ କଲେ ସୁଦ୍ଧା ଏବଂ ଠିକ୍ ଗୋଟିଏ ପ୍ରକାର ସାମାଜିକ ପଦ୍ଧତି ଅନୁସରଣ ନ କଲେ ସୁଦ୍ଧା ଏସବୁ ସମ୍ବନ୍ଧରେ କେତୋଟି ସାଧାରଣ ନିୟମ ସହଜରେ ପରିଲକ୍ଷିତ ହୁଏ। ଏହି ସାଧାରଣ ନିୟମଗୁଡ଼ିକୁ ଅନୁଧାବନ କରି ଦେଖିଲେ ଆମେ ସହଜରେ ଆଉ କେତେ ପ୍ରକାର ଆଚାର ବ୍ୟବହାର ଆଶା କରିପାରୁ। ଏପରିଭାବରେ ପ୍ରତ୍ୟେକ ସାମାଜିକ ସ୍ତରରେ ଅନ୍ତର୍ନିହିତ ଶକ୍ତି ଓ ଦୁର୍ବଳତା ଏବଂ ବିଭିନ୍ନ ଶକ୍ତିର ଦିଗ ଓ ପରିଣତି ବିଷୟରେ ଅନୁମାନ କରିହୁଏ। ପ୍ରସ୍ତର ଯୁଗରୁ ନାନା ସୂତ୍ର ଅବଲମ୍ବନ କରି ଆମେ ଯୁକ୍ତିଯୁକ୍ତ ଭାବରେ ଆସି ତାମ୍ର ଓ ଲୌହ ଯୁଗରେ ପହଞ୍ଚିପାରୁ। ଗୋଟିଏ ଯୁଗର ରୀତିନୀତି, ସାମାଜିକ ପଦ୍ଧତି, ଜୀବନଯାପନ ପ୍ରଣାଳୀ ତଥା କଳାବିଜ୍ଞାନ ପ୍ରଭୃତି ସେହି ଯୁଗ ମନୁଷ୍ୟମାନଙ୍କର ଉତ୍ପାଦିକା ଶକ୍ତି, ଉତ୍ପାଦନ ପ୍ରଣାଳୀ ଓ ପ୍ରାକୃତିକ ଜଗତ ଉପରେ ତା'ର ପ୍ରଭାବ ପ୍ରଭୃତି ଭିତରେ ଅବିଚ୍ଛେଦ୍ୟ ସଂପର୍କ ରହିଛି। ଏପରି ଭାବରେ ପ୍ରତ୍ୟେକ ଯୁଗର ସମସ୍ତ ପ୍ରକାର ପାରିପାର୍ଶ୍ୱିକ ପରିସ୍ଥିତିକୁ ବିଶ୍ଳେଷଣ କରି ତାର ସଂସ୍କୃତି କଳା ପ୍ରଭୃତି ବିଷୟରେ ପ୍ରକୃତ ମତାମତ ତିଆରି କରିପାରିବା ଅର୍ଥ ବୈଜ୍ଞାନିକ ପ୍ରଣାଳୀରେ ଐତିହାସିକ ନିୟମ ପ୍ରଣୟନ କରିବା ଏବଂ ଏପରି ମତାମତ ଦେଶ କାଳ, ପରିସ୍ଥିତି ନିର୍ବିଶେଷରେ ବାସ୍ତବ ବୋଲି ପ୍ରମାଣିତ ହୋଇଛି। ଆଧୁନିକ ଅତି ଜଟିଳ ସାମାଜିକ ପରିସ୍ଥିତିକୁ ଖୁବ୍ ସୂକ୍ଷ୍ମଭାବରେ ବିଶ୍ଳେଷଣ କରି ଦେଖିଲେ ମଧ କେତୋଟି ସାଧାରଣ ନିୟମ ଦୃଷ୍ଟିଗୋଚର ହେଉଛି ଏବଂ ଏହି ନିୟମଗୁଡ଼ିକୁ ଅବଲମ୍ବନ କରି ଭବିଷ୍ୟତ ଫଳାଫଳ ମଧ ଗଣନା କରିହେଉଛି ଓ ଅନେକ ଗଣନା ସତ୍ୟ ବୋଲି ପ୍ରମାଣିତ ହୋଇପାରିଛି। ଏପରି ବହୁ ଗଣନାରୁ ଗୋଟିଏ ମାତ୍ର ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ। ପ୍ରାୟ ଶହେ ବର୍ଷ ତଳେ କୁହାହୋଇଥିଲା ଯେ ପୁଞ୍ଜିବାଦର ପରିଣତି ସାମ୍ରାଜ୍ୟବାଦରେ ଏବଂ ସାମ୍ରାଜ୍ୟବାଦ ଓ ଏକଚାଟିଆ ପୁଞ୍ଜିବାଦର ଫଳ ହେବ ପୃଥିବୀ ଯୁଦ୍ଧ ଏବଂ ପ୍ରତ୍ୟେକ ପୃଥିବୀ ଯୁଦ୍ଧ ପରେ ସାମ୍ରାଜ୍ୟବାଦ ଦୁର୍ବଳ ହୋଇଯିବ ଏବଂ ବିଭିନ୍ନ ଦେଶର ଭିନ୍ନ ଭିନ୍ନ ପରିସ୍ଥିତି ଅନୁସାରେ ବହୁରକମର ସାମାଜିକ ପରିବର୍ତ୍ତନ ଦେଖାଯିବ। ଏ ଭବିଷ୍ୟତ ବାଣୀ ଯେ ଅନେକଟା ସତ ହୋଇଛି, ଏଥିରେ ସନ୍ଦେହ ନାହିଁ। ସମାଜ ବିଜ୍ଞାନ ସମ୍ବନ୍ଧୀୟ ଭବିଷ୍ୟତ ବାଣୀରେ ବହୁ ଭୁଲ୍‌ଭଟକା ରହିଯିବା ସ୍ୱାଭାବିକ। ତଥାପି ଏହା ଉପରେ ଯେ ନିର୍ଭର କରାଯାଇପାରେ ଏ ବିଷୟରେ ମଧ ସନ୍ଦେହ କରିବା ଉଚିତ ନୁହେଁ। ତା' ଛଡ଼ା ମନୁଷ୍ୟର ସାମାଜିକ ଅବସ୍ଥା ଓ ଅନ୍ୟାନ୍ୟ ପରିସ୍ଥିତି ସବୁ ଏତେ ଜଟିଳ ଓ ପ୍ରତ୍ୟେକ ପରିବର୍ତ୍ତନ ପଛରେ ଏତେପ୍ରକାର ଶକ୍ତି କାମ କରୁଥାଏ ଯେ ସେସବୁ

ଯଥାଯଥଭାବରେ ବିଶ୍ଳେଷଣ କରିବା ମନୁଷ୍ୟ ପକ୍ଷରେ ଅସମ୍ଭବ। ତେଣୁ ମୋଟାମୋଟି ଭାବରେ କେତେଗୁଡ଼ିଏ ସାମାଜିକ ନିୟମ ବା ଐତିହାସିକ ଧାରା ବିଷୟରେ ଜ୍ଞାନଲାଭ କରିପାରିଲେ ସୁଦ୍ଧା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ପରସ୍ଥିତିରେ କିପରିଭାବରେ ମନୁଷ୍ୟ ବା ସେମାନଙ୍କର ଅନୁଷ୍ଠାନ ସବୁ କାମ କରିବେ ସେ ବିଷୟରେ ଏକାବେଳକେ ସଠିକଭାବେ ଗଣନା କରି କହିବା କଷ୍ଟସାଧ୍ୟ। ଦଶବର୍ଷ ପରେ ଆମ ଦେଶର ମୋଟାମୋଟି ଅବସ୍ଥା କ'ଣ ହୋଇପାରେ ସେ ବିଷୟରେ କିଛି କୁହାଯାଇପାରେ ; କିନ୍ତୁ ଅମୁକ ଧର୍ମଘଟ କିମ୍ବା ଅମୁକ ନିର୍ବାଚନରେ କ'ଣ ଘଟିବ ତାହା କହିବା ସବୁ ସମୟରେ ସମ୍ଭବ ନ ହୋଇପାରେ।

## ( ୨ )

ଯଦି ଇତିହାସ ନିୟମଦ୍ୱାରା ପରିଚାଳିତ—ଐତିହାସିକ ଘଟଣାବଳୀର ଧାରାବାହିକ କାର୍ଯ୍ୟକାରଣ ସଂପର୍କ ରହିଛି—କୌଣସି ସାମାଜିକ ପରିବର୍ତ୍ତନ ବହୁପ୍ରକାର ଅର୍ଥନୈତିକ, ଧର୍ମଗତ, ଜାତିଗତ ପ୍ରଭୃତି ପରିସ୍ଥିତିର ମିଳନୋତ୍ପନ୍ନ ପରିଣତି—ତାହେଲେ ପ୍ରତିଭାଶାଳୀ ଐତିହାସିକ ବ୍ୟକ୍ତିର ପ୍ରଭାବ କେତେ ଦୂର ? ଏହା କ'ଣ ଠିକ୍ ଯେ ଗୋଟିଏ ଦେଶର ଉତ୍‌ଥାନ ପତନ ଯୁଗୋପଯୋଗୀ ବିପ୍ଳବ କୌଣସି ଜଣେ ନେତା ଯୋଗୁହିଁ ସମ୍ଭବ ହୁଏ ଏବଂ ସେ ପ୍ରତିଭାଶାଳୀ ନେତା ନ ଥିଲେ ତାହା କୌଣସିମତେ ସମ୍ଭବ ହୋଇ ନ ଥାନ୍ତା ? ଅନେକେ ବିଶ୍ୱାସ କରନ୍ତି ଯେ ଜଣେ ଜଣେ କ୍ଷଣଜନ୍ମାହିଁ ଦେଶକୁ ଉଠାଇ ଦିଅନ୍ତି କିମ୍ବା ଭୁଲକରି ଅବନତିର ଅତଳ ଗହ୍ୱରକୁ ଠେଲିଦିଅନ୍ତି। କିନ୍ତୁ ସବୁପ୍ରକାର ପରିସ୍ଥିତିକୁ ବିଶ୍ଳେଷଣ କଲେ ତାହା ସତ ନୁହେଁ।

ଇତିହାସରେ ପ୍ରତିଭାଶାଳୀ ଲୋକଙ୍କର ସ୍ଥାନ ଅଛି ସତ, କିନ୍ତୁ ସେମାନଙ୍କର ଖାମଖିଆଲି ମନୋଭାବ ଓ ବ୍ୟକ୍ତିଗତ ରୁଚି ଅରୁଚି ଯୋଗୁଁ ଦେଶର ପରିସ୍ଥିତିରେ ବିପ୍ଳବାତ୍ମକ ପରିବର୍ତ୍ତନ ଆସେ ନାହିଁ। ଦୂରଦର୍ଶୀ ନେତାମାନଙ୍କର ଜନସାଧାରଣଙ୍କ ତୁଳନାରେ ବହୁତ ପ୍ରଶଂସନୀୟ ଗୁଣ ଥାଏ ଏବଂ ଏମାନେ ସମାଜର ପ୍ରଚଳିତ ନିୟମଗୁଡ଼ିକର କାର୍ଯ୍ୟକାରୀ ଶକ୍ତି, ପାରସ୍ପରିକ ସମ୍ପର୍କ, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତରେ ଏହାର ତାତ୍ପର୍ଯ୍ୟ ପ୍ରଭୃତି ବିଷୟରେ ବିଶେଷଭାବେ ସଜ୍ଞାତ ଓ ଜାଗ୍ରତ ଥାଆନ୍ତି ; ଅର୍ଥାତ୍ ଉନ୍ନତ ଚିନ୍ତାଶକ୍ତି ଓ ବାସ୍ତବ ଅଭିଜ୍ଞତା ଦ୍ୱାରା ବର୍ତ୍ତମାନର ସାମାଜିକ ଶକ୍ତିଗୁଡ଼ିକର ମୂଳକାରଣ ଅତୀତରୁ ଖୋଜି ବାହାର କରିପାରନ୍ତି ଏବଂ କି ଉପାୟରେ ଏସବୁ ଶକ୍ତିକୁ ପରିଚାଳିତ କଲେ କି ପ୍ରକାର ଫଳାଫଳ ହେବ— ଏ ବିଷୟରେ ସେମାନଙ୍କର ଦୂରଦର୍ଶିତା ଥାଏ। ଯେ ଯେତେବେଶି ଦୂରଦର୍ଶିତା ଦେଖାଏ ଏବଂ ଯେତେ ଭଲଭାବରେ ବୈଜ୍ଞାନିକ ବିଶ୍ଳେଷଣ କରି ବିଭିନ୍ନ ସାମାଜିକ ଶକ୍ତିର ଗତି, ସ୍ଥିତି, ପ୍ରକୃତି, ଅବସ୍ଥିତି, କାର୍ଯ୍ୟକାରଣ ପ୍ରଭୃତି ବିଷୟରେ ଯୁକ୍ତିଯୁକ୍ତ ସଂପର୍କ ଦେଖିପାରେ ସେ ସେତେ ବେଶି କୃତକାର୍ଯ୍ୟ ହୋଇପାରେ। ଏହାର ବ୍ୟତିକ୍ରମ ଯୋଗୁଁ ଅନେକେ ଖୁବ୍ ବଡ଼ ବଡ଼ ଭୁଲ କରିଥାଆନ୍ତି ଏବଂ ଏହି ଭୁଲ ସବୁ ମାରାତ୍ମକ ହେଲେ ସୁଦ୍ଧା ଏବଂ କୌଣସି ଆନ୍ଦୋଳନ

ସେଥିପାଇଁ ପଛେଇଗଲେ ସୁଦ୍ଧା ଚିରକାଳ ପାଇଁ ଲୋପପାଇ ଯାଏନା। ଏମାନେ ସମାଜର ସାଧାରଣ ଲୋକଙ୍କଠାରୁ ବେଶି କଷ୍ଟସହିଷ୍ଣୁ, ଦୂରଦର୍ଶୀ ଏବଂ ବୁଦ୍ଧିମାନ ସମାଜ ବୈଜ୍ଞାନିକ ; କିନ୍ତୁ ସାମାଜିକ ଶକ୍ତିର ସୃଷ୍ଟିକର୍ତ୍ତା ନୁହଁନ୍ତି। ଅନ୍ୟମାନଙ୍କର ଚେତନାଶକ୍ତି ଜାଗ୍ରତ କରାଇ ବିଭିନ୍ନ ଶକ୍ତି ସମୂହକୁ ନିର୍ଦ୍ଦିଷ୍ଟ ପ୍ରଣାଳୀରେ କୃତକାର୍ଯ୍ୟତାର ସହିତ ପରିଚାଳିତ କରାଇ ପାରିଲେ ଇଚ୍ଛାମତ ଫଳ ପାଇପାରନ୍ତି। ଏପରି ମଧ୍ୟ ଦେଖାଯାଏ ଯେ କେତେକ ଅତି ପ୍ରଭାବଶାଳୀ ନେତା ସେମାନଙ୍କର ତ୍ୟାଗ ଓ ଆଦର୍ଶ ବଳରେ ଲୋକମାନଙ୍କୁ ପ୍ରଭାବିତ କରି ସେମାନଙ୍କର ବହୁ ଉପକାର ସାଧନ କରନ୍ତି ଏବଂ ତା ସଙ୍ଗେ ସଙ୍ଗେ ଆଉ କେତେଗୁଡ଼ିଏ ଭୁଲ ଧାରଣା ବା ସାମାଜିକ ପରିସ୍ଥିତିର ଅବୈଜ୍ଞାନିକ ବିଶ୍ଳେଷଣ ଯୋଗୁଁ ଅନେକ କ୍ଷେତ୍ରରେ ଅକୃତକାର୍ଯ୍ୟ ମଧ୍ୟ ହୁଅନ୍ତି। ସେମାନେ ବଞ୍ଚିଥିଲାଯାଏଁ ତାଙ୍କର କେତେକ ଶିଷ୍ୟ ତାଙ୍କୁ ଆଦର୍ଶ ବୋଲି ଗ୍ରହଣ କରିଥାଆନ୍ତି ସତ, କିନ୍ତୁ ତାଙ୍କର ମୃତ୍ୟୁ ପରେ ସେ ଆଦର୍ଶ ସମସ୍ତେ ଅତିଶୀଘ୍ର ଭୁଲିଯାଆନ୍ତି। ତେଣୁ କୌଣସି ଐତିହାସିକ ମହାପୁରୁଷର ମତାମତର ସତ୍ୟତା ସାମାଜିକ କାର୍ଯ୍ୟକ୍ଷେତ୍ରରୁ ପ୍ରମାଣିତ କରିହେବ। ଯେଉଁ ନୀତି କାର୍ଯ୍ୟକାରୀ ହୋଇପାରିଲା ତାହା ଠିକ୍ ଏବଂ ଯାହା ଖରାପ ପ୍ରତିକ୍ରିୟା ସୃଷ୍ଟି କଲା ବା କୌଣସି କ୍ଷେତ୍ରରେ କାର୍ଯ୍ୟକାରୀ ହୋଇପାରିଲା ନାହିଁ, ତାହା ସେହି ପରିସ୍ଥିତିରେ ଭୁଲ୍ ବୋଲି ଭାବିବାକୁ ହେବ। ପ୍ରକୃତ କାର୍ଯ୍ୟକାରୀ କ୍ଷେତ୍ର ହିଁ ପ୍ରତ୍ୟେକ ଆଦର୍ଶର ଉପଯୁକ୍ତ ବିଚାରସ୍ଥଳ। ତା ନ ହେଲେ ଯୁକ୍ତିବଳରେ ତ ବହୁନୀତି ପ୍ରମାଣିତ କରିହେବ ଏବଂ ଏପରି ନୀତି ଅତି ଉଚ୍ଚଧରଣର ବୋଲି ମଧ୍ୟ ଗୃହୀତ ହୋଇପାରେ। କିନ୍ତୁ ସେ ସବୁର ଫଳ ପ୍ରଦାନକାରୀ ଶକ୍ତି ନ ଥିଲେ ଏବଂ କୌଣସି କ୍ଷେତ୍ରରେ କାର୍ଯ୍ୟକାରୀ ହୋଇ ନ ପାରିଲେ ତା'ର ସାମାଜିକ ମୂଲ୍ୟ କିଛି ନାହିଁ। ବରଂ ଏହା ଅସାଧ ହୋଇଥିବାରୁ ଏବଂ ଉପସ୍ଥିତ ପରିସ୍ଥିତି ସହିତ ଏହାର କୌଣସି ବାସ୍ତବ ସମ୍ପର୍କ ନ ଥିବାରୁ ସାଧାରଣ ଲୋକଙ୍କ ପକ୍ଷରେ ଏହା ବଡ଼ ରହସ୍ୟପୂର୍ଣ୍ଣ ହୋଇଯାଏ ଓ କେତେକ ତଥାକଥିତ ଚତୁର ନେତା ଏହା ସାହାଯ୍ୟରେ ଲୋକମାନଙ୍କୁ ଭୁଲାଇ ନିଜ ସ୍ୱାର୍ଥ ସିଦ୍ଧିରେ ଲାଗିପଡ଼ନ୍ତି।

ମହାତ୍ମାଗାନ୍ଧୀ ଏକାଧାରରେ ଦାର୍ଶନିକ, ନେତା, ରାଜନୀତିକ, ସମାଜ ସଂସ୍କାରକ ଥିଲେ। ତାଙ୍କର ସ୍ୱାର୍ଥତ୍ୟାଗ ଓ ଆଦର୍ଶ ଅତୁଳନୀୟ। ଏତେ ବଡ଼ ମହାପୁରୁଷ ପୃଥିବୀର ରାଜନୀତି କ୍ଷେତ୍ରରେ ବଡ଼ ବିରଳ। ଅନେକ ଧର୍ମବିଶ୍ୱାସୀ ତାଙ୍କୁ ଭଗବାନଙ୍କ ଅବତାର ବୋଲି ମଧ୍ୟ କହିଥା'ନ୍ତି। ତା' ଅର୍ଥ ସେ କୋଟି କୋଟି ଲୋକଙ୍କ ଆଦର୍ଶର ପ୍ରତିମୂର୍ତ୍ତି ରୂପେ ପୂଜା ପାଇଥିଲେ। ଭାରତୀୟଙ୍କୁ ସେ ଯେପରିଭାବରେ ଜାଗ୍ରତ କରାଇ ପାରିଛନ୍ତି, ତାହା କେହି ଭୁଲିପାରିବେ ନାହିଁ; କିନ୍ତୁ ସେ ଜନ୍ମଗ୍ରହଣ କରି ନ ଥିଲେ ବା ରାଜନୀତିରେ ଯୋଗଦେଇ ନ ଥିଲେ ଭାରତ ସ୍ୱାଧୀନତା ପାଇପାରି ନ ଥାନ୍ତା ବୋଲି ଭାବିବା ମଧ୍ୟ ଭୁଲ। ଭାରତର ଆନ୍ଦୋଳନ ଅନ୍ୟପ୍ରକାର ହୋଇଥାଆନ୍ତା ସତ ; କିନ୍ତୁ ସ୍ୱାଧୀନତା ପାଇଁ ଯେ ବିରାଟ ଆନ୍ଦୋଳନ ହୋଇଥାଆନ୍ତା, ଏଥିରେ ସନ୍ଦେହ ନାହିଁ। ତାଙ୍କ

ଅଭାବରେ ଭାରତ କାଳ ପାଇଁ ପରାଧୀନ ହୋଇ ରହି ନ ଥାନ୍ତା। ସେ ଭାରତୀୟମାନଙ୍କର ଅଚେତମନରେ ଥିବା ସ୍ୱାଧୀନତା ଲାଭକରିବାର ବଳବତୀ ଇଚ୍ଛା ଶକ୍ତିକୁ ଜାଗ୍ରତ କରାଇ ପାରିଥିଲେ ଏବଂ ଏହି ଶକ୍ତିକୁ ସେମାନଙ୍କ ସାହାଯ୍ୟରେ ଅଗ୍ରସର କରାଇ ପାରିଥିଲେ। ତାଙ୍କର ଆଦର୍ଶ ଓ ପ୍ରଚାରିତ ନୀତି କେତେକ କ୍ଷେତ୍ରରେ କୃତକାର୍ଯ୍ୟତାର ସହିତ କାର୍ଯ୍ୟକାରୀ ହୋଇଥିଲେ ସୁଦ୍ଧା ଆହୁରି କେତେକ କ୍ଷେତ୍ରରେ ଭୟଙ୍କର ଭାବରେ ପରାସ୍ତ ହୋଇଥିଲା। ଗାନ୍ଧିଜୀଙ୍କର ଅହିଂସାନୀତି, ଅଖଣ୍ଡ ଭାରତ ପରିକଳ୍ପନା ଓ ତାଙ୍କର ଅତିପ୍ରିୟ ଅର୍ଥନୀତି ଏକାବେଳକେ ପରାଜିତ ହୋଇଯାଇଛି। ଗାନ୍ଧୀ ଅର୍ଥନୀତି ସାଧାରଣ ଲୋକ କାହିଁକି, ତାଙ୍କର ଅତି ପ୍ରିୟ ଶିଷ୍ୟମାନେ ମଧ୍ୟ ତାଙ୍କର ମରିବାର କେତେ ବର୍ଷ ଭିତରେ ପୂରାପୂରି ଭୁଲିଗଲେ। ଏତେବଡ଼ ନେତାଙ୍କର ମୂଳ ନୀତିଗୁଡ଼ିକ ଏତେ ଶୀଘ୍ର ଲୋକମାନଙ୍କ ମନରୁ ମୂଳପୋଛ ହୋଇଯିବା କ'ଣ କମ୍ ପରାଭବ ?

ତାଙ୍କପରି ଲୋକପ୍ରିୟ ନେତାଙ୍କର ମୂଳ ଅର୍ଥନୀତି ଏପରିଭାବରେ ଲୋପପାଇ ଯିବାର କାରଣ କ'ଣ ?

ବର୍ତ୍ତମାନ ଯୁଗକୁ ଯନ୍ତ୍ରଯୁଗ ବୋଲି କୁହାଯାଇପାରେ। ଏହି ଯୁଗର କେତେଗୁଡ଼ିଏ ସାମାଜିକ ଧାରା ଓ ବିଶିଷ୍ଟ ଗୁଣ ରହିଛି। ଯୁଗର ପ୍ରଧାନ ପ୍ରବାହର ଗତିରୋଧ କରି ତାକୁ ପୂରାପୂରି ଲୋପ କରି ଦେଇ ତା' ସ୍ଥାନରେ ଅତୀତ ଯୁଗର ସାମାଜିକ ପ୍ରବାହକୁ ପୁନଃପ୍ରବାହିତ କରିବା ଅସମ୍ଭବ। ପ୍ରତ୍ୟେକ ଯୁଗର କେତେଗୁଡ଼ିଏ ବିଶିଷ୍ଟ ସାମାଜିକ ଓ ଅର୍ଥନୈତିକ ଶକ୍ତି ଅଛି ; ଯେତେ ବଡ଼ ପ୍ରଭାବଶାଳୀ ବ୍ୟକ୍ତି ହେଉନା କାହିଁକି ଏହି ପ୍ରଧାନ ଶକ୍ତିଗୁଡ଼ିକୁ ଅଗ୍ରାହ୍ୟ କରି ଅନ୍ୟ ଗୋଟିଏ ଯୁଗର ଆଦର୍ଶକୁ ଆଦର୍ଶରୂପେ ଗ୍ରହଣ କଲେ ସେ ନିଶ୍ଚୟ ପରାସ୍ତ ହୋଇଯିବ। ତେଣୁ ଯେକୌଣସି ଐତିହାସିକ ମହାପୁରୁଷ ହୁଅନ୍ତୁ ନା କାହିଁକି ତାଙ୍କୁ ଯୁଗର ପ୍ରଧାନ ପ୍ରବାହକୁ ମାନିନେବାକୁ ହେବ। ଏହି ପ୍ରବାହର ଗତି ମନ୍ଥର କିମ୍ବା ଦୋଷଯୁକ୍ତ ଥିଲେ ତାକୁ ଦ୍ରୁତତର କରାଇବା କିମ୍ବା ପଙ୍କୋଦ୍ଧାର କରି ତାକୁ ନିର୍ମଳ କରିବା ହେଉଛି ଏମାନଙ୍କର ପ୍ରଧାନ କାମ। ମହାତ୍ମା ଗାନ୍ଧୀଙ୍କର ଏହିଠାରେ ହେଲା ଭୁଲ୍। ତାଙ୍କର ଅର୍ଥନୀତିର ଆଦର୍ଶ ଅତି ଉଚ୍ଚଧରଣର ହୋଇପାରେ କିନ୍ତୁ ବର୍ତ୍ତମାନ ଯୁଗଧର୍ମ ସହିତ ତା'ର କୌଣସି ସାମଞ୍ଜସ୍ୟ ନାହିଁ। ତେଣୁ ସେ ଏଥିରେ ପରାସ୍ତ ହୋଇଗଲେ। ସେହିପରି ଅଖଣ୍ଡ ଭାରତ ପ୍ରତିଷ୍ଠା କଳ୍ପନା ବାସ୍ତବରେ ପରିଣତ ହୋଇପାରିଲା ନାହିଁ। ଭାରତର ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ଯାହା, ଏଥିରେ ଗାନ୍ଧିଜୀଙ୍କ ଉପାୟରେ ଅଖଣ୍ଡ ଭାରତ ସ୍ଥାପନ ସମ୍ଭବ ହୋଇପାରି ନ ଥା'ନ୍ତା। ଏଥିଲାଗି ଜିନ୍ନାଙ୍କୁ ଦୋଷଦେଇ ଲାଭ ନାହିଁ—ଜିନ୍ନାଙ୍କୁ ଗାନ୍ଧୀଙ୍କ ପରି ଉଚ୍ଚଧରଣର ଜନନେତା ଓ ତ୍ୟାଗୀ ବୋଲି କେତେକ ସ୍ୱୀକାର ନ କରୁଥିଲେ ସୁଦ୍ଧା ଭାରତକୁ ଦି ଭାଗ କରିବାରେ ସେ ଜୟୀ ହେଲେ। ଗାନ୍ଧୀଙ୍କର ହେଲା ପରାଜୟ। ତା'ର କାରଣ ହେଉଛି ଜିନ୍ନା ଏପରି ଗୋଟିଏ ସାମାଜିକ ପ୍ରବାହ ଉପରେ ଯାଇ ବସିଲେ ଯେ ଏହାର ଶକ୍ତି ତାଙ୍କୁ କଳ୍ପିତ-ସ୍ଥାନରେ ନେଇ

ପହଞ୍ଚାଇଦେଇ ପାରିଲା । ଅନେକ ପ୍ରମାଣ ମିଳେ ଯେ ଜିନ୍ନା ପ୍ରକୃତରେ ଭାବି ନ ଥିଲେ ପାକିସ୍ତାନ କଳ୍ପନା ବାସ୍ତବରେ ପରିଣତ ହୋଇପାରିବ । ସେ ସମାଜର ଗୋଟିଏ ଶକ୍ତିର ଆଶ୍ରୟ ନେଇଥିଲେ ମାତ୍ର ; କିନ୍ତୁ ପରିସ୍ଥିତି ଏପରି ହୋଇଆସିଲା ଯେ ସେ ଜିତିଲେ । ବଙ୍ଗଳାରେ ଯେଉଁ ଅରାଜକତା ଦେଖାଦେଲା, ସେଥିଲାଗି ମୁସ୍‌ଲିମ୍ ଲିଗ୍ ଯେତିକି ଦାୟୀ, ସେଠାକାର ଅର୍ଥନୈତିକ ପରସ୍ଥିତି ତା'ଠାରୁ ବେଶି ଦାୟୀ । ହିନ୍ଦୁ ମୁସଲମାନମାନଙ୍କ ଭିତରେ ଅର୍ଥନୈତିକ ଓ ସାମାଜିକ ସମ୍ପର୍କ ଯେପରି ଖରାପ ଥିଲା, ସେପରି କ୍ଷେତ୍ରରେ ଯେକୌଣସି ଚତୁର ରାଜନୈତିକ ନେତା ତା'ର ସୁବିଧା ନେଇ ପାରିଥାଆନ୍ତେ । ତେଣୁ ସେଠାରେ ବିପ୍ଳବ ସୃଷ୍ଟି କରିବା ସହଜ ଓ ସେଥିପାଇଁ ଯଥେଷ୍ଟ ସୁବିଧା ଥିଲା । ଜିନ୍ନା ତା'ର ସୁବିଧା ନେଇଥିଲେ । ତାର ସୁବିଧା ନେଲାଭଳି ଅନ୍ୟ ରାଜନୈତିକ ଦଳ ଆସିବା ପୂର୍ବରୁ ଜିନ୍ନା ଆସି ପହଞ୍ଚିଗଲେ । ତେଣୁ ଜିନ୍ନାଙ୍କ କୃତିତ୍ୱ ଓ ଗାନ୍ଧୀଙ୍କର ଅପାରଗତା ଅପେକ୍ଷା ପରିସ୍ଥିତିର ଶକ୍ତି ଅଧିକ ହେଲା । ଯେ ନେତା ଏହାର ସୁବିଧା ନେଇପାରିଲା, ସେ ହେଲା ଜୟୀ ।

ତା'ପରେ ଜିନ୍ନା ହେଲେ ପାକିସ୍ତାନର ଜନ୍ମଦାତା ଓ ଅଦ୍ୱିତୀୟ ନେତା । ତାଙ୍କ ସମାନସ୍କନ୍ଧ ହେବା ଦୂରେଥାଉ ତାଙ୍କର ବୁଦ୍ଧି, ବିଚକ୍ଷଣତା ଓ ରାଜନୈତିକ ଅଭିଜ୍ଞତା ତୁଳନାରେ ଦ୍ୱିତୀୟ ତୃତୀୟ ସ୍ଥାନ ଅଧିକାର କରିବା ପାଇଁ ମଧ ପାକିସ୍ତାନରେ କେହି ନ ଥିଲେ । ସମସ୍ତେ ଭାବୁଥିଲେ ଯେ ଜିନ୍ନାଙ୍କ ମୃତ୍ୟୁ ପରେ ପାକିସ୍ତାନ ଆଉ ଠିଆ ହୋଇପାରିବ ନାହିଁ ; କିନ୍ତୁ କ'ଣ ହେଲା ? ସେ ଅଳ୍ପ ସମୟ ଭିତରେ ମରିଗଲେ, ତଥାପି ପାକିସ୍ତାନରେ ତ କୌଣସି ବିଭ୍ରାଟ ଘଟିଲା ନାହିଁ । ତା ଅର୍ଥ ବ୍ୟକ୍ତିବିଶେଷ ଅପେକ୍ଷା ସାମାଜିକ ଶକ୍ତି ଓ ଅନୁଷ୍ଠାନ ସମୂହର ବଳ ବେଶି, ଯାହା ବଳରେ ସେ ଜିତିଲେ । ସେହି ସାମାଜିକ ଶକ୍ତି ଓ ଅନୁଷ୍ଠାନ ବଳରେ ପାକିସ୍ତାନ ଚାଲିପାରିଲା ।

ଗାନ୍ଧୀ ନୈତିକ ଆଦର୍ଶକୁ ରାଜନୈତିକ ଓ ଅର୍ଥନୈତିକ ଆଦର୍ଶଠାରୁ ବହୁତ ଉଚ୍ଚସ୍ଥାନ ଦେଇଥିଲେ । ତାଙ୍କର ସମସ୍ତ ପ୍ରଚାର, ସମସ୍ତ ଆନ୍ଦୋଳନ ପଛରେ ଏହି ନୈତିକ ଆଦର୍ଶ ରହିଥିଲା ; କିନ୍ତୁ ଫଳ କ'ଣ ହେଲା ? ସମାଜର ବିଭିନ୍ନ ପରିସ୍ଥିତି ଓ ଶ୍ରେଣୀଗତ ଶକ୍ତିର ପରସ୍ପର ସମ୍ପର୍କରେ ମୌଳିକ ପରିବର୍ତ୍ତନ ନ ହେବାରୁ ତାଙ୍କର ନୀତିଗତ ପ୍ରଚାର ପ୍ରଚାରରେ ହିଁ ରହିଗଲା । ତାଙ୍କର ଜୀବିତାବସ୍ଥାରେ ସୁଦ୍ଧା ସାରାଦେଶରେ ଲାଞ୍ଚ, କଳାବଜାର ପ୍ରଭୃତି ଦୁର୍ନୀତି ମାଡ଼ିଗଲା ଏବଂ ବର୍ତ୍ତମାନ ସାରା ସାମାଜିକ ଜୀବନକୁ ଏହା କଳୁଷିତ କରି ଦେବାରେ ବସିଛି । ଏପରି କି ତାଙ୍କରି ଅଧିକାଂଶ ଶିଷ୍ୟ ମଧ ଏ ପ୍ରକାର ଦୁର୍ନୀତି ଭିତରେ ବୁଡ଼ି ରହିଛନ୍ତି । ଏହା ଯେକୌଣସି କାରଣରୁ ହେଉନା କାହିଁକି ତାଙ୍କର ନୈତିକ ଆଦର୍ଶର ଯେ ପରାଭବ ହେଲା– ଏଥିରେ ସନ୍ଦେହ ନାହିଁ । ସେ ଅତି ଉଚ୍ଚ ନୀତିଗତ ଆଦର୍ଶ ପ୍ରଚାର କଲେ ସତ, କିନ୍ତୁ ଉପଯୁକ୍ତ ପ୍ରଣାଳୀରେ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଅର୍ଥାତ୍ ବର୍ତ୍ତମାନର ସାମାଜିକ ଜୀବନ, ସାଧାରଣ ପରିସ୍ଥିତି ଓ ଅର୍ଥନୈତିକ ସମ୍ପର୍କ ଯେପରି, ସେଥିରେ ତାଙ୍କର

ରାମରାଜ୍ୟ କଳ୍ପନାକୁ କାର୍ଯ୍ୟକାରୀ କରିବାକୁ ହେଲେ ଅନ୍ୟ ପନ୍ଥାର ଦରକାର ଥିଲା । ସେ କି ପ୍ରକାର ପନ୍ଥା, ତା'ର ଆଲୋଚନାର ସ୍ଥାନ ଏ ନୁହେଁ । ବିଭିନ୍ନ ମତବାଦୀ ରାଜନୀତିକମାନଙ୍କର ଏହା ବିଚାର କରିବାର କଥା ; କିନ୍ତୁ ବିଶ୍ଳେଷଣ କରି ଏତିକି ମାତ୍ର କୁହାଯାଇ ପାରେ ଯେ ବର୍ତ୍ତମାନ ପରିସ୍ଥିତିରେ ଗାନ୍ଧୀପନ୍ଥା କାର୍ଯ୍ୟକାରୀ ହୋଇପାରି ନାହିଁ ବା ହେବାର ମଧ୍ୟ କୌଣସି ସମ୍ଭାବନା ନାହିଁ ।

## (୩)

ପ୍ରଥମ ମହାଯୁଦ୍ଧ ପରେ ଜର୍ମାନୀର ଅବସ୍ଥା ବଡ଼ ଖରାପ ହୋଇ ଯାଇଥିଲା । ୧୯୩୦ ବେଳକୁ ବେକାର ସମସ୍ୟା ଭୀଷଣ ଆକାର ଧାରଣ କରିଥିଲା । ଯୁଦ୍ଧରେ ହାରି ସାରା ଜର୍ମାନ୍ ଜାତି ହୀନପ୍ରଭ ଓ ଦୁର୍ବଳ ହୋଇ ଆସୁଥିଲା । ଆତ୍ମଧିକ୍କାର ସହିତ ପ୍ରତିଶୋଧ ନେବାର ଇଚ୍ଛା ମଧ୍ୟ ବଳବତୀ ଥିଲା । ଠିକ୍ ଏହି ପରିସ୍ଥିତିର ସୁଯୋଗ ନେଇ ହିଟଲର୍ ତାଙ୍କର ଉତ୍କଟ ଜର୍ମାନ ଜାତୀୟଭାବ ଲୋକମାନଙ୍କ ମନରେ ଆଣିଦେଲେ । ବେକାରଙ୍କୁ କାମ ଯୋଗାଇ ଦିଆଗଲା । ଯେଉଁ ଶତ୍ରୁମାନଙ୍କ ପାଇଁ ଜର୍ମାନୀର ପରାଭବ ହୋଇଥିଲା, ସେମାନଙ୍କ ପ୍ରତି ଯେଉଁ ଉତ୍କଟ ଘୃଣା ଓ ପ୍ରତିଶୋଧମୂଳକ ମନୋଭାବ ପ୍ରତ୍ୟେକ ଜର୍ମାନ୍ ଲୋକର ମନରେ ଥିଲା, ତାକୁ ନାନା ଉପାୟରେ ଜାଗ୍ରତ କରାହେଲା । ଏହି ସମସ୍ତ ସାମାଜିକ ଶକ୍ତିକୁ ଏକମୁଖୀ କରିବାରେ ହିଁ ହିଟଲରଙ୍କର ବାହାଦୂରୀ । ୟୁରୋପରେ ଯାହା ଅବସ୍ଥା ଥିଲା ତା'ର ସୁବିଧା ସେ ନେଲେ । ତାଙ୍କର ଗଣନା ଅନୁସାରେ ଅନେକ ଘଟଣା ଘଟିଗଲା । ଦୁର୍ବଳ ସାମ୍ରାଜ୍ୟବାଦୀ ଇଂଲଣ୍ଡ ଓ ଅନ୍ୟାନ୍ୟ ପୁଞ୍ଜିପତି ଦେଶମାନଙ୍କୁ ପୁଞ୍ଜିପତିର ଚରମ ସୀମାରେ ପହଞ୍ଚିଥିବା ନାତ୍ସୀ ଜର୍ମାନୀ, ଫାସିଷ୍ଟ ଇଟାଲି ଓ ଜାପାନ ପକ୍ଷରେ ପରାସ୍ତ କରିବା ସହଜ ବୋଲି ମଧ୍ୟ ସେ କଳ୍ପନା କରିଥିଲେ । ସାମ୍ୟବାଦୀ ରୁଷିଆର ଜାତୀୟ ପ୍ରେରଣା ଓ ନୂତନ ପ୍ରକାର ସାମାଜିକ ଶକ୍ତି ବିଷୟରେ ସେ ସଚେତ ହୋଇପାରି ନ ଥିଲେ । ଏଥିପ୍ରତି ତାଙ୍କର ଚରମ ଘୃଣା ଯୋଗୁଁ ଏହାର ବଳିଷ୍ଠ ସାମାଜିକ ଦିଗକୁ ସେ ଦେଖିପାରୁନଥିଲେ । ତେଣୁ ଘଟଣା କ୍ଷେତ୍ରରେ ଏହି ନୂତନ ଶକ୍ତି ତାଙ୍କର ସମସ୍ତ ଗଣନାକୁ ବ୍ୟର୍ଥ କରିଦେଲା । ତେଣୁ ଜର୍ମାନୀର ପରାଜୟ ଆକସ୍ମିକ ଦୁର୍ଘଟଣା ଯୋଗୁଁ ନୁହେଁ । ରୁଷିଆର ନୂତନ ସାମାଜିକ ଜୀବନ ଏପରି ଭାବରେ ଜାଗ୍ରତ ଓ ସଙ୍ଗଠିତ ହୋଇଥିଲା ଏବଂ ପୃଥିବୀର ବିଭିନ୍ନ ଶକ୍ତି ସମୂହର ସଙ୍ଗଠନ ଏପରି ଭାବରେ ହୋଇପାରିଲା ଯେ ହିଟ୍‌ଲରଙ୍କ ଫାସିଷ୍ଟ ରାଜନୀତି ସେଥିରେ ପରାସ୍ତ ହୋଇପାରିଥିଲା । ହିଟଲରଙ୍କର ସାମରିକ ଶକ୍ତି ଛଡ଼ା ତାଙ୍କର ରାଜନୀତି, ଅର୍ଥନୀତି, ଜାତିନୀତି ପ୍ରଭୃତିର କୁପ୍ରଭାବ ଅପର ପକ୍ଷକୁ ତାଙ୍କ ବିରୁଦ୍ଧରେ ବହୁତ ସାହାଯ୍ୟ କରିଥିଲା ; କିନ୍ତୁ ଲେନିନ୍ ଷ୍ଟାଲିନଙ୍କର ନୀତି ହିଟଲରୀ ନୀତିଠାରୁ ସମ୍ପୂର୍ଣ୍ଣ ଅଲଗା ଥିବାରୁ ଏବଂ ସେ ନୀତି ରୁଷିଆର ତତ୍‌କାଳୀନ ସାମାଜିକ ସଙ୍ଗଠନ ଓ ପୃଥିବୀ ପରିସ୍ଥିତି ଅନୁସାରେ ବିଜ୍ଞତା ସହିତ ପରିଚାଳିତ ହେଉଥିବାରୁ କୃତକାର୍ଯ୍ୟ ହୋଇପାରିଥିଲା । ଅଥଚ ଟ୍ରଟ୍‌ସ୍କିଙ୍କର ପୃଥିବୀ ବିପ୍ଳବ କଳ୍ପନା ସେହି ପରିସ୍ଥିତିରେ କୃତକାର୍ଯ୍ୟ ହୋଇପାରି ନ ଥିଲା ।

ତେଣୁ ବ୍ୟକ୍ତିବିଶେଷର ଦୂରଦର୍ଶିତା, ବୈଜ୍ଞାନିକ ପ୍ରଣାଳୀରେ ବିଭିନ୍ନ ସାମାଜିକ ଶକ୍ତି ସମୂହର ବିଶ୍ଳେଷଣ ଓ ଦେଶ–କାଳ–ପାତ୍ର ଓ ପରିସ୍ଥିତି ଅନୁସାରେ ସେ ସବୁର ପରିଚାଳନା ଉପରେ ହିଁ ଫଳାଫଳ ନିର୍ଭର କରିଥାଏ। ବିଦ୍ୟା, ବୁଦ୍ଧି, ସ୍ୱାର୍ଥତ୍ୟାଗ, ଉଚ୍ଚ ଆଦର୍ଶ, ଜନପ୍ରିୟତା ପ୍ରଭୃତି ବ୍ୟକ୍ତିଗତ ଗୁଣ ଉପରେ କେବଳ ନୁହେଁ। ଅବଶ୍ୟ ଏସବୁ ଗୁଣ ନ ଥିଲେ କୌଣସି ନେତା ଉପଯୁକ୍ତ ଭାବରେ ବିପ୍ଳବକୁ କାର୍ଯ୍ୟକାରୀ କରିପାରିବ ନାହିଁ; କିନ୍ତୁ ଏସବୁ ଗୁଣ ଥାଇ ସୁଦ୍ଧା ଯଦି କେହି ବାହ୍ୟ ଶକ୍ତି ଓ ପରିସ୍ଥିତିର ବିଶ୍ଳେଷଣରେ ଆସ୍ଥା ନ ରଖେ କିମ୍ବା ଭୁଲ କରେ– ତା ହେଲେ ସେ ନିଶ୍ଚୟ ପରାସ୍ତ ହେବ। ଏହି ଦୃଷ୍ଟିରୁ ଯେ କୌଣସି ଐତିହାସିକ ବ୍ୟକ୍ତିର ତତ୍କାଳୀନ ସମାଜ ଉପରେ ପ୍ରଭାବ ଏବଂ ନାନାକ୍ଷେତ୍ରରେ ସେମାନଙ୍କର ଜୟ ପରାଜୟ ସେ ସମୟର ପାରିପାର୍ଶ୍ୱିକ ଅବସ୍ଥା, ସାମାଜିକ ଶକ୍ତି ସଙ୍ଗଠନ ଉପରେ ହିଁ ନିର୍ଭର କରିଥାଏ। ଖାଲି ସେତିକି ନୁହେଁ, ଏସବୁ ପରିସ୍ଥିତି ମଧ୍ୟ ମୂଳରୁ ଏମାନଙ୍କୁ ସୃଷ୍ଟି କରିଥାଏ; କିନ୍ତୁ ଏମାନଙ୍କର ବାହାଦୂରୀ ଯେ ଏମାନେ ପାରିପାର୍ଶ୍ୱିକ ଅବସ୍ଥାଦ୍ୱାରା ସବୁବେଳେ ଯନ୍ତ୍ରବତ୍ ପରିଚାଳିତ ନ ହୋଇ ସ୍ୱୋପାର୍ଜିତ ଶକ୍ତି ସାହାଯ୍ୟରେ ବିଭିନ୍ନ ସାମାଜିକ ଧାରାକୁ ଉପସ୍ଥିତ ପରିସ୍ଥିତି ଓ ନିର୍ଦ୍ଦିଷ୍ଟ ଭବିଷ୍ୟତ ଯୋଜନା ଅନୁସାରେ ପରିଚାଳିତ କରନ୍ତି ଏବଂ ଏହି ପରିଚାଳନାରେ ହିଁ ସେମାନଙ୍କର କୃତିତ୍ୱ ଓ ଜୟ ପରାଜୟ ନିର୍ଭର କରେ।

ଇତିହାସକୁ ଏପରି ଭାବରେ ଅଧ୍ୟୟନ କଲେ ପ୍ରତ୍ୟେକ ବିପ୍ଳବ, ଯୁଗୋପଯୋଗୀ ପରିବର୍ତ୍ତନ ଓ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ଐତିହାସିକ ଘଟଣାବଳୀର ତାତ୍ପର୍ଯ୍ୟ ଭଲଭାବରେ ବୁଝିହେବ। ତା' ନହେଲେ ରାଜା ଓ ଐତିହାସିକ ବ୍ୟକ୍ତିମାନଙ୍କର ଜୀବନୀ ପଢ଼ି ସେମାନଙ୍କର ରୁଚି ଅରୁଚି ଖିଆଲ ବିଷୟରେ ମୁଖସ୍ଥ କରିବାକୁ ପଡ଼ିବ। ତାଦ୍ୱାରା ବିଚାରଶକ୍ତିଯୁକ୍ତ ମନୁଷ୍ୟ ମନ ଏପରି ଅଯୌକ୍ତିକ ଭାବରେ ଅସଂଖ୍ୟ ଘଟଣାବଳୀକୁ ପଢ଼ି ଆୟତ୍ତ କରିବାରେ ବୀତସ୍ପୃହ ହୋଇପଡ଼େ ଓ ବିଭିନ୍ନ ଐତିହାସିକ ଘଟଣାବଳୀ ଭିତରେ କୌଣସି ଯୁକ୍ତିଯୁକ୍ତ କାର୍ଯ୍ୟ କାରଣ ସଂପର୍କ ବିଷୟରେ ଜ୍ଞାନ ନ ହେବାରୁ ଅନେକ ସମୟ ଧରି ମନେରଖିବା ମଧ୍ୟ ସମ୍ଭବ ହୁଏ ନାହିଁ। ଥରେ ସ୍କୁଲ ଭୂଗୋଳ ପଢ଼ି ବର୍ଷ ବର୍ଷ ଧରି ମନେ ରଖାଯାଇ ପାରେ; କିନ୍ତୁ ଅନେକ ଥର ସ୍କୁଲରେ ଇତିହାସ ପଢ଼ି ମୁଖସ୍ଥ କରିଥିଲେ ସୁଦ୍ଧା ଅଳ୍ପ ସମୟ ଭିତରେ ଅଧିକାଂଶ ଐତିହାସିକ ଘଟଣା ମନରୁ ଲିଭିଯାଏ। ଉପରୋକ୍ତ କାରଣ ଯୋଗୁଁ ଏହା ଘଟିଥାଏ। ଇତିହାସ ହେଉଛି ଯୁଗଯୁଗ ଧରି ମନୁଷ୍ୟ କାର୍ଯ୍ୟକଳାପର କାହାଣୀ। ତା'ହେଲେ ତା'ର ଧାରାବାହିକ କ୍ରମ ବିକାଶରେ ନିଶ୍ଚୟ ଯୁକ୍ତିସଙ୍ଗତ ବିଚାର ଅଛି; କିନ୍ତୁ ଇତିହାସକୁ ଏପରି ଭାବରେ ନ ଦେଖି ଆମେ ଯଦି ସେ ଭିତରୁ କେତେ ଜଣ ପ୍ରଭାବଶାଳୀ ବ୍ୟକ୍ତିଙ୍କର କାର୍ଯ୍ୟାବଳୀ ପଢୁ, ତା ହେଲେ ଏହା ଅସଂଲଗ୍ନ ଆକସ୍ମିକ ଘଟଣା ଓ ଖିଆଲର ଅଯୌକ୍ତିକ ଟିପ୍ପଣୀ ବ୍ୟତୀତ ଆଉ କିଛି ନୁହେଁ। ଏପରି ଇତିହାସ ପଢ଼ିବା ଯାହା ଅସଂଲଗ୍ନ ଅର୍ଥହୀନ ଅସଂଖ୍ୟ ଶବ୍ଦାବଳୀକୁ ପଢ଼ି ମନେରଖିବା ତାହା। ମନୁଷ୍ୟ ସମାଜର ଧାରାବାହିକ କାହାଣୀ ହିସାବରେ ଇତିହାସକୁ ଉପନ୍ୟାସ ବା କାବ୍ୟ ସହିତ ତୁଳନା କରାଯାଇପାରେ। ■□■

# ଭାରତୀୟ ଜାତୀୟ ସଂହତି

ଅନେକଙ୍କ ମତରେ ଇଂରେଜମାନେ ଆସିବା ପୂର୍ବରୁ ଭାରତରେ ଜାତୀୟ ଏକତା ବା ରାଜନୈତିକ ସଂହତି ନ ଥିଲା। ଭାରତବର୍ଷ ଭିନ୍ନ ଭିନ୍ନ ସ୍ୱାଧୀନ ରାଜ୍ୟରେ ବିଭକ୍ତ ହୋଇ ରହିଥିଲା। ଯେଉଁ ଭାରତୀୟ ସମ୍ରାଟମାନେ ସମଗ୍ର ଦେଶକୁ ଗୋଟିଏ ଶାସନାଧୀନରେ ରଖିବାକୁ ଚେଷ୍ଟା କରିଥିଲେ, ସେମାନଙ୍କର ଉଦ୍ୟମ ବହୁ ସମୟ ଧରି ସ୍ଥାୟୀ ହୋଇପାରୁ ନ ଥିଲା। ସ୍ଥାନୀୟ ଜାତୀୟତା ଏତେ ବେଶି ଉଗ୍ରଭାବରେ ଦେଖାଯାଉଥିଲା ଯେ ଥରକୁ ଥର ଭାରତୀୟ ରାଜନୈତିକ ସଂହତି ବାଧାପ୍ରାପ୍ତ ହୋଇ ପଡୁଥିଲା। କିନ୍ତୁ ବ୍ରିଟିଶ୍ ଶାସନକାଳରୁ ଆଜିପର୍ଯ୍ୟନ୍ତ ଭାରତୀୟ ଐକ୍ୟ ଅଖଣ୍ଡ ଭାବରେ ରହିପାରିଛି। ତେଣୁ ଏଥିରେ ବ୍ରିଟିଶ ଶାସକମାନଙ୍କର ନିଶ୍ଚୟ ବାହାଦୁରୀ ରହିଛି ; କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଭାରତରେ ସାଂସ୍କୃତିକ ସଂହତି ବହୁ ପୁରାକାଳରୁ ରହିଆସିଛି। ସମଗ୍ର ଦେଶରେ ବହୁ ପୁରାତନ ଯୁଗରୁ ଆଜିପର୍ଯ୍ୟନ୍ତ ସେହି ଏକାରକମର ପୁରାଣ, ଧର୍ମଶାସ୍ତ୍ର, ରାମାୟଣ, ମହାଭାରତ ଏପରିକି ସେହି ଏକାଧରଣର ବହୁ କିମ୍ବଦନ୍ତୀ ଓ ସାଧାରଣ ପ୍ରବଚନମାନ ମଧ୍ୟ ପ୍ରଚଳିତ ହୋଇ ଆସୁଅଛି; କିନ୍ତୁ କେବଳ ସାଂସ୍କୃତିକ ସଂହତି ରାଜନୈତିକ ଏକତା ଆଣିବାରେ ସବୁବେଳେ ସମର୍ଥ ନୁହେଁ। ଏହାର ଅଭାବରେ ରାଜନୈତିକ ଏକତା ବେଶିଦିନ ତିଷ୍ଠି ନ ପାରେ ଏବଂ ଯେଉଁ ଦେଶରେ ଏହା ରହିଛି, ସେଠାରେ ରାଜନୈତିକ ଏକତା ଆଣିବାରେ ସୁବିଧା ହୋଇପାରେ ; କିନ୍ତୁ ସାଂସ୍କୃତିକ ଐକ୍ୟ ରାଜନୈତିକ ଐକ୍ୟ ସହିତ ଓତପ୍ରୋତଭାବରେ ଜଡ଼ିତ ନୁହେଁ।

ବ୍ରିଟିଶ୍‌ମାନେ ରାଜନୈତିକ ସଂହତି ଭାରତବର୍ଷରେ ଆଣିପାରିଲେ, ତା'ର କାରଣ ସେମାନଙ୍କ ରାଜତ୍ୱ ସମୟରେ ବୈଜ୍ଞାନିକ ଓ ଶିଳ୍ପ ଯୁଗ ଆରମ୍ଭ ହୋଇଥିଲା ଏବଂ ରେଳଗାଡ଼ି, ଟେଲିଫୋନ ଓ ଉନ୍ନତଧରଣର ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ସେମାନଙ୍କ ପକ୍ଷରେ ଏହା ସମ୍ଭବ ହୋଇପାରିଲା। ସେମାନଙ୍କ ପୂର୍ବରୁ ଦିଲ୍ଲୀ ଦରବାରରୁ ସୈନ୍ୟ ସାମନ୍ତ ଓଡ଼ିଶାରେ ଆସି ପହଞ୍ଚିଲା ବେଳକୁ ସ୍ଥାନୀୟ ସୈନ୍ୟ ସାମନ୍ତଙ୍କ ସାହାଯ୍ୟରେ କୌଣସି ଗୋଟିଏ ଅଞ୍ଚଳ ସ୍ୱାଧୀନ ହୋଇଯାଇଥାଏ; କିନ୍ତୁ ବ୍ରିଟିଶ୍ ଶାସନକାଳରେ ଦୂରତ୍ୱ ଓ ସମୟ ବହୁପରିମାଣରେ ନିୟନ୍ତ୍ରିତ ହୋଇ ପାରିଲା ; ତେଣୁ ଏହି ଯୁଗର ବିଶିଷ୍ଟ ବୈଜ୍ଞାନିକ ଅବଦାନ ସେମାନଙ୍କୁ ଏ ଦିଗରେ ସାହାଯ୍ୟ କରିଥିଲା। ଅନେକେ ମଧ୍ୟ ମତ ଦିଅନ୍ତି ଯେ ବ୍ରିଟିଶ୍ ଯେ କେବଳ ଭାରତୀୟ ଜାତୀୟ ସଂହତିର ଜନ୍ମଦାତା ଥିଲେ ତାହା ନୁହେଁ; ବ୍ରିଟିଶ ଅମଳରେ ଏହା ଯେପରିଭାବରେ ଅକ୍ଷୁଣ୍ଣ ଥିଲା ସ୍ୱାଧୀନତା ପରେ ଏହା ଆଉ ସେପରିଭାବରେ ରହିପାରୁ ନାହିଁ। ସ୍ୱାଧୀନ ଭାରତରେ ବହୁ ପ୍ରକାର ବିଭେଦ ସୃଷ୍ଟି ହେଉଛି ଏବଂ

ଏହା ଏତେ ଭୟଙ୍କର ହୋଇପଡୁଛି ଯେ ଭବିଷ୍ୟତରେ ଭାରତ ପୁଣି କ୍ଷୁଦ୍ର ଭୂଖଣ୍ଡରେ ବିଭକ୍ତ ହୋଇଯିବାର ମଧ ବହୁ ସମ୍ଭାବନା ରହିଛି। ସେଥିଯୋଗୁଁ ଭାରତର ଏକତାକୁ ଶକ୍ତିଶାଳୀ କରିବା ଲାଗି ବହୁ ଚେଷ୍ଟା ହେଉଛି।

ଏ ଦିଗରେ ବିଶେଷ ଉଦ୍ୟମ ହେବା ନିଶ୍ଚୟ ବାଞ୍ଛନୀୟ; କିନ୍ତୁ ଭାରତୀୟ ସଂହତି ବିରୁଦ୍ଧରେ କାମ କରୁଥିବା ବିଭେଦକାରୀ ଶତ୍ରୁମାନଙ୍କୁ ଯେତେ ବେଶି ପ୍ରାଧାନ୍ୟ ଦିଆହେଉଛି, ସେମାନେ ପ୍ରକୃତରେ ସେତେ ବେଶି ଶକ୍ତିଶାଳୀ ନୁହଁନ୍ତି। ଆଧୁନିକ ଯୁଗର ସାମାଜିକ, ବୈଜ୍ଞାନିକ ତଥା ରାଜନୈତିକ ଆଦର୍ଶ ଓ ପରିବେଶ ସେମାନଙ୍କ ବିରୁଦ୍ଧରେ କାମ କରୁଛି। ବହୁଦିନଧରି ସ୍ୱାଧୀନଭାବରେ ରହିଥିବା ଦେଶମାନଙ୍କ ଭିତରେ ନାନାରକମର ପରସ୍ପର ସାହାଯ୍ୟକାରୀ ଚୁକ୍ତିଦ୍ୱାରା ବୃହତ୍ତର ଆଞ୍ଚଳିକ ଏକତା ସ୍ଥାପିତ ହେବାକୁ ଯାଉଥିଲାବେଳେ ଭାରତ ଊନବିଂଶ ଶତାବ୍ଦୀୟ ରାଜନୀତି ଦ୍ୱାରା ପରିଚାଳିତ ହେବା ସମ୍ଭବ ନୁହେଁ; କିନ୍ତୁ ଅନୁନ୍ନତ ଦେଶରେ ପୁରାତନ ଯୁଗର ସାମାଜିକ ଓ ରାଜନୈତିକ ନୀତିର ପ୍ରଭାବ ବିଶେଷଭାବରେ ପଡ଼ିବାର ମଧ ସମ୍ଭାବନା ରହିଛି। ସେଥିପ୍ରତି ଆମକୁ ସାବଧାନ ହେବାକୁ ହେବ।

ସାବଧାନ ହେବା ଅର୍ଥ ନୁହେଁ ଭାବପ୍ରବଣ ହୋଇ ବକ୍ତୃତା କରିବା। ଏ ଦିଗରେ ସାମାଜିକ, ଶିକ୍ଷାଗତ ଓ ରାଜନୈତିକ ଯୋଜନା ଅନୁସାରେ କାମ ହେବା ଦରକାର। ଆମ ଦେଶରେ ବର୍ତ୍ତମାନ ସୁଦ୍ଧା ଆଞ୍ଚଳିକ ଦେଶାତ୍ମବୋଧ ବହୁପରିମାଣରେ ରହିଛି ; ତା'ର କାରଣ ଆମର ଶିକ୍ଷା, ଦୀକ୍ଷା, ସାମାଜିକ ଆଦର୍ଶ ଓ ରାଜନୈତିକ ପ୍ରେରଣା ଆଞ୍ଚଳିକ ଦେଶାତ୍ମବୋଧ ଦୃଷ୍ଟିରୁ ତିଆରି ହୋଇ ଆସିଛି ଏବଂ ଆମର ପାଠ୍ୟକ୍ରମରେ ଏହାର ପ୍ରଭାବ ଖୁବ୍ ବେଶି। ଅବଶ୍ୟ ଏହାର ଆବଶ୍ୟକତା ଯେ ନାହିଁ ତା ନୁହେଁ; କିନ୍ତୁ ନୂତନ ବୈଜ୍ଞାନିକ ଅବଦାନ ଫଳରେ ସମଗ୍ର ପୃଥିବୀର ସାଂସ୍କୃତିକ, ସାମାଜିକ ତଥା ଅର୍ଥନୈତିକ ଏକତା ମନୁଷ୍ୟ ସମାଜରେ କିପରିଭାବରେ ଅନିବାର୍ଯ୍ୟ ହୋଇପଡ଼ିଛି, ସେହି ମନୋଭାବ ନୂତନ ପାଠ୍ୟକ୍ରମର ମୌଳିକ ନୀତି ହିସାବରେ ଗୃହୀତ ହେବା ଦରକାର। ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏ ପ୍ରକାର ଦୃଷ୍ଟିକୋଣ ସୃଷ୍ଟି କରିବା ପାଇଁ ଚେଷ୍ଟା ଅବାସ୍ତବ ବୋଲି ମନେ ହେବ ନାହିଁ—ବରଂ ଜନସାଧାରଣଙ୍କର ସାଧାରଣ ବୁଦ୍ଧିରେ ଏହା ଯୁକ୍ତିଯୁକ୍ତ ବୋଲି ମନେ ହେବ। ପ୍ରତ୍ୟେକ ଦେଶ ତଥା ପ୍ରଦେଶର ପାଠ୍ୟକ୍ରମ ଏ ପ୍ରକାର ମୌଳିକ ଆଦର୍ଶ ଉପରେ ପ୍ରତିଷ୍ଠିତ ଓ ପରିକଳ୍ପିତ କରାଯାଇପାରେ। ପ୍ରତ୍ୟେକ ଦେଶର ସାହିତ୍ୟ, ସଂସ୍କୃତି, ଇତିହାସ, ଦର୍ଶନ ପ୍ରଭୃତି ଭିତରେ କିପରି ଅନ୍ତର୍ନିହିତ ସାମଞ୍ଜସ୍ୟ ରହିଛି, ଏସବୁ ସଂସ୍କୃତି ଓ ଚିନ୍ତା ଭିତର ଦେଇ କିପରି ସମଗ୍ର ମାନବ ଜାତିର ଆଦର୍ଶ ଓ ଆକାଂକ୍ଷା ରୂପାୟିତ ହୋଇଛି ଏବଂ ସବୁ ଦେଶର ତଥାକଥିତ ଜାତୀୟ ଉଦ୍ୟମ ଭିତରେ କିପରି ମାନବୀୟ ଏକତାର ଧାରା ପ୍ରଚ୍ଛନ୍ନ ଭାବରେ ରହିଛି ଏ ବିଷୟରେ ବହୁ ତଥ୍ୟ ମିଳିଛି। ଏହିସବୁ ଗବେଷଣାଗତ ବୈଜ୍ଞାନିକ ତଥ୍ୟ ପ୍ରତ୍ୟେକ ଶିକ୍ଷାକ୍ରମ

ଭିତରେ ପରିସ୍ଫୁଟ କରାଇ ପାରିଲେ ଆମର ଆଞ୍ଚଳିକ ସଂକୀର୍ଣ୍ଣତା ବହୁପରିମାଣରେ କମିଯିବ। ବର୍ତ୍ତମାନ ସୁଦ୍ଧା କେତେକ ଭାରତୀୟ ଭାବନ୍ତି ଯେ ଭାରତୀୟ ଦର୍ଶନ ପରି ଦର୍ଶନ ଓ ଭାରତୀୟ ସାହିତ୍ୟ ପରି ସାହିତ୍ୟ ପୃଥିବୀର ଆଉ କେଉଁଠାରେ ସମ୍ଭବ ନୁହେଁ। ଆଉ ଟିକିଏ ସୂକ୍ଷ୍ମଭାବରେ ଦେଖିଲେ ଓଡ଼ିଶାର ଅନେକ ଲୋକେ ଭାବନ୍ତି ଯେ ଓଡ଼ିଆମାନଙ୍କର ସଂସ୍କୃତି ପରି ଭାରତର ଆଉ କେଉଁଠାରେ ଏ ପ୍ରକାର ଉଚ୍ଚ ଧରଣର ସଂସ୍କୃତି ନାହିଁ—ସେମାନଙ୍କ ସହିତ ଘନିଷ୍ଠଭାବରେ ଆଲୋଚନା କଲେ ଜଣାଯିବ ଯେ ସେମାନଙ୍କର ମତରେ କଟକ କିମ୍ବା ପୁରୀ ଏବଂ ଶେଷରେ ନିଜର ପାରିବାରିକ ସାଂସ୍କୃତିକ ସଂସ୍ଥା ଓ ମନୁଷ୍ୟତା ଅନ୍ୟଠାରେ ବହୁତ କମ୍ ପରିମାଣରେ ଦେଖାଯାଏ। ଧର୍ମ ବିଷୟରେ ମଧ୍ୟ ଠିକ୍ ସେହି ପ୍ରକାର ଧର୍ମାନ୍ଧ ସଂକୀର୍ଣ୍ଣତା। ଥରେ ଜଣେ ଉଚ୍ଚଶିକ୍ଷିତ ଧର୍ମପ୍ରାଣ ଖ୍ରୀଷ୍ଟିଆନ ଭଦ୍ର ଲୋକଙ୍କ ସହିତ ବହୁ ସମୟ ଧରି କଥାବାର୍ତ୍ତା ପରେ ବୁଝାଗଲା ଯେ ତାଙ୍କ ମତରେ ଖ୍ରୀଷ୍ଟିଆନ ଧର୍ମ ପରି ଉତ୍କୃଷ୍ଟ ଧର୍ମ ପୃଥିବୀରେ ଆଉ କିଛି ନାହିଁ। ତା'ପରେ ଖ୍ରୀଷ୍ଟିୟାନ ଧର୍ମର ସବୁ ଗୋଷ୍ଠୀ ମଧ୍ୟ ଭଲ ନୁହଁ—ପ୍ରୋଟେଷ୍ଟାଣ୍ଟ, କାଥଲିକ, ତା'ପରେ ପ୍ରତ୍ୟେକଗୋଷ୍ଠୀ ଭିତରେ ଥିବା ଭିନ୍ନ ସମ୍ପ୍ରଦାୟ ଭିତରୁ ତାଙ୍କର ନିଜର ସମ୍ପ୍ରଦାୟଟି ହିଁ ସର୍ବୋତ୍କୃଷ୍ଟ ଏବଂ ସେହି ଗୋଟିଏ ମତବାଦ ଭିତରେ ହିଁ ସତ୍ୟତା ରହିଛି ବୋଲି ତାଙ୍କର ସବିଶେଷ ମତ। ଅବଶ୍ୟ ତା'ପରେ ନିଜ ପରିବାରର ସଂସ୍କୃତି ପର୍ଯ୍ୟନ୍ତ ଟାଣିଆଣି ତାକୁ ଲଜ୍ଜାଜନକ ପରିସ୍ଥିତିରେ ପକାଇବା ଯୁକ୍ତିସଙ୍ଗତ ହୋଇ ନ ଥାନ୍ତା। ଏ ପ୍ରକାର ମନୋଭାବ ଯେଉଁ ଦେଶରେ ଯେତେ ପ୍ରଚଣ୍ଡ, ସେହି ଦେଶରେ ଆଞ୍ଚଳିକ ତଥା ଗୋଷ୍ଠୀଗତ ସଂକୀର୍ଣ୍ଣତା ସେତେ ବେଶି। ନୀତି ଓ ଜ୍ଞାନ ଦୃଷ୍ଟିରୁ ଏହା ଆଧୁନିକ ବୈଜ୍ଞାନିକ ଶିକ୍ଷା ପ୍ରଣାଳୀର ସମ୍ପୂର୍ଣ୍ଣ ବିପରୀତ।

ବିଶ୍ୱଭାବାପନ୍ନ ଶିକ୍ଷାକ୍ରମ ଅର୍ଥ ନୁହେଁ, ପାଠ୍ୟକ୍ରମ ଭିତରେ ନିଜ ଦେଶର ଲୋକ ଓ ଜନନାୟକଙ୍କ ବିଷୟରେ କିଛି ଖବର ନ ଦେବା। ଏ ସବୁର ମୂଲ୍ୟ ନିଶ୍ଚୟ ଅଛି, କିନ୍ତୁ ବିଶ୍ୱଭାବାପନ୍ନ ପାଠ୍ୟକ୍ରମର ଗୋଟିଏ ନିର୍ଦ୍ଦିଷ୍ଟ ଦିଗ ଓ ବିଚାରଧାରା ରହିଛି।

ପ୍ରତ୍ୟେକ ବିଷୟବସ୍ତୁର ଗୋଟିଏ ନିର୍ଦ୍ଦିଷ୍ଟ ବିବର୍ତ୍ତନଧାରା ରହିଛି। ଏହି ଦୃଷ୍ଟିରୁ ବିଚାର କଲେ ସମଗ୍ର ମାନବ ଜାତିର ବୌଦ୍ଧିକ ବିକାଶ ଓ ପ୍ରକାଶର ମଧ୍ୟ ଗୋଟିଏ ବିବର୍ତ୍ତନ ଦିଗ ରହିଛି। ତେଣୁ ପ୍ରତ୍ୟେକ ଦେଶର ସାଂସ୍କୃତିକ, ଦାର୍ଶନିକ, ସାହିତ୍ୟିକ ପ୍ରଭୃତି ଚିନ୍ତାଧାରା ଭିତରେ ବହୁ ସାମଞ୍ଜସ୍ୟ ରହିବା ସ୍ୱାଭାବିକ। ଏହି ସାମଞ୍ଜସ୍ୟାବଳୀ ବିଷୟରେ ଯେଉଁମାନେ ଯେତେ ବେଶି ସଚେତ, ସେମାନଙ୍କର ଚିନ୍ତାଧାରାରେ ସେତେ ବେଶି ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି। କିନ୍ତୁ ଏହା ପ୍ରତ୍ୟେକ ଦେଶର ଜନସାଧାରଣଙ୍କ ପାଖରେ ପହଞ୍ଚି ପାରି ନାହିଁ ଏବଂ ପହଞ୍ଚାଇ ଦେବା ପାଇଁ ଉଦ୍ୟମ ଆଞ୍ଚଳିକ ସଂକୀର୍ଣ୍ଣତା ଯୋଗୁଁ ସମ୍ଭବ ହୋଇ ପାରୁ ନାହିଁ।

ଏହି ବିରାଟ ପଟ୍ଟଭୂମି ଭିତର ଦେଇ ଭାରତୀୟ ସଂହତି ବିଷୟ ପ୍ରତି ଦୃଷ୍ଟି ଦେଲେ ଏହା ଭିନ୍ନ ରୂପ ଧାରଣ କରେ। ସମଗ୍ର ପୃଥିବୀ ନେଇ ଯାହା ସତ୍ୟ, ତାହା ଭାରତର ବିଭିନ୍ନ ଅଞ୍ଚଳ ବିଷୟରେ ମଧ୍ୟ ସତ୍ୟ। ବିଭିନ୍ନ ଭାରତୀୟ ପ୍ରାଦେଶିକ ଚିନ୍ତାଧାରା ଭିତରେ ତ ସାମଞ୍ଜସ୍ୟ ଆହୁରି ବେଶି; ତେଣୁ ସାଂସ୍କୃତିକ ସଂହତି ବିଷୟ ନେଇ ଭାରତରେ ବିଶେଷ ସମସ୍ୟା ଦେଖାଯିବାର ସମ୍ଭାବନା ନାହିଁ। ଭାରତର ଅସଲ ସମସ୍ୟା ହେଲା ଅର୍ଥନୈତିକ ଓ ଭାଷାଗତ।

ଧନୀ ଓ ଗରିବଶ୍ରେଣୀ ଭିତରେ ଯେଉଁ ଶ୍ରେଣୀଗତ ବିବାଦ ଓ ବିଦ୍ୱେଷ ଦେଖାଯାଏ, ଗରିବ ଓ ଧନୀ ପ୍ରଦେଶ ଭିତରେ ସେ ପ୍ରକାର ବିଦ୍ୱେଷ ଦେଖାଯିବାର କଥା। ସମାଜବାଦୀ ଜାତୀୟ ସଂସ୍ଥା ଭିତରେ ଯେପରି ଶ୍ରେଣୀଗତ ପାର୍ଥକ୍ୟ ବିପଜ୍ଜନକ, ଆଞ୍ଚଳିକ ଅର୍ଥନୈତିକ ବୈଷମ୍ୟ ମଧ୍ୟ ସେହିପରି ଭୟଙ୍କର। ଏ କ୍ଷେତ୍ରରେ ମହାଭାରତୀୟ ଜାତୀୟତା ଦୃଷ୍ଟିରୁ ଅର୍ଥନୈତିକ ବୈଷମ୍ୟ ନେଇ ବିବାଦ ସୃଷ୍ଟି ନ କରିବା ପାଇଁ ଯେତେ ଉପଦେଶ ଦେଲେ କିଛି ଲାଭ ହେବ ନାହିଁ। ଗରିବକୁ ପରଜନ୍ମରେ ସ୍ୱର୍ଗପ୍ରାପ୍ତି ଆଶା ଦେଖାଇ ବର୍ତ୍ତମାନ ଦଳେ ଲୋକ ଭୋଗ କରିଯିବା ପଛରେ ଯେଉଁ ଯୁକ୍ତି କାମ କରୁଛି ଏ ପ୍ରକାର ଫମ୍ପା ବକ୍ତୃତାରେ ମଧ୍ୟ ସେହି ପ୍ରକାରର ଭଣ୍ଡାମୀ କାମ କରୁଛି। ଅର୍ଥନୈତିକ ଦୃଷ୍ଟିକୋଣରୁ ତେଲିଆ ମୁଣ୍ଡରେ ଅଳ୍ପ ତେଲ ଦେଲେ ବେଶି ଲାଭ ହୋଇପାରେ; କିନ୍ତୁ ଜାତୀୟ ସଂହତି ଦୃଷ୍ଟିରୁ ନୁଖୁରା ମୁଣ୍ଡରେ ହିଁ ତେଲ ଢାଳିବା ଉଚିତ। ପ୍ରତ୍ୟେକ ଅନୁନ୍ନତ ଅଞ୍ଚଳ ଗୋଟିଏ ସ୍ତରରେ ପହଞ୍ଚିଲା ପରେ ହିଁ ସେମାନେ ପରସ୍ପରକୁ ସହଯୋଗୀ ବନ୍ଧୁ ହିସାବରେ ଗ୍ରହଣ କରିପାରିବେ। ସମାସ୍କନ୍ଧ ଲୋକ ଓ ଦଳମାନଙ୍କ ଭିତରେ ହିଁ ସହାବସ୍ଥାନ ସମ୍ଭବ—ଛେଳି ବାଘ ଭିତରେ ନୁହେଁ।

ଅର୍ଥନୈତିକ ସମସ୍ୟା ଯେପରି ଜଟିଳ, ଭାଷାଗତ ପ୍ରଶ୍ନର ସମାଧାନ ମଧ୍ୟ ସେହିପରି ସହଜସାଧ୍ୟ ନୁହେଁ। ଏ ବିଷୟ ନେଇ ବହୁ ତିକ୍ତତା ଦେଖାଦେଇଛି ଏବଂ ଅର୍ଥନୈତିକ ପ୍ରଶ୍ନ ଅପେକ୍ଷା ଏହା ବେଶି ଆମମାନଙ୍କ ଆଖିରେ ପଡୁଛି। ଭାଷାଗତ ବିବାଦ ହିଁ ଭବିଷ୍ୟତରେ ଭାରତର ସଂହତିକୁ ଭାଙ୍ଗିଦେବ ବୋଲି ବିଶେଷଭାବରେ ଯେଉଁ ଆଶଙ୍କା ହେଉଥିଲା, ତାହା ଅନେକ ପରିମାଣରେ ଦୂର ହୋଇଛି ବୋଲି ମନେହୁଏ। ମାତୃଭାଷା ଓ ଇଂରେଜ ଭାଷା ଦୁଇଟିକୁ ଆମେ ଗ୍ରହଣ କରିନେଇଛେ। ଇଂରେଜୀକୁ ଜାତୀୟ ମାଧ୍ୟମ ରୂପେ ପ୍ରତ୍ୟେକ କ୍ଷେତ୍ରରେ ଗ୍ରହଣ କରିବା ଗୋଟିଏ କଥା ଏବଂ ଏହାକୁ ପୃଥିବୀର ଅନ୍ୟାନ୍ୟ ପ୍ରଧାନ ଭାଷା ରୂପେ—ଏପରି କି ବିଶ୍ୱବିଦ୍ୟାଳୟ ସ୍ତରରେ ଏହାକୁ ବାଧ୍ୟତାମୂଳକ ଭାବରେ ମଧ୍ୟ ଶିକ୍ଷାଦେବା ଆଉ ଗୋଟିଏ କଥା; କିନ୍ତୁ ତାକୁ କୋର୍ଟ, କଚେରୀ, ଅଫିସ୍ ପ୍ରଭୃତିର ମାଧ୍ୟମ ହିସାବରେ ରଖିବା ପରି ଅସାମାଜିକ ପଦ୍ଧତି ଆଉ କ'ଣ ହୋଇପାରେ। ଯେଉଁ ଦେଶରେ ଏତେକମ୍ ଲୋକ ଇଂରେଜୀ ଭାଷା ଜାଣନ୍ତି, ସେ ଦେଶରେ

ପ୍ରତ୍ୟେକ କ୍ଷେତ୍ରରେ ଇଂରେଜୀ ଭାଷାକୁ ବ୍ୟବହାର କରିବା ନିଶ୍ଚୟ ସମାଜବାଦୀ ଶାସନ ସଂସ୍ଥାର ଜନମଙ୍ଗଳକର ଲକ୍ଷଣ ନୁହେଁ ଏବଂ ଏହା ନେଇ ଯୁକ୍ତି ମଧ୍ୟ ହେଉଛି ଯେ ଭାରତୀୟ ସଂହତି ଇଂରେଜୀ ଭାଷା ଅଭାବରେ ଭୁଶୁଡ଼ି ପଡ଼ିବ ତା' ଅର୍ଥ ଭାରତୀୟ ଜାତୀୟ ସଂହତି କେବଳ ଏହି ଇଂରେଜୀ ଜାଣିଥିବା ଲୋକଙ୍କ ଉପରେ ନିର୍ଭର କରୁଛି। ଏହା ଶ୍ରେଣୀଗତ ଆତ୍ମବଡ଼ିମା ଛଡ଼ା ଆଉ କ'ଣ ହୋଇପାରେ? ବରଂ ଇଂରେଜୀ ଜାଣିଥିବା ଅଳ୍ପସଂଖ୍ୟକ ଶିକ୍ଷିତ ଲୋକେ ଇଂରେଜୀ ଭାଷାଯୋଗୁଁ ଏତେବଡ଼ ସମାଜକୁ ନାନାଭାବରେ ଶୋଷଣ କରିବାର ସୁବିଧା ପାଉଛନ୍ତି ଏବଂ ଏହାଦ୍ୱାରା ହିଁ ଜାତୀୟ ଏକତା ବିଶେଷ ଭାବରେ ବ୍ୟାହତ ହେଉଛି। ଏ ପ୍ରକାର ଶ୍ରେଣୀ ବିଭାଗ ଯୋଗୁଁ ଶିକ୍ଷିତମାନଙ୍କର ଶିକ୍ଷା ଜନସାଧାରଣଙ୍କଠାରେ ପହଞ୍ଚି ପାରୁ ନାହିଁ। ଶାସନକ୍ଷେତ୍ରରେ ବିରାଟ ଅରାଜକତା ଦେଖାଦେଉଛି। ଶିକ୍ଷା କ୍ଷେତ୍ରରେ ବିରାଟ ଯୁବଶକ୍ତିର ଅପଚୟ ଘଟୁଛି। ଏ ବିଷୟରେ ସମସ୍ତେ ଏକମତ, କିନ୍ତୁ କେହ କାହାର ସ୍ୱାର୍ଥ ଛାଡ଼ିବାକୁ ରାଜି ନୁହଁନ୍ତି।

ଆଞ୍ଚଳିକ ଭାଷାଗୁଡ଼ିକ ସହିତ ହିନ୍ଦୀ ପ୍ରତିଦ୍ୱନ୍ଦ୍ୱୀ ହୋଇ ଠିଆ ହୋଇଛି ଏବଂ ଆମ ଦେଶରେ ଆଞ୍ଚଳିକ ଦେଶାତ୍ମବୋଧ ଯୋଗୁଁ ଭାଷାଗତ ସମସ୍ୟାର ସମାଧାନ ହୋଇପାରୁନାହିଁ। ପ୍ରକୃତରେ ଦେଖିବାକୁ ଗଲେ ଉତ୍ତର ଭାରତୀୟ ଭାଷାମାନଙ୍କ ଭିତରେ ବହୁ ସାମଞ୍ଜସ୍ୟ ରହିଛି—ତେଣୁ ହିନ୍ଦୀ ସ୍କୁଲ କଲେଜରେ ନ ଶିଖି ଜଣେ ହିନ୍ଦୀ ବୁଝିପାରୁଛି। ଅନ୍ୟାନ୍ୟ ଦକ୍ଷିଣ ଭାରତୀୟ ଭାଷାରେ ମଧ୍ୟ ବହୁ ସଂସ୍କୃତ ଶବ୍ଦ ଥିବାର ଜଣାଯାଏ ଏବଂ କ୍ରମେ କ୍ରମେ ବୈଜ୍ଞାନିକ ଶବ୍ଦାବଳୀ ଯେପରିଭାବରେ ଅନୁବାଦିତ ହେଉଛି ଏବଂ ବହୁ ଇଂରେଜୀ ଓ ଲାଟିନ୍ ଶବ୍ଦ ଆମ ଭାଷାମାନଙ୍କରେ ଯେପରି ପ୍ରବେଶ କରୁଛି, ଅଳ୍ପଦିନ ଭିତରେ ଭାଷାଗତ ବିଭେଦ ଆହୁରି କମିଯିବାର ସମ୍ଭାବନା। ହିନ୍ଦୀ ଓ ଅନ୍ୟାନ୍ୟ ପ୍ରଦେଶିକ ଭାଷା ସବୁକ୍ଷେତ୍ରରେ ବହୁବର୍ଷ ଧରି ବହୁଳ ଭାବରେ ବ୍ୟବହାର ନ ହେବା ଯୋଗୁ ବ୍ୟାକରଣ ଓ ଅନ୍ୟାନ୍ୟ କେତେକ ବିଷୟରେ ମଧ୍ୟ ଏହା ବଡ଼ ସଂକୀର୍ଣ୍ଣ ହୋଇପଡ଼ିଛି। ଅବୈଜ୍ଞାନିକ ବ୍ୟାକରଣ ଓ ବନାନ ପ୍ରଭୃତି ପରିବର୍ତ୍ତିତ ହେବା ଦରକାର। ସବୁ ଭାରତୀୟ ଭାଷା ପାଇଁ ଗୋଟିଏ ପ୍ରକାର ଅକ୍ଷର ପ୍ରବର୍ତ୍ତିତ ହୋଇପାରିଲେ ଗୋଟିଏ ବିରାଟ ସମସ୍ୟାର ସମାଧାନ ହୋଇପାରନ୍ତା। ନାନା ଦୃଷ୍ଟିରୁ ଦେଖିଲେ ରୋମାନ୍ ଲିପି ସର୍ବଭାରତୀୟ ଲିପି ହିସାବରେ ଗୃହୀତ ହେବା ବାଞ୍ଛନୀୟ, ପଣ୍ଡିତ ନେହେରୁ ଓ ଆଉ କେତେକ ପ୍ରଗତିଶୀଳ ଜନନେତାମାନେ ଏହି ଲିପି ଗ୍ରହଣର ପକ୍ଷପାତୀ ଥିଲେ; କିନ୍ତୁ ରକ୍ଷଣଶୀଳ ଲୋକମାନେ ଏ କ୍ଷେତ୍ରରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲେ। ବର୍ତ୍ତମାନ ପୃଥିବୀର ଅର୍ଦ୍ଧେକରୁ ବେଶି ଲୋକେ ଏହି ଲିପି ଗ୍ରହଣ କରୁଥିବାବେଳେ ଆମେମାନେ ଏତେଗୁଡ଼ିଏ ଲିପି ନେଇ ଲୋକମାନଙ୍କର ଭାଷା ଶିଖିବାରେ ପ୍ରତିବନ୍ଧକ ସୃଷ୍ଟି କରିବା ନିତାନ୍ତ ଲଜ୍ଜାର କଥା। ତା'ଛଡ଼ା ରୋମାନ୍ ଲିପିର ଅନ୍ୟାନ୍ୟ ସୁବିଧା ବହୁତ ରହିଛି।

ଭାଷା ନେଇ ଯେତେ ବେଶି ବିବାଦ ଦେଖାଦେଇଛି ସେସବୁ ରକ୍ଷଣଶୀଳ ମନୋବୃତ୍ତିର ଲକ୍ଷଣ। ଯେ ଆଗେଇବାକୁ ଚାହେଁନା, ସେ ପଛରେ ଥିବା ସମସ୍ତ କଥାକୁ ସୁନ୍ଦର ବୋଲି କହେ। ପୃଥିବୀର ଯେତେକ ନୂତନ ତଥ୍ୟ ସବୁ ବେଦରେ ଅଛି ବୋଲି ଭାବେ। ଇଂରେଜୀ ଶିକ୍ଷାଲାଭ କରିଥିବା ମୁଷ୍ଟିମେୟ ଲୋକଙ୍କ ହାତରେ ଦେଶର ସମସ୍ତ ଶାସନ ସଂସ୍ଥା ରହିଥିବାରୁ ସେମାନେ ଆଞ୍ଚଳିକ ଭାଷା ବିରୁଦ୍ଧରେ ମଧ୍ୟ ବିଷ ଉଦ୍‌ଗୀରଣ କରୁଛନ୍ତି। ଆଞ୍ଚଳିକ ଭାଷାରେ ଶାସନ ଚାଲିଲେ, ସେମାନଙ୍କର ପାଣ୍ଡିତ୍ୟ ତଥା ପ୍ରଭୁତ୍ୱ ବହୁ ପରିମାଣରେ କମିଯିବାର ସମ୍ଭାବନା। ଉଚ୍ଚ ଶିକ୍ଷା ପାଇଁ ଇଂରେଜୀ, ରୁଷିଆନ ପ୍ରଭୃତି ଭାଷାକୁ ବାଧ୍ୟତାମୂଳକ ଭାବରେ ରଖି ନିଜ ମାତୃଭାଷାରେ ଶିକ୍ଷା ଦେଲେ ପିଲାଏ ଯେପରିଭାବରେ ବୁଝିପାରିବେ ଏବଂ ସେଥି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଭାଷାରୁ ମଧ୍ୟ ଜ୍ଞାନ ଆହରଣ କରିପାରିବେ, ବର୍ତ୍ତମାନ ସମସ୍ତ ଶିକ୍ଷା ସେହି ଗୋଟିଏ ବିଦେଶୀ ଭାଷା ସାହାଯ୍ୟରେ ହେବା ଦ୍ୱାରା ତାହା ସମ୍ଭବ ହୋଇପାରୁ ନାହିଁ। ବର୍ତ୍ତମାନ ଯଦି ଆମ ଦେଶର ଲୋକେ ଜର୍ମାନୀ, ରୁଷିଆ ପ୍ରଭୃତି ଦେଶରେ ଯାଇ ଉଚ୍ଚଶିକ୍ଷା ଲାଭ କରିପାରୁଛନ୍ତି–ଗୋଟିଏ ପ୍ରଦେଶରୁ ଆଉ ଗୋଟିଏ ପ୍ରଦେଶକୁ ଯାଇ କାହିଁକି ଉଚ୍ଚଶିକ୍ଷା ଲାଭ କରିପାରିବେ ନାହିଁ? ବର୍ତ୍ତମାନ ସମ୍ଭବ ନ ହୋଇପାରେ; କିନ୍ତୁ କେତେବର୍ଷ ପରେ–ଧାରବାହିକ ଭାବରେ ସବୁ ଭାଷାର ଉନ୍ନତି ହେଲେ ଏହା ନିଶ୍ଚୟ ସମ୍ଭବ ହେବ।

ବଡ଼ ସୁଖର କଥା, ମହାଭାରତୀୟ ସ୍ତରରେ ବର୍ତ୍ତମାନ ଅନେକଗୁଡ଼ିଏ ସାଂସ୍କୃତିକ, ବୈଜ୍ଞାନିକ ଓ ଶିକ୍ଷାଗତ ଆଦାନ ପ୍ରଦାନ ହେଉଛି। ନାନା ପ୍ରକାରର ସାଂସ୍କୃତିକ, ଅନୁଷ୍ଠାନ ଫଳରେ ବିଭିନ୍ନ ଅଞ୍ଚଳର ଶିକ୍ଷା, ସଂସ୍କୃତି, ସଙ୍ଗୀତ, କଳା ପ୍ରଭୃତି ବିଷୟରେ ଯୁବକ ଯୁବତୀମାନଙ୍କର ବହୁ ଅଭିଜ୍ଞତା ହୋଇପାରୁଛି। ଆଧୁନିକ ବୈଜ୍ଞାନିକ ଯୁଗର ରେଡ଼ିଓ, ଟେଲିଭିଜନ, ସିନେମା, ଖବରକାଗଜ, ରେଳ, ଉଡ଼ାଜାହାଜ, କଳକାରଖାନା ପ୍ରଭୃତି ସାହାଯ୍ୟରେ ଆମେ ଜାତୀୟ ତଥା ବିଶ୍ୱ ସଂହତି ପ୍ରତିଷ୍ଠିତ କରିପାରିବା, ଏଥିରେ ସନ୍ଦେହ ନାହିଁ। ବର୍ତ୍ତମାନ କ୍ଷେତ୍ରରେ ସଂହତିର ବିରୋଧକାରୀ ଶକ୍ତିମାନେ ମାନବ ଜାତିର ବିରାଟ ଐତିହାସିକ ଅଗ୍ରଗତିକୁ ରୋକିବାକୁ ଚେଷ୍ଟା କରିବାକୁ ଯାଉଥିବା ହେତୁ ସେମାନେ ଯେ ନିଶ୍ଚୟ ପରାସ୍ତ ହେବେ ଏ ବିଷୟରେ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଗତିଶୀଳ ଲୋକମାନଙ୍କଠାରେ ଆସିବା ଦରକାର। ଏ ପ୍ରକାର ମହାଭାରତୀୟ ଆଦର୍ଶ ହିଁ ଭାରତୀୟ ସଂହତିକୁ ସହଜରେ ପ୍ରଭାବିତ କରିପାରିବ। ■□■

# ସାହିତ୍ୟର କ୍ରମବିକାଶ

ସବୁ ସମୟରେ ମନୁଷ୍ୟର ଚିନ୍ତା, ଚେତନା, କଳ୍ପନା ପ୍ରଭୃତି ମାନସିକ କ୍ରିୟାକଳାପର ଗୋଟିଏ ନିର୍ଦ୍ଦିଷ୍ଟ ଦିଗ ରହିଛି। ଏହି ଦିଗ୍‌ଦର୍ଶନ ମନୁଷ୍ୟର ସାମାଜିକ ପରିସ୍ଥିତି ଓ ତା'ର ବ୍ୟାବହାରିକ ସମୂହର ପାରସ୍ପରିକ କ୍ରିୟା ଅନୁକ୍ରିୟା ଉପରେ ନିର୍ଭର କରିଥାଏ। ଫଳରେ ଯେକୌଣସି ଦେଶର ସାହିତ୍ୟ, କଳା, ବିଜ୍ଞାନ ପ୍ରଭୃତି ସାଧାରଣ ସାଂସ୍କୃତିକ ଅନୁଷ୍ଠାନସବୁ ସେ ଦେଶର ଅର୍ଥନୈତିକ ତଥା ସାମାଜିକ ପରିସ୍ଥିତି ଓ ଶ୍ରେଣୀବିଭାଗ ଉପରେ ନିର୍ଭର କରିଥାଏ। ଯେଉଁ ସମାଜ ଯେତେ ବେଶି ଶ୍ରେଣୀସଙ୍ଘର୍ଷ ରହିତ ଓ ଦ୍ୱନ୍ଦ୍ୱହୀନ, ତା'ର ସଭ୍ୟତା ସେତେ ବେଶି ଉନ୍ନତ ଏବଂ ସେତେ ପରିମାଣରେ ସମଷ୍ଟିଗତ ଜୀବନକୁ ଅନୁପ୍ରାଣିତ କରିପାରେ। ଆଦିମ ଯୁଗର ବଣମଣିଷ ଓ ବର୍ତ୍ତମାନ ସୁଦ୍ଧା ଆଫ୍ରିକା, ଅଷ୍ଟ୍ରେଲିଆରେ ଥିବା କେତେକ ଆଦିବାସୀମାନଙ୍କ ମଧ୍ୟରେ ଗୋଟିଏ ସ୍ଥାନର ବାସିନ୍ଦା ସହିତ ଅନ୍ୟ ସ୍ଥାନର ଲୋକମାନଙ୍କ ଭିତରେ କଳିତକରାଳ ହେଉଥିଲେ ସୁଦ୍ଧା ସେମାନଙ୍କ ଭିତରେ ଉଣା ଅଧିକେ ଶ୍ରେଣୀହୀନ ସମାଜ ଥିବାର ଜଣାଯାଏ। ଏ ପ୍ରକାର ସମାଜରେ ଶ୍ରେଣୀ ବିଭାଗର ଦରକାର ନାହିଁ। ଶିକାର କରିବା, ଫଳ ଗୋଟେଇବା ଓ ବାହାର ଆକ୍ରମଣରୁ ନିଜକୁ ରକ୍ଷା କରିବାରେ ସମଷ୍ଟିଗତ ଜୀବନର ପ୍ରୟୋଜନୀୟତା ବେଶି। ତେଣୁ ସମସ୍ତେ ମିଳିମିଶି ଯେପରି କାମ କରୁଥିଲେ, ସେମାନଙ୍କର କବିତା, ପ୍ରସ୍ତର ଉପରେ ଖୋଦିତ ଚିତ୍ର ଓ ପଶୁପକ୍ଷୀ ଅନୁକରଣରେ ନୃତ୍ୟ ଗୀତର ସେପରି ଗୋଟିଏ ସମଷ୍ଟିଗତ ଛାପ ଦେଖାଯାଏ। ନିଜଠାରୁ ପ୍ରକୃତିକୁ ପୃଥକ୍ କରି ଦେଖି ତାକୁ ନିଜର ଆୟତ୍ତାଧୀନ କରିବାର ଶକ୍ତିର ଆବିର୍ଭାବ ହୋଇ ନ ଥିବାରୁ ଖୁବ୍ ସରଳ ଭାବରେ ପ୍ରକୃତି ସହିତ ମିଳିମିଶି ଯେତେବେଳେ ସେମାନେ ଏକାଠି କାମ କରୁଥିଲେ, ସେହି ସମଷ୍ଟିଗତ କ୍ରିୟାର ଛନ୍ଦରୁ ପ୍ରଥମ ସଙ୍ଗୀତର ସୃଷ୍ଟି। ଏ ପ୍ରକାର ସ୍ୱତଃପ୍ରବୃତ୍ତ ସରଳ ସଙ୍ଗୀତର ଉଚ୍ଛ୍ୱାସ ସମଗ୍ର ସମାଜକୁ ଅନୁପ୍ରାଣିତ କରିପାରୁଥିଲା; କାରଣ ପ୍ରତ୍ୟେକ ଅଙ୍ଗଭଙ୍ଗୀ ଓ ପ୍ରତ୍ୟେକ ଶବ୍ଦବିନ୍ୟାସ ଜୀବନର ଦୈନନ୍ଦିନ କାର୍ଯ୍ୟପ୍ରଣାଳୀ ସହିତ ଓତପ୍ରୋତଭାବରେ ଜଡ଼ିତ ହୋଇ ରହିଥିଲା। ସମସ୍ତେ ସମସ୍ତଙ୍କୁ ବୁଝିପାରୁଥିଲେ–ସେମାନଙ୍କ ଭିତରେ କୌଣସି ପ୍ରକାର ଅର୍ଥନୈତିକ ତଥା ସାମାଜିକ ପାର୍ଥକ୍ୟ ନ ଥିବାରୁ ବୈଷୟିକ କିମ୍ବା ମାନସିକ କ୍ଷେତ୍ରରେ କୌଣସି ଗୁରୁତର ଦ୍ୱନ୍ଦ୍ୱ ପ୍ରାୟ ନ ଥିଲା କହିଲେ ଚଳେ।

ଅବଶ୍ୟ ଏ ଧରଣର ସମାଜରେ ବିଜ୍ଞାନ, ସାହିତ୍ୟ ପ୍ରଭୃତି ମାନବିକ କଳା କୌଶଳର ସ୍ୱତନ୍ତ୍ର ବିକାଶ ହୋଇ ନ ଥିବାରୁ ଓ ମନୁଷ୍ୟ ପ୍ରକୃତିକୁ ବିଶେଷଭାବେ ନିଜର ଆୟତ୍ତାଧୀନ କରି ନ ପାରିଥିବାରୁ ସେ ପ୍ରାକୃତିକ ଅନ୍ଧ ନିୟମର ସମ୍ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରି ନେଇଥିଲା। ତା'ର ସ୍ୱାଧୀନତା ସୀମାବଦ୍ଧ ଥିଲା। ନିଜକୁ ବାହ୍ୟ

ଜଗତଠାରୁ ପୃଥକ୍ ଭାବରେ ଦେଖି ତାକୁ ବିଶ୍ଳେଷଣ କରି ନିଜର ସୁବିଧା ଅନୁସାରେ ନିୟୋଗ କରିପାରିବାରେ ହିଁ ଅସଲ ବିଜ୍ଞାନର ଉତ୍ପତ୍ତି। ସେଥି ସଙ୍ଗେ ସଙ୍ଗେ ସଭ୍ୟତାର କ୍ରମବିକାଶ ; ତେଣୁ ସେ ଯୁଗରେ ଉଚ୍ଚଧରଣର ବିଜ୍ଞାନ ନ ଥିଲା କହିଲେ ଚଳେ ଏବଂ ସାହିତ୍ୟ (ସାହିତ୍ୟ କହିଲେ କେବଳ ସଙ୍ଗୀତକୁ ବୁଝାଯିବ ଏ ଯୁଗରେ) ମୂଳତଃ କାମ କରୁଥିବା ଅବସ୍ଥାରେ ମନୁଷ୍ୟର ଅଙ୍ଗଚାଳନାର ସୁଖକର ଛନ୍ଦ ଉପରେ ହିଁ ନିର୍ଭର କରୁଥିଲା। ଶାରୀରିକ କାର୍ଯ୍ୟକଳାପ ସହିତ ଭାବନାର ଅବିଚ୍ଛେଦ୍ୟ ସମ୍ପର୍କ ଏ ପ୍ରକାର ସମାଜରେ କେବଳ ଦେଖିବାକୁ ମିଳେ, ଗଭୀର କଳ୍ପନାର ବିକାଶ ହୋଇ ନ ଥିଲା ବୋଲି ମନେହୁଏ।

କିନ୍ତୁ ମନୁଷ୍ୟ କ୍ରମେ ଗୃହପାଳିତ ଜନ୍ତୁ ସାହାଯ୍ୟରେ ଚାଷ କରିବାକୁ ଶିଖିଲା ଓ ତା'ର ସଭ୍ୟତାର କ୍ରମବିକାଶ ସେହି ନୂତନ ଉତ୍ପାଦନ-ପ୍ରଣାଳୀ ଉପରେ ନିର୍ଭର କଲା। ନିଜ କୌଶଳ ଦ୍ୱାରା ଖାଦ୍ୟଦ୍ରବ୍ୟ ଉତ୍ପାଦନ କରିପାରିବାରୁ ନିଜ ଶକ୍ତି ଉପରେ କ୍ରମେ ଆସ୍ଥା ଆସିଲା ଓ ନିଜକୁ ପ୍ରକୃତିଠାରୁ ସ୍ୱତନ୍ତ୍ରଭାବେ ଦେଖିବାକୁ ଶିଖିଲା। କୃତ୍ରିମ ଉପାୟରେ ଖାଦ୍ୟ ଉତ୍ପାଦନ କରି ଜଡ଼ ପ୍ରକୃତିର ଅନ୍ଧନିୟମରୁ ନିଜକୁ ମୁକ୍ତ କଲା ପରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟର ଆଭାସ ପାଇଲା ଓ ସେହି ସ୍ୱାତନ୍ତ୍ର୍ୟର ଉତ୍ତରୋତ୍ତର ବୃଦ୍ଧି ଲାଗି ବେଶି ଉତ୍ପାଦନ କରିବାରେ ପ୍ରବୃତ୍ତ ହେଲା। ଦଳେ ନିଜ ଶାରୀରିକ କିମ୍ବା ବୁଦ୍ଧିବଳରେ ହେଉ ବା ଅନ୍ୟମାନଙ୍କ ଶ୍ରମଜାତ ଫଳରୁ କିଛି ଆତ୍ମସାତ୍ କରି କୃଷିଜାତ ଫଳ ଅଧିକ ପରିମାଣରେ ସଞ୍ଚୟ କରିବା ସଙ୍ଗେ ସଙ୍ଗେ ଶାସକଶ୍ରେଣୀରେ ପରିଣତ ହେଲେ। ମାନବ ସମାଜରେ ଶ୍ରେଣୀଗତ ପାର୍ଥକ୍ୟ ଦେଖାଗଲା ; ଅର୍ଥନୈତିକ ତାରତମ୍ୟ ରାଜନୈତିକ ଦଳାଦଳି ସୃଷ୍ଟି କଲା। ସଭ୍ୟତା ମଧ୍ୟ ସେହି ପରିମାଣରେ ବିଭିନ୍ନ ରୂପ ଧାରଣ କଲା। ପୁରାଣ ଏ ଯୁଗର ପ୍ରଧାନ ସାହିତ୍ୟ। ମନୁଷ୍ୟ ନିଜ ରୂପରେ ପ୍ରକୃତିକୁ ଗଢ଼ିବାକୁ ଚେଷ୍ଟା କଲା। ମାଟି ଖୋଳି ଭୂମି ଚାଷ କରିବା ଓ ବର୍ଷା ପାଣିକୁ ଖାଲ ଭିତରେ ଆବଦ୍ଧ କରିବାରେ ଯେଉଁ ଆକ୍ରମଣମୂଳକ ପ୍ରବୃତ୍ତି ମନୁଷ୍ୟ ମନରେ ଦେଖାଦେଇଥିଲା, ତାହା କ୍ରମେ ବିଭିନ୍ନ ଦିଗରେ ଆତ୍ମପ୍ରକାଶ କଲା। ପୁରାଣର ଇନ୍ଦ୍ର, ବରୁଣ, କୁବେର ଓ ଅନ୍ୟାନ୍ୟ ଲକ୍ଷ ଲକ୍ଷ ଦେବଦେବୀ ମାନବ-କଳ୍ପନାରେ ପରିବର୍ଦ୍ଧିତ ଓ ଅତିରଞ୍ଜିତ ମନୁଷ୍ୟର ରୂପମାତ୍ର। ଶାସକଶ୍ରେଣୀ ଅନ୍ୟର ଶ୍ରମଫଳାଂଶ ଆତ୍ମସାତ୍ କରି ଅକର୍ମା ହୋଇ ବସିବା ଦ୍ୱାରା ବାହ୍ୟ କାର୍ଯ୍ୟକ୍ଷେତ୍ରରୁ ସମ୍ପୂର୍ଣ୍ଣ ଅଲଗା ହୋଇଗଲା ଓ ବାସ୍ତବତା ସହିତ ସମ୍ପର୍କ ନ ରହିବାରୁ ତା'ର ସାହିତ୍ୟ ମଧ୍ୟ ସେହିପରି ଅବାସ୍ତବ ଓ କାଳ୍ପନିକ ହୋଇପଡ଼ିଲା।

ବସ୍ତୁ ବିନା ଭାବିପାରିବା ମାନସିକ ବିକାଶର ଗୋଟିଏ ପ୍ରଧାନ ଲକ୍ଷଣ ; କିନ୍ତୁ ଏ ପ୍ରକାର ଚିନ୍ତାଧାରାର ଯାଥାର୍ଥ୍ୟ ପୁଣି ବାସ୍ତବ ଜଗତରେ ପ୍ରତିପାଦିତ ନ ହୋଇପାରିଲେ, ତା'ର କୌଣସି ମୂଲ୍ୟ ନାହିଁ। କ୍ରମେ କ୍ରମେ ଏ ପ୍ରକାର ଭାବନା ମାନବ ସମାଜର ହିତ ପରିବର୍ତ୍ତେ ଅହିତ ହିଁ ସାଧନ କରେ ଏବଂ ଏହାକୁ ଭିତ୍ତି କରି ଅନେକ ପ୍ରକାର

କୁସଂସ୍କାର, ଅବାସ୍ତବ ତତ୍ତ୍ୱ ଓ ଭିତ୍ତିହୀନ ବିଶ୍ୱାସ ମନୁଷ୍ୟର ଭବିଷ୍ୟତ ବିକାଶରେ ବହୁତ ବାଧା ଆଣେ। ଯେଉଁମାନେ ବାସ୍ତବ ଜଗତ ସହିତ ଓତପ୍ରୋତ ଭାବରେ ଜଡ଼ିତ ଏବଂ ଯେଉଁମାନେ ହିଁ ବାସ୍ତବ ଦୁନିଆର କଷଟିପଥରରେ କଳ୍ପନାକୁ ପରଖ କରିପାରନ୍ତେ, ସେହିମାନେ ଏଥିରୁ ବଞ୍ଚିତ ହେଲେ ; ଦିନରାତି ଖଟି ଖଟି ଶାସକଶ୍ରେଣୀର ସମ୍ପତ୍ତି ବୃଦ୍ଧି କରିବାରେ ଲାଗି ରହିଲେ, ନୂତନ ଯୁଗର ଶିକ୍ଷା ଓ ସାହିତ୍ୟରେ ସହଯୋଗ କରିବା ପାଇଁ ଏମାନଙ୍କର ସମୟ ଓ ସୁବିଧା ରହିଲା ନାହିଁ। ଆର୍ଥିକ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହି ଅବାସ୍ତବ ଓ ଅଳୀକ କଳ୍ପନା ରାଜ୍ୟରେ ଯେଉଁମାନେ ବୁଡ଼ି ରହିଲେ, ସେହିମାନଙ୍କର କଳ୍ପନାପ୍ରସୂତ ଚିନ୍ତାଧାରା ହିଁ ସାରା ସମାଜରେ ପ୍ରୟୋଗ କରାଗଲା। ସାହିତ୍ୟ ଏମାନଙ୍କର ଆତ୍ମବଡ଼ିମା, ଆତ୍ମପ୍ରସାଦ ହାନିଜନିତ ଯୁଦ୍ଧ, ରଜାଝିଅ ରଜାପୁଅର ପ୍ରେମ ଓ ଏସବୁ କାର୍ଯ୍ୟରେ ଦେବତାମାନଙ୍କର ସାହାଯ୍ୟ ପ୍ରଭୃତି ବର୍ଣ୍ଣନାରେ ପୂର୍ଣ୍ଣ ହେଲା। ନିଜର ସୁବିଧା ଓ ସ୍ୱାର୍ଥ ଅନୁସାରେ ଧର୍ମଶାସ୍ତ୍ର ନିୟମ କାନୁନ ଗଢ଼ାହେଲା। ସାଧାରଣ ଲୋକଙ୍କର ଏ ସବୁକୁ ମାନିନେବା ଛଡ଼ା ଅନ୍ୟ ଉପାୟ ନଥିଲା। ଶ୍ରେଣୀ ବିଭାଗ କ୍ରମେ କ୍ରମେ ଶକ୍ତ ହୋଇ ଉଠିଲା। ଯେ ବ୍ରାହ୍ମଣ ସେ ବ୍ରାହ୍ମଣ ହିଁ ରହିଲା, ଯେ ଚାଣ୍ଡାଳ ସେ କୌଣସି ପ୍ରକାରେ ଉଚ୍ଚ ଜାତି ଅନ୍ତର୍ଗତ ହୋଇପାରିଲା ନାହିଁ। ସେଥିଲାଗି ଦେବତା ଓ ଧର୍ମଶାସ୍ତ୍ରର ଅନୁମୋଦନ ଓ ଆଦେଶ ରହିଲା। ରାଜାମାନେ ଦେବତାଙ୍କ ବଂଶଧର ସ୍ୱରୂପ ନରରୂପରେ ରାଜତ୍ୱ କଲେ। ଲୋକମାନେ ସେମାନଙ୍କୁ ଭୟରେ ପୂଜା କଲେ; ନୋହିଲେ ନରକବାସର ନିଶ୍ଚୟତା ପ୍ରତିପାଦିତ ହେଲା। ରାଜା ଜମିବାଡ଼ି ଦେଇ ପଣ୍ଡିତମାନଙ୍କୁ ନିଜ ସଭାରେ ରଖିଲେ, ସେମାନେ ସାହିତ୍ୟ ଲେଖିଲେ, ପ୍ରତି ପଦ ପାଇଁ ପୁରସ୍କାର ପାଇଲେ। ପୁରସ୍କାର ସେମାନଙ୍କର ଆତ୍ମସନ୍ତୋଷ ଉପରେ ନିର୍ଭର କଲା। ତେଣୁ ରାଜବଂଶର ସ୍ତବଗାନ, ରାଜପୁତ୍ର ରାଜକନ୍ୟାର ପ୍ରେମ, ବିରହ, ସାହିତ୍ୟର ମୂଳବସ୍ତୁ ହେବା ସ୍ୱାଭାବିକ। ମୋଟାମୋଟି ସମସ୍ତ ବିଜ୍ଞାନ, ଦର୍ଶନ, ସାହିତ୍ୟ, ସଙ୍ଗୀତ, କଳା, ଶିଳ୍ପ ଏହି ମୁଷ୍ଟିମେୟ ନରରୂପୀ ଦେବତାଙ୍କ ଦ୍ୱାରା ଚାଳିତ ହେଲା—ସାହିତ୍ୟ ସକ୍ରିୟ ଜୀବନସ୍ରୋତରୁ ବିଚ୍ଛିନ୍ନ ହୋଇପଡ଼ିଲା। ସଭ୍ୟତା ଯୁଗୋପଯୋଗୀ ବୋଲି କୁହାଯାଉଥିଲେ ସୁଦ୍ଧା ସେହି ଯୁଗର ଶାସକଶ୍ରେଣୀ ଦ୍ୱାରା ହିଁ ପରିଚାଳିତ ବୋଲି ଧରିବାକୁ ହେବ। ଅବଶ୍ୟ ଏହାର ଯେ ମୂଲ୍ୟ ନାହିଁ, ତା ନୁହେଁ—ଏହା ପୂର୍ବ ଯୁଗର ସାହିତ୍ୟଠାରୁ ଅନେକ ଉନ୍ନତ।

ଏ ଯୁଗର ପୁରାଣ, କାଳ୍ପନିକ ଧର୍ମଶାସ୍ତ୍ର ପ୍ରଭୃତି ପରବର୍ତ୍ତୀକାଳର ଉନ୍ନତି ଦିଗରେ ବାଧା ସୃଷ୍ଟି କଲା। ଯାହା ଦିନେ ସଭ୍ୟତା ସୃଷ୍ଟି କରିଥିଲା, ତାହା ପ୍ରଗତି ପଥରେ ପ୍ରତିବନ୍ଧକ ହୋଇ ଛିଡ଼ା ହେଲା। ନିଜର ରକ୍ଷଣ ଲାଗି ନୂତନ ଆଲୋକକୁ ଦୂରରେ ରଖିବାକୁ ଚେଷ୍ଟା ହେଲା; ତଥାପି ନୂତନ ଜ୍ଞାନର ଗତିରୋଧ ହୋଇ ପାରିଲା ନାହିଁ।

ଯେଉଁ ଦେଶରେ ବିଜ୍ଞାନର ଉନ୍ନତି ହୋଇ ନାହିଁ, ଯେଉଁ ଦେଶର ଉତ୍ପାଦନ ପ୍ରଣାଳୀ ସେହି ଆଦିମ ଅବସ୍ଥାରେ ରହିଛି ଓ ଯେଉଁ ଦେଶ ବର୍ତ୍ତମାନ ସୁଦ୍ଧା ପୁରାତନ

କାଳପରି ସାମନ୍ତବାଦୀ ସାମାଜିକ ସଂସ୍ଥାଦ୍ୱାରା ପରିଚାଳିତ, ସେଠାରେ ପୌରାଣିକ ତଥା ଆଦିଯୁଗରେ ବହୁ କାଳ୍ପନିକ ଓ ଅବାନ୍ତର କଥାରେ ସାହିତ୍ୟ ବର୍ତ୍ତମାନ ସୁଦ୍ଧା ପ୍ରଭାବିତ ହୋଇ ଆସୁଛି। ବିଜ୍ଞାନର ଉନ୍ନତି ଉତ୍ପାଦନ ପ୍ରଣାଳୀରେ ବିପ୍ଳବାତ୍ମକ ପରିବର୍ତ୍ତନ ଆଣେ ଓ ସେଥି ସଙ୍ଗେ ସଙ୍ଗେ ସାମାଜିକ ଶ୍ରେଣୀବିଭାଗ ଓ ସମ୍ପର୍କ ବଦଳିଯାଏ। ସାହିତ୍ୟ ମଧ୍ୟ ଅନ୍ୟ ରୂପ ଧାରଣ କରେ।

ସାମନ୍ତ-ଯୁଗର କେତେକ ମଧ୍ୟବିତ୍ତ ଶ୍ରେଣୀର ସ୍ୱାଧୀନଚେତା ନରନାରୀଶାସକ ଶ୍ରେଣୀର ଅଜ୍ଞାତସାରରେ, ଅତି ଗୋପନୀୟ ଭାବରେ ବହୁତ ପରିଶ୍ରମ କରି ବିଜ୍ଞାନର ଅଗ୍ରଗତି କରାଇବାରେ ସମର୍ଥ ହୋଇପାରିଲେ। ଉକ୍ତ ଯୁଗର ଯାଦୁମନ୍ତ୍ରର ଅକୃତକାର୍ଯ୍ୟତା ଓ ସେଥିଲାଗି ସନ୍ଦେହ ଜାତ ହେବା ମୂଳରେ ହିଁ ବିଜ୍ଞାନର ମୂଳଭିତ୍ତି। ବିଜ୍ଞାନର ଅଗ୍ରଗତି ଫଳରେ ମନୁଷ୍ୟ ପୌରାଣିକ ଦେବଦେବୀ ଓ ମନ୍ତ୍ରଯନ୍ତ୍ର କୁସଂସ୍କାର ବିରୁଦ୍ଧରେ ଅଭିଯାନ ଆରମ୍ଭ କଲା ଓ ସେଥି ସଙ୍ଗେ ନୂତନ ଯୁଗର ସ୍ୱାଧୀନତା ଲାଗି ବିପ୍ଳବର ସୂତ୍ରପାତ ହେଲା। ବିପ୍ଳବାନୁପ୍ରାଣିତ ଲେଖକମାନେ ସାହିତ୍ୟଜଗତରେ ମଧ୍ୟ ବିଦ୍ରୋହ ଘୋଷଣା କଲେ। ଅତ୍ୟାଚାରୀ ସାମନ୍ତଶ୍ରେଣୀ ଓ ସେମାନଙ୍କର ଅନୁଗତ ସାହିତ୍ୟିକଙ୍କ ବିରୁଦ୍ଧରେ ଆଉ ଗୋଟିଏ ଶକ୍ତିଶାଳୀ ଦଳ ସାହିତ୍ୟର ନୂତନ ତାତ୍ପର୍ଯ୍ୟ ସହ ଦେଖାଦେଲେ।

ମଧ୍ୟବିତ୍ତଶ୍ରେଣୀର ବ୍ୟବସାୟୀ ଓ ବୁଦ୍ଧିଜୀବୀମାନେ ସର୍ବହରାଙ୍କ ସହଯୋଗରେ ନୂତନ ସ୍ୱାଧୀନତା ଓ ନୂତନ ଇଚ୍ଛାବୃତ୍ତିର ଜୟ ଘୋଷଣା କଲେ। ଏହି ସମୟରେ ସାହିତ୍ୟର ରୂପ ସମ୍ପୂର୍ଣ୍ଣ ବଦଳିଗଲା। ଚାରିଆଡ଼େ କେବଳ ସ୍ୱାଧୀନତାର ହୁରି ପଡ଼ିଲା। ସବୁ ବିଷୟରେ ସ୍ୱାଧୀନତା, ବ୍ୟବସାୟ, ବାଣିଜ୍ୟ, ବିଦ୍ୟାର୍ଜନ, ଧର୍ମଚର୍ଚ୍ଚା, ବୈଜ୍ଞାନିକ ଗବେଷଣା, ସାହିତ୍ୟର ଭାବ, ଭାଷା, ଛନ୍ଦ ପ୍ରତ୍ୟେକ କ୍ଷେତ୍ରରେ ଗୋଟିଏ ବିରାଟ ଜାଗରଣ ଦେଖାଗଲା। ଏହା ଫଳରେ ଅନେକ ଦେଶରେ କୃଷିଶିଳ୍ପାଦି ଅର୍ଥନୈତିକ ବିପ୍ଳବ ଦେଖାଗଲା। ଅବଶ୍ୟ ଏଠାରେ ମନେ ରଖିବାକୁ ହେବ ଯେ, ଅର୍ଥନୈତିକ ବିପ୍ଳବ ହିଁ ଅନ୍ୟାନ୍ୟ କ୍ଷେତ୍ରରେ ପରିବର୍ତ୍ତନର ବାଟ ଫିଟାଇ ଦେଲା ଏବଂ ଏ ପ୍ରକାର ବିପ୍ଳବ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା; କାରଣ ନୂତନ ଉତ୍ପାଦନ-ପ୍ରଣାଳୀ ସହିତ ସମାଜର ପୁରାତନ ଅନୁଷ୍ଠାନ ଖାପ ଖାଇଲା ନାହିଁ। ସାମାଜିକ ଓ ଅର୍ଥନୈତିକ ବିପ୍ଳବ ପରେ ସାହିତ୍ୟର ରୂପ ପୁଣି ବଦଳିଗଲା। ଇଚ୍ଛାର ଜୟ ହେଲା ସତ, କିନ୍ତୁ ଦେଶର ସମସ୍ତଙ୍କୁ ସ୍ୱାଧୀନତା ମିଳିଲା ନାହିଁ। ନୂଆ ଢାଞ୍ଚାରେ ସମାଜ ପୁନର୍ଗଠିତ ହେଲା ସତ, କିନ୍ତୁ ଅଧିକାଂଶ ଜନସାଧାରଣଙ୍କର ବିଶେଷ କିଛି ସ୍ୱାତନ୍ତ୍ର୍ୟ ରହିଲାନାହିଁ। ମୁଷ୍ଟିମେୟ କେତେକ ବ୍ୟବସାୟୀ ପୂର୍ବ ବ୍ୟବସାୟ ଲବ୍ଧ ସଞ୍ଚୟ ସାହାଯ୍ୟରେ ବିଜ୍ଞାନ-ଆବିଷ୍କୃତ ନୂତନ ଯନ୍ତ୍ରପାତି ଅଧିକାର କରି ବସିଲେ। ପ୍ରକାଣ୍ଡ ପ୍ରକାଣ୍ଡ କଳକାରଖାନା ଚାରିଆଡ଼େ ବ୍ୟାପିଗଲା। ଗାଁ ଗଣ୍ଡାରୁ ଲୋକେ ଆସି କଳକାରଖାନାରେ କାମ କରିବା ଲାଗି ଜୁଟ ହେଲେ। ବହୁ ଜନବସତିପୂର୍ଣ୍ଣ ବଡ଼ ବଡ଼ ସହର ସବୁ ଦେଖାଦେଲା। ସାଧାରଣ ଲୋକେ

ଜମିଦାର କବଳରୁ ମୁକ୍ତି ଲଭି ସହରର ପୁଞ୍ଜିପତିଙ୍କ ହାତରେ ପଡ଼ିଲେ। ଯେଉଁ ଦାରିଦ୍ର୍ୟ ସେହି ଦାରିଦ୍ର୍ୟ ରହିଲା। ପୁଞ୍ଜିପତିର ବିରାଟ ଅନୁଷ୍ଠାନ ଶାସନ ଭାର ମଧ୍ୟ ଗ୍ରହଣ କଲା। ସାମନ୍ତ-ଯୁଗର ଆଭିଜାତ୍ୟ ଲୋପ ପାଇଲା ସତ, କିନ୍ତୁ ତା ପରିବର୍ତ୍ତେ ମୁଷ୍ଟିମେୟ ପୁଞ୍ଜିପତି ଖୁବ୍ ଶକ୍ତିଶାଳୀ ହୋଇ ଉଠିଲେ। ସବୁ କ୍ଷେତ୍ରରେ ସେମାନଙ୍କର ରାଜତ୍ୱ ଚାଲିଲା। ଛାପାଖାନା, ଖବରକାଗଜ, ଗ୍ରନ୍ଥପ୍ରକାଶ ଅନୁଷ୍ଠାନ ସବୁ ଏମାନଙ୍କ ହାତରେ ରହିଲା। ଯେଉଁ ଆଦର୍ଶବାଦୀ କବି ଓ ଭାବୁକ ରାଜାମାନଙ୍କର ଏକଛତ୍ର ଶାସନ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଥିଲେ, ପ୍ରତ୍ୟେକ କ୍ଷେତ୍ରରେ ସ୍ୱାଧୀନତା ପାଇଁ ବିପ୍ଳବୀ ହୋଇଥିଲେ, ସେମାନେ ନିରାଶ ହେଲେ। ପୁଞ୍ଜିବାଦର ଉତ୍କଟ ବିଷ ଓ ତିକ୍ତ ଶ୍ରେଣୀବିଭାଗ ଯେତେବେଳେ ସାରା ସମାଜରେ ବ୍ୟାପିଗଲା, ସାହିତ୍ୟ-ଜଗତରେ ମଧ୍ୟ ସେ ପ୍ରକାର ବ୍ୟର୍ଥତା ଓ ଅବସାଦ ବହୁ ପରିମାଣରେ ଦେଖାଗଲା।

ସାହିତ୍ୟ ଅନ୍ୟାନ୍ୟ ଆଧୁନିକ କଳକାରଖାନା ଉତ୍ପାଦିତ ବସ୍ତୁ ପରି ବଜାରୋପଯୋଗୀ ବସ୍ତୁ ହିସାବରେ ପରିଗଣିତ ହେଲା। ନିଜ ଇଚ୍ଛାନୁସାରେ ଉଚ୍ଚଧରଣର ସାହିତ୍ୟ ସୃଷ୍ଟି କରିବାକୁ ହେଲେ, ମୂଳଧନର ଦରକାର ପଡ଼ିଲା। ଯଦି କୌଣସି ପ୍ରକାଶକ ନିଜ ଖର୍ଚ୍ଚରେ ଛପାଇବାକୁ ରାଜି ହେଲା, ତାହାହେଲେ ସେ ଚାହିଁଲା ଯେ ଏହା କିପରି ଅସଂଖ୍ୟ ଅଶିକ୍ଷିତ ଓ ସାରାଦିନ ଖଟୁଥିବା କାରଖାନା ମଜୁରିଆଙ୍କ ମନଲାଖି ହେବ—ତା' ହେଲେ ଯାଇ ତା'ର ଲାଭ ହେବ। ବ୍ୟବସାୟ ଦୃଷ୍ଟିରୁ ସାହିତ୍ୟର ରୂପ ବଦଳିଲା। ତେଣୁ ଖୁବ୍ ଶସ୍ତାଧରଣର ଉପନ୍ୟାସ, ଡିଟେକ୍‌ଟିଭ୍ ଗଳ୍ପ, ରୋମାଞ୍ଚକର ଡକାୟତି, ଉଚ୍ଛୃଙ୍ଖଳ ଯୌନଚଞ୍ଚଳ ନାୟକ ନାୟିକାଙ୍କର ଅଶ୍ଳୀଳ ବୃତ୍ତାନ୍ତ ପ୍ରଭୃତି ଅନିଷ୍ଟକର ବହି ସବୁ ବହୁସଂଖ୍ୟାରେ ପ୍ରକାଶିତ ହେବାକୁ ଲାଗିଲା। କେତେକ ବ୍ୟବସାୟୀଙ୍କର ଏହା ଗୋଟିଏ ପ୍ରଧାନ ବ୍ୟବସାୟରେ ପରିଣତ ହେଲା। ପୁଞ୍ଜିପତି ଶ୍ରେଣୀ ଗଠିତ ସରକାର ସପକ୍ଷରେ ମିଥ୍ୟା ପ୍ରଚାରରେ ସାହିତ୍ୟିକକୁ ନିଯୁକ୍ତ କରାଗଲା। ସାମ୍ରାଜ୍ୟବାଦୀ ପୁଞ୍ଜିପତିଙ୍କର ଅଗ୍ରଗାମୀ ଉଗ୍ରପନ୍ଥୀ ରାଜନୀତିକମାନେ ନାଜୀ ଓ ଫାଶିଷ୍ଟ ବେଶରେ ସାହିତ୍ୟକୁ ପୂରାପୂରି ନିଜର ସ୍ୱାର୍ଥ ଲାଗି ବ୍ୟବହାର କଲେ। ଯେଉଁ ସ୍ୱାଧୀନ ଚିନ୍ତା ଅନ୍ୟ ଦେଶରେ ଆର୍ଥିକ କାରଣ ଯୋଗୁଁ ମ୍ରିୟମାଣ ହୋଇ ଆସୁଥିଲା, ଫାଶିଷ୍ଟ ଦେଶରେ ତାହା ସମ୍ପୂର୍ଣ୍ଣଭାବେ ଲିଭିଗଲା। ମନୁଷ୍ୟର ନୀଚ ପ୍ରବୃତ୍ତିକୁ ସାହିତ୍ୟିକ ଦ୍ୱାରା ଅତି ଉଚ୍ଚ ଓ ଗୌରବମୟ ଆସନରେ ବସାଇ–'ରକ୍ତର ପବିତ୍ରତା', 'ଜାତିର ଦେବତ୍ତ' ମହତ୍ତ୍ୱ ପ୍ରଭୃତି ଭିତ୍ତିହୀନ ଓ ରହସ୍ୟମୟ ସ୍ଲୋଗାନରେ ମଣିଷକୁ ଭୁଲାଇବାକୁ ଚେଷ୍ଟା ହେଲା। ଏପରି କି ବିଜ୍ଞାନକୁ ମଧ୍ୟ ଏ ଦିଗରେ ବିନିଯୋଗ ଲାଗି ଚେଷ୍ଟା କରାହେଲା।

ଆଉ କେତେକ ଆର୍ଥିକ ସ୍ୱଚ୍ଛଳତା ଯୋଗୁଁ ବା ସାମାଜିକ ଜୀବନର ତିକ୍ତତା ଯୋଗୁଁ ନିଜକୁ ସାମାଜିକ ଜୀବନଠାରୁ ଅଲଗା ରଖିବାକୁ ଚେଷ୍ଟା କଲେ। ସାହିତ୍ୟକୁ ପଣ୍ୟଦ୍ରବ୍ୟ ହିସାବରେ ନ ଦେଖି ପବିତ୍ର ସାହିତ୍ୟ ଦୃଷ୍ଟିରୁ (Art for art's sake) ଗ୍ରହଣ କଲେ। ଏହାଦ୍ୱାରା କାବ୍ୟ, କବିତା, ଗଦ୍ୟମାନଙ୍କରେ ନୂତନ ଧରଣର

ଶବ୍ଦବିନ୍ୟାସ ଦେଖାଗଲା। ବହୁ ଗଭୀର ଭାବଧାରା ସୃଷ୍ଟି ହେଲା ଏବଂ କ୍ରମେ ଏହା ବାସ୍ତବ ଜୀବନଠାରୁ ବହୁ ଦୂରକୁ ଚାଲିଗଲା, ସମାଜର ଜନସାଧାରଣଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିଲା। ସାହିତ୍ୟିକ କେବଳ କଳ୍ପନା-ବିଳାସୀ ଓ ଭାବପ୍ରବଣ ହୋଇପଡ଼ିଲା। ଦୁର୍ବଳମନା ମନୁଷ୍ୟ ଯେପରି ବାସ୍ତବ ଜୀବନରେ କୌଣସି ଆଘାତ ପାଇଲେ, ବାଲ୍ୟାବସ୍ଥାର ସୁଖକର ଓ ଦ୍ୱନ୍ଦ୍ୱହୀନ ମାନସିକ ଅବସ୍ଥାକୁ ଫେରିଯାଏ; କ୍ଷୀଣତୋୟା ସ୍ରୋତସ୍ୱତୀ ସମ୍ମୁଖରେ କୌଣସି ପ୍ରତିବନ୍ଧକ ଭେଟିଲେ ନିଜ ପ୍ରବାହ ବଳରେ ତାକୁ ଅତିକ୍ରମ ନ କରିପାରି ଯେପରି ଉତ୍ପତ୍ତି ସ୍ଥାନ ପ୍ରତି ପଛଘୁଞ୍ଚା ଦିଏ, ସେହିପରି ଏମାନେ ଆଧୁନିକ ଯୁଗର ବିକଟ ଶ୍ରେଣୀସଂଘର୍ଷ, ମୁଷ୍ଟିମେୟ ଲୋକଙ୍କର ଅଗାଧ ସମ୍ପତ୍ତି ଓ ସ୍ୱାର୍ଥପରତା ପାଖେପାଖେ ବିରାଟ ଜନସମାଜର ଦାରିଦ୍ର୍ୟ ଯନ୍ତ୍ରଣା ଦେଖି ପରାସ୍ତ ମନୋଭାବର ବଶବର୍ତ୍ତୀ ହୋଇ ପୌରାଣିକ ଯୁଗର କଳ୍ପନାପ୍ରଧାନ ମାନସିକ ଅବସ୍ଥାକୁ ଫେରିଗଲେ। ନିଜ ତଥା ସମଗ୍ର ମାନବଜାତି ପ୍ରତି ବିଶ୍ୱାସ ହରାଇ ହୁଏତ ଏମାନେ ନିଷ୍କ୍ରିୟ ଆଦର୍ଶବାଦୀ ହୋଇପଡ଼ିଲେ କିମ୍ବା ହତୋତ୍ସାହୀ ବିଶ୍ୱନିନ୍ଦୁକ ବା ଜଗତ କେବଳ ଦୁଃଖମୟ ଏବଂ ଏହାର ଭବିଷ୍ୟତ ଅତି ଅନ୍ଧକାରମୟ– ଏହି ଦର୍ଶନ ପ୍ରଚାର କଲେ। ଦରିଦ୍ର ଜନସାଧାରଣଙ୍କର ଏକମାତ୍ର ଭରସା ଆଧୁନିକ ବିଜ୍ଞାନରେ ଏମାନଙ୍କର ବିଶେଷ ଆସ୍ଥା ନଥିବାରୁ ଓ ସମଗ୍ର ପୃଥିବୀର ପ୍ରପୀଡ଼ିତ ବିରାଟ ଜନସମାଜରେ ପ୍ରବଳ ଜାଗରଣର ଧାବମାନ ପ୍ରଖର ସ୍ରୋତର ବାହାରେ ରହିଥିବାରୁ ଏମାନେ ଦୁର୍ବଳମନା ନରନିନ୍ଦୁକ ଓ ବିଷାଦବାଦୀ ହେବା ସ୍ୱାଭାବିକ।

କିନ୍ତୁ ଆଉ କେତେକ ପୁଞ୍ଜିପତି ବ୍ୟବସାୟୀର ବନ୍ଧକୀ ଭାବରେ ଅଜ୍ଞ ଜନସାଧାରଣଙ୍କର ରୋଗାକ୍ରାନ୍ତ ମନବିନୋଦନ ପାଇଁ ତା'ର ଆଦେଶ ଅନୁସାରେ ନିଜର ସ୍ୱାଧୀନ ଚିନ୍ତାଧାରାକୁ ବିକୃତ ଭାବରେ ବଜାରୋପଯୋଗୀ ପଣ୍ୟଦ୍ରବ୍ୟରେ ପରିଣତ କରିବାକୁ ଚାହିଁଲେ ନାହିଁ କି ଆଦର୍ଶବାଦୀ ଓ ବିଷାଦବାଦୀ ସାହିତ୍ୟିକଙ୍କ ପରି ଜୀବନଯୁଦ୍ଧରୁ ପଛଘୁଞ୍ଚା ଦେଇ ନିଜ ନିଜର ସଂକୀର୍ଣ୍ଣ ମାର୍ବଲ ଦୁର୍ଗ ଭିତରେ ବସି ଅବୋଧ ଓ ନିଷ୍କ୍ରିୟ ସାହିତ୍ୟ ସୃଷ୍ଟି କରିବାରେ ତୃପ୍ତିଲାଭ କଲେନାହିଁ। ସେମାନେ ଶ୍ରେଣୀସଙ୍ଘର୍ଷଗତ ଘାତ-ପ୍ରତିଘାତର କୁଟିଳ ଆବର୍ତ୍ତନରେ ନିଜକୁ ପ୍ରତି ମୁହୂର୍ତ୍ତରେ ଚଳାଉଥିବାରୁ ଜୀବନୀଶକ୍ତିର ପ୍ରକୃତ ମର୍ଯ୍ୟାଦା ନିଜ ଅନୁଭୂତି ଭିତର ଦେଇ ବୁଝିପାରନ୍ତି। ଗତିଶୀଳ ଆଧୁନିକ ସମାଜର ଅନ୍ତର୍ନିହିତ ଶକ୍ତି, ବିଜ୍ଞାନର ବିରାଟ ଆଶ୍ୱାସନା ଓ ପୃଥିବୀବ୍ୟାପୀ ପ୍ରପୀଡ଼ିତ ମାନବଶ୍ରେଣୀର ସମୁଜ୍ଜ୍ୱଳ ଭବିଷ୍ୟତ ସମ୍ଭାବନା ପ୍ରତି ସେମାନେ ସର୍ବଦା ସଜାଗ ଥିବାର ଜଣାଯାଏ। ଏମାନଙ୍କର ପୂର୍ଣ୍ଣବିଶ୍ୱାସ ଯେ, ବର୍ତ୍ତମାନ ଯୁଗର ଶ୍ରେଣୀସଂଘର୍ଷ ଆଉ ବେଶି ଦିନ ତିଷ୍ଠି ପାରିବ ନାହିଁ; ଖୁବ୍ ନିକଟରେ ପୃଥିବୀବ୍ୟାପୀ ଗୋଟିଏ ବିରାଟ ବିପ୍ଳବ ଦାସତ୍ୱର ଶୃଙ୍ଖଳ ଛିଣ୍ଡାଇ ସାରା ମାନବଜାତିକୁ ପ୍ରଗତିପଥରେ ଆଗେଇ ନେଇପାରିବ। ପ୍ରତ୍ୟେକ କ୍ଷେତ୍ରରେ ବର୍ତ୍ତମାନ ଯେପରି ବିଶୃଙ୍ଖଳା ରାଜତ୍ୱ କରୁଛି, ତାହା ବେଶିଦିନ ସ୍ଥାୟୀ ହେବା ସମ୍ଭବ ନୁହେଁ। ଯେବେ ସମଗ୍ର

ମାନବସମାଜର ସମଷ୍ଟିଗତ ପ୍ରାଣ ଓ ଚିନ୍ତାଧାରା ଅର୍ଥନୈତିକ ଓ ମାନସିକ ଜଗତରେ ଆତ୍ମଘାତୀ ଶ୍ରେଣୀସଂଘର୍ଷର ବିଷମୟ ଆବର୍ତ୍ତକୁ ଚୂରମାର କରି ପୂରାପୂରି ସଚେତ ଅବସ୍ଥାକୁ ଫେରିଆସିବ, ସେତେବେଳେହିଁ ସାହିତ୍ୟର ପୂର୍ଣ୍ଣ ବିକାଶ ହେବ। ବର୍ତ୍ତମାନ ଉନ୍ନତ ଦେଶମାନଙ୍କରେ ଏହାର ଲକ୍ଷଣ ପରିଷ୍କାର ଦେଖାଯାଉଛି। ପ୍ରତ୍ୟେକ ବ୍ୟକ୍ତିର ଶ୍ରମ ଓ ଶ୍ରମଫଳ ସମଷ୍ଟିଗତ ହୋଇଥିଲେ ସୁଦ୍ଧା, ଶ୍ରମର ଲାଭାଂଶ ଓ ଉତ୍ପାଦନ କରୁଥିବା ଯନ୍ତ୍ରପାତି ମୁଷ୍ଟିମେୟ ଲୋକଙ୍କର ବ୍ୟକ୍ତିଗତ ସମ୍ପତ୍ତି ହୋଇରହିଛି। ତେଣୁ ପ୍ରତ୍ୟେକ ଦିଗରେ ଉପଯୁକ୍ତ ବିକାଶ ହୋଇ ପାରୁନାହିଁ; ସାହିତ୍ୟ ବିକୃତ ଓ ବିଷାଦବାଦୀ ହୋଇପଡ଼ିଛି; ଦର୍ଶନ ରହସ୍ୟମୟ ହୋଇଯାଉଛି। ବର୍ତ୍ତମାନ ସମାଜର ଅନ୍ତର୍ନିହିତ ଶକ୍ତି ଓ ଉପାଦାନ ଭିନ୍ନରୂପ ଧାରଣ କରିଥିଲେ ସୁଦ୍ଧା ସାମାଜିକ ପଦ୍ଧତି ଓ ଆକାର ତା'ର ଆତ୍ମପ୍ରକାଶରେ ପ୍ରତିବନ୍ଧକ ହୋଇ ରହିଛି, ତେଣୁ ଅଚିରେ ବିପ୍ଳବାତ୍ମକ ପରିବର୍ତ୍ତନ ଅବଶ୍ୟମ୍ଭାବୀ।

ଯଦି ସମସ୍ତେ ମୁକ୍ତପ୍ରାଣରେ ସମାନ ଅଧିକାର ସହିତ ସାହିତ୍ୟ, କଳା, ସଙ୍ଗୀତ, ବିଜ୍ଞାନ ପ୍ରଭୃତିରେ ସହଯୋଗ କରିପାରିବେ, ତା' ହେଲେ ଏହା ଭିନ୍ନ ରୂପ ଧାରଣ କରିବ। ଦୂଷିତ ରକ୍ତ ପରିବର୍ତ୍ତେ ନୂତନ ଯୁଗର ସତେଜ ରକ୍ତ ସାହିତ୍ୟକୁ ନବଜୀବନ ଦାନ କରିବ। ଶ୍ରେଣୀସଂଘର୍ଷ ବ୍ୟକ୍ତିର ମନକୁ ଯେପରି ଭାବରେ ବିଦାରି ଖଣ୍ଡ ବିଖଣ୍ଡ କରି ଶକ୍ତିହୀନ କରିପକାଇଛି, ତା'ର ଅବସାନ ଘଟିବ, ସମଷ୍ଟିଗତ ଚେତନା ଭିତର ଦେଇ ହିଁ ବ୍ୟକ୍ତିର ପୂର୍ଣ୍ଣ ବିକାଶ ହେବ ଓ ପୂର୍ବକାଳର କଳ୍ପନାବିଳାସୀ ଆଦର୍ଶବାଦୀ ଦାର୍ଶନିକଙ୍କର 'ଏକରେ ବହୁ ଓ ବହୁରେ ଏକ ସାହିତ୍ୟ'ର ବ୍ୟାଖ୍ୟା ଏ ପ୍ରକାର ସାମାଜିକ ପରିସ୍ଥିତିରେ ହିଁ କେବଳ ସମ୍ଭବ ହୋଇପାରିବ। ସକଳ ମାନବଜାତିର ପୂର୍ଣ୍ଣ ସ୍ୱାଧୀନତାପିପାସୁ କେତେକ ନବୋତ୍ସାହୀ ଦୂରଦ୍ରଷ୍ଟାଙ୍କର ସାହିତ୍ୟ ଓ ବିଜ୍ଞାନର ନୂତନ ଆଲୋକ ଜାତି, ଧର୍ମ, ଦେଶ, ବର୍ଣ୍ଣ ନିର୍ବିଶେଷରେ ପୃଥିବୀର ସମସ୍ତ ନିଃସ୍ୱ ଓ ପ୍ରପୀଡ଼ିତ ସର୍ବହରାଙ୍କୁ ସାମ୍ୟନୀତିରେ ଅନୁପ୍ରାଣିତ ଓ ଜାଗ୍ରତ କରାଉଛି; ତେଣୁ ବିଶ୍ୱସାହିତ୍ୟର ଭବିଷ୍ୟତ ଯେ ଅତି ଉଜ୍ଜ୍ୱଳ, ଏଥିରେ ସନ୍ଦେହ ନାହିଁ। ସେତେବେଳେ ହିଁ ବୈଦାନ୍ତିକ ପ୍ରାର୍ଥନା। ସର୍ବେ ଭବନ୍ତୁ ସୁଖୀନଃ, ସର୍ବେ ସନ୍ତୁ ନିରାମୟା'' ଆଦର୍ଶ ପ୍ରତ୍ୟେକ ମନୁଷ୍ୟ ମନରେ ଶିହରଣ ଆଣି ଦେଇପାରିବ। ■□■

---

ଏହି କ୍ଷୁଦ୍ର ପ୍ରବନ୍ଧ ଭିତରେ ଭିନ୍ନ ଭିନ୍ନ ଯୁଗର ଓ ବିଭିନ୍ନ ଦେଶର ପ୍ରତିନିଧିମୂଳକ ବିଶିଷ୍ଟ ସାହିତ୍ୟିକଙ୍କର ଲେଖାରୁ ଦୃଷ୍ଟାନ୍ତ ଦେବା ସମ୍ଭବ ନୁହେଁ; ତେଣୁ ସାହିତ୍ୟର କ୍ରମବିକାଶ ବିଷୟରେ ଗୋଟିଏ ମୋଟାମୋଟି ତାତ୍ତ୍ୱିକ ଆଲୋଚନା ମାତ୍ର ଦିଆଗଲା। ସାହିତ୍ୟର ଏ ପ୍ରକାର କ୍ରମବିକାଶରେ ଯେ ବ୍ୟତିକ୍ରମ ନାହିଁ, ତାହା ଭାବିବା ଭୁଲ; କିନ୍ତୁ ସାହିତ୍ୟ କେତେକ ଖାମଖିଆଲୀ କ୍ଷଣଜନ୍ମାଙ୍କର ହେତୁହୀନ ଚିନ୍ତାଧାରା ବୋଲି ଭାବିବା ମଧ ଭୁଲ। ସାହିତ୍ୟର କ୍ରମବିକାଶରେ ଯେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଣାଳୀ ରହିଛି, ତା'ର ସୂଚନା ଦେବା ଏ ପ୍ରବନ୍ଧର ଉଦ୍ଦେଶ୍ୟ। ଏହି ବୈଜ୍ଞାନିକ ପ୍ରଣାଳୀରେ ସାହିତ୍ୟକୁ ବିଶ୍ଳେଷଣ କଲେ, ଅନେକ ନୂତନ ତଥ୍ୟ ମିଳିପାରିବ ବୋଲି ଲେଖକର ବିଶ୍ୱାସ।

# ନାରୀ ସ୍ୱାଧୀନତା

ସ୍ତ୍ରୀ ସ୍ୱାଧୀନତା ବିଷୟରେ ବହୁ ଯୁକ୍ତିତର୍କ, କଳିତକରାଳ ବହୁଦିନ ଧରି ଚାଲିଅଛି। କେତେକଙ୍କ ମତରେ ସ୍ତ୍ରୀମାନଙ୍କର ପ୍ରତ୍ୟେକ କ୍ଷେତ୍ରରେ ପୁରୁଷମାନଙ୍କ ପରି ସମସ୍ତ ପ୍ରକାର ସୁବିଧା ସୁଯୋଗ ଓ ସ୍ୱାଧୀନତା ପାଇବା ଉଚିତ। ଆଉ କେତେକ କହନ୍ତି ଯେ, ଗୃହକାମ, ଶିଶୁପାଳନ ପ୍ରଭୃତିରେ ସେମାନଙ୍କର ପ୍ରକୃତିଗତ ଦକ୍ଷତା ଥିବା ଯୋଗୁଁ ସେହି କ୍ଷେତ୍ରରେ କେବଳ ସେମାନଙ୍କୁ ଉପଯୁକ୍ତ କରିବା ଲାଗି ଶିକ୍ଷା ଦିଆଯିବା ଉଚିତ। ଏମାନଙ୍କ ଛଡ଼ା ଆଉ ଦଳେ ଅଛନ୍ତି, ଯେଉଁମାନେ ସ୍ତ୍ରୀମାନଙ୍କୁ କେବଳ ଦାସୀ ହିସାବରେ ରଖିବାର ପକ୍ଷପାତୀ। ଏମାନଙ୍କ ମତରେ ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତାକୁ ଉତ୍ସାହିତ କରିବା ମାନେ ସମାଜ ଭିତରେ ବ୍ୟଭିଚାରକୁ ପ୍ରଶ୍ରୟ ଦେବା ; ହଜାର ହଜାର ବର୍ଷ ଧରି ଗଢ଼ିଆସିଥିବା ଭାରତୀୟ ସଂସ୍କୃତିକୁ ନଷ୍ଟ କରିଦେବା। ବହୁ ବାଦବିବାଦ ଭିତରେ ଆମ ଦେଶରେ ଯେଉଁ ଅନୁପାତରେ ସ୍ତ୍ରୀ ଶିକ୍ଷା ଓ ଉନ୍ନତି ଲାଗି ପ୍ରଚାର ଚାଲିଛି, ସେଥିରେ ଦେଶର ସମସ୍ତ ସ୍ତ୍ରୀ ଜାତି ଶିକ୍ଷିତା ହେବା ଲାଗି ବହୁ ବର୍ଷ ଲାଗିଯିବ ଏବଂ ତଥାପି ସେମାନେ ଆର୍ଥିକ ସ୍ୱାଧୀନତାର ଏକଶତାଂଶ ସୁଦ୍ଧା ଉପଭୋଗ କରିପାରିବେ ନାହିଁ। ତା' ଅର୍ଥ ଆମ ଦେଶରେ ସ୍ତ୍ରୀ ଶିକ୍ଷା ଲାଗି କୌଣସି ନିର୍ଦ୍ଦିଷ୍ଟ ଯୋଜନା ଗୃହୀତ ହୋଇନାହିଁ। କି ଉପାୟରେ ସେମାନଙ୍କର ସବୁ କ୍ଷେତ୍ରରେ ମଙ୍ଗଳ ସାଧିତ ହେବ, ସେ ବିଷୟରେ ମଧ୍ୟ କୌଣସି ସୁଚିନ୍ତିତ ପ୍ରଣାଳୀ ଠିକ୍ କରାହେଉଛି ବୋଲି ମନେ ହୁଏ ନାହିଁ। ସ୍ତ୍ରୀ ସ୍ୱାଧୀନତାର ବିଚାର ପୁରୁଷମାନଙ୍କର ସଭାରେ ହୁଏ। ତେଣୁ ଏ ପ୍ରକାର ସିଦ୍ଧାନ୍ତରେ ସ୍ତ୍ରୀମାନଙ୍କର ବିଶେଷ ପ୍ରଭାବ ନାହିଁ। ପୁରୁଷସଭାରେ ସ୍ତ୍ରୀ ସ୍ୱାଧୀନତାର ବିଚାର ଏକାଦେଶଦର୍ଶୀ, ସଂକୀର୍ଣ୍ଣ ଓ ତାହାର ଉପସଂହାର ରକ୍ଷଣଶୀଳ ହେବା ସ୍ୱାଭାବିକ। ସ୍ତ୍ରୀ ଲୋକଙ୍କୁ କେତେ କମ୍ ଶିକ୍ଷା ଓ ସ୍ୱାଧୀନତା ଦେଇ ନିଜର ମହାନୁଭବତା ପ୍ରକାଶ କରିହେବ, ସେହି ମନୋଭାବ ପୁରୁଷମାନଙ୍କ ଆଲୋଚନା ଭିତରେ ଆତ୍ମପ୍ରକାଶ କଲା ପରି ମନେହୁଏ। ତେଣୁ ଏ କ୍ଷେତ୍ରରେ ପୁରୁଷର ଦାନ ଓ ଦୟାର ମନୋବୃତ୍ତି କାମ କରୁଥାଏ। ତେଣୁ ସ୍ତ୍ରୀମାନେ ନିଜର ଶକ୍ତି ଓ ଯୋଗ୍ୟତା ବଳରେ ସ୍ୱାଧୀନତା ହାସଲ କରିବା ପରିବର୍ତ୍ତେ ପୁରୁଷର ଦାନକୁ ଅପେକ୍ଷା କରି ବସିରହିଥିଲା ଯାଏଁ ସେମାନଙ୍କୁ ଏ ପ୍ରକାର ମନୋବୃତ୍ତିର ସମ୍ମୁଖୀନ ହେବା ମଧ୍ୟ ସ୍ୱାଭାବିକ।

ମାନବ ସମାଜର ଅଗ୍ରଗତିରେ ନାନାପ୍ରକାର ଅବସ୍ଥା ପରିଲକ୍ଷିତ ହୁଏ। ଗୋଟିଏ ଅବସ୍ଥାରେ କେତେକ ସମସ୍ୟା ତର୍କ ବିତର୍କ ସଭାର ଆଲୋଚନାମୂଳକ ବସ୍ତୁ ହିସାବରେ ଥାଏ ତ ଅନ୍ୟ ଗୋଟିଏ ପରସ୍ଥିତିରେ ତାହା ଅତ୍ୟାବଶ୍ୟକ ସମସ୍ୟା ହିସାବରେ ଆସି ମୁହାଁମୁହିଁ ଠିଆହୁଏ ଏବଂ ଖୁବ୍ ଶୀଘ୍ର ତା'ର ଉପଯୁକ୍ତ

ସମାଧାନ କରିବା ଦରକାର ହୋଇପଡ଼େ। ଏହି ସମାଧାନ ଉପରେ ସମାଜର ଅଗ୍ରଗତି ବହୁତ ବେଶି ନିର୍ଭର କରିଥାଏ। ସ୍ତ୍ରୀ ସ୍ୱାଧୀନତା ସମସ୍ୟା ବର୍ତ୍ତମାନ ଏହି ଅବସ୍ଥାରେ ଆମମାନଙ୍କ ଆଗରେ ଆସି ଦେଖାଦେଇଛି। ଏହାର ଉପଯୁକ୍ତ ପ୍ରତିକାର ଅତିଶୀଘ୍ର ହେବା ଦରକାର। ତା' ନ ହେଲେ ଦେଶ ପଛକୁ ହଟିଯିବାର ଯଥେଷ୍ଟ ଆଶଙ୍କା ଅଛି।

ମାନବିକତା ଦୃଷ୍ଟିରୁ ସ୍ତ୍ରୀମାନେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛନ୍ତି, ସେଥିରୁ ମୁକ୍ତି ପାଇବା ଉଚିତ। ଗୋଟିଏ ଶ୍ରେଣୀର ସ୍ତ୍ରୀଲୋକମାନେ ଏପରି ବନ୍ଦୀ ଅବସ୍ଥାରେ ଅଛନ୍ତି ଯେ, ପଶୁପକ୍ଷୀଙ୍କଠାରୁ ମଧ୍ୟ ସେମାନଙ୍କର ଅବସ୍ଥା ହୀନ। ଗୋଟିଏ ପକ୍ଷୀକୁ ପିଞ୍ଜରାରେ ବନ୍ଦୀ ଥିବାର ଦେଖି ଯେଉଁ ଯେଉଁ ଦୟାଶୀଳ ଲୋକେ ସହାନୁଭୂତି ପ୍ରକାଶ କରି ମୁକ୍ତି କରିଦେବା ଲାଗି ଯୁକ୍ତି କରନ୍ତି, ସେହିମାନେ ହିଁ ଅନେକ ସମୟରେ ସ୍ତ୍ରୀମାନଙ୍କୁ ଅସୂର୍ଯ୍ୟମ୍ପସ୍ୟା ହିସାବରେ ରଖିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ। ଖୋଲା ଆକାଶ, ମୁକ୍ତବାୟୁ ଓ ଜଗତର ଜୀବନ ପ୍ରବାହରୁ ଏମାନଙ୍କୁ ଦୂରରେ ରଖା ହୋଇଥାଏ। ବାହ୍ୟଜଗତ ପ୍ରତି ମନୁଷ୍ୟୋଚିତ ଆଗ୍ରହକୁ ମଧ୍ୟ ଜୋର ଜବରଦସ୍ତ ଚିପି ସାରି ଦିଆହୁଏ ପ୍ରତ୍ୟେକ ପରିବାର ଏମାନଙ୍କ ପାଇଁ ଗୋଟିଏ ଗୋଟିଏ ବନ୍ଦୀଶାଳା ଏବଂ ସ୍ୱାମୀ ଜେଲ ରକ୍ଷକ। ଏପରି କି କେତେକ କ୍ଷେତ୍ରରେ ସ୍ୱାମୀ ବାହାରକୁ ଗଲାବେଳେ ଘର ବାହାରୁ ତାଲା ବନ୍ଦ କରି ଯାଆନ୍ତି। ମାନବିକତା ଓ ନୈତିକତା ଦୃଷ୍ଟିରୁ ଏହା ଭୟଙ୍କର ଗର୍ହିତ। ମନୁଷ୍ୟୋଚିତ ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିବାର ନୈତିକ ଅଧିକାର ପୁରୁଷର ନାହିଁ; ତେଣୁ ଜୋର୍ ଜବରଦସ୍ତ ଏପରିଭାବରେ ରଖିବା ନାନା ଦୃଷ୍ଟିରୁ ନିନ୍ଦନୀୟ। ଖାଲି ସେତିକି ନୁହେଁ, ଯେଉଁ ସଂକୀର୍ଣ୍ଣ ମନୋବୃତ୍ତି ଓ ଭୟଯୋଗୁଁ ପୁରୁଷମାନେ ସ୍ତ୍ରୀମାନଙ୍କୁ ଏପରିଭାବରେ ବନ୍ଦୀକରି ରଖନ୍ତି, ତା'ରି ବିରୁଦ୍ଧରେ ସ୍ତ୍ରୀମାନଙ୍କର ମନ ବିଦ୍ରୋହ କରିବା ସ୍ୱାଭାବିକ; କିନ୍ତୁ ନାନାକାରଣରୁ ଏ ମନୋଭାବ ପ୍ରକାଶ୍ୟରେ ଦେଖା ନଯାଇ ଲୁକ୍କାୟିତ ଭାବରେ ପ୍ରକାଶ ପାଇଥାଏ। ମନୁଷ୍ୟର ସ୍ୱଭାବସିଦ୍ଧ ଆଗ୍ରହକୁ କେବେ ପୂରାପୂରି ନଷ୍ଟକରି ଦିଆଯାଇ ନ ପାରେ। ଗୋଟିଏ ପିଲାକୁ ଯଦି କୁହାଯାଏ ଯେ ଅମୁକ ଜିନିଷଟା ପାଖକୁ ତା'ର କେଉଁ ହେଲେ ଯିବା ଉଚିତ ନୁହେଁ, ତା' ହେଲେ ସେଥିପ୍ରତି ତା'ର କୌତୂହଳ ଆହୁରି ବେଶି ବଢ଼ିଯିବ। ଯଦି ଜଣକୁ କୁହାଯାଏ ଯେ ଗୋଟିଏ ଘରର ଯେକୌଣସି ବଖରାକୁ ସେ ଯାଇପାରେ; କିନ୍ତୁ ଆଉ ଗୋଟିଏ ତାଲାବନ୍ଦ ଘରକୁ ସେ ଚାହିଁ ସୁଦ୍ଧା ପାରିବନାହିଁ। ତା' ହେଲେ, ସେ ଘର ପ୍ରତି ତା'ର କୌତୂହଳ କେତେ ବେଶି ବଢ଼ି ନ ଯିବ। ସେହିପରି ଅନ୍ୟ ପୁରୁଷମାନଙ୍କ ପ୍ରତି ଏହିପରି ଗୋଟିଏ ମନୋଭାବ ସୃଷ୍ଟି କରିବାଦ୍ୱାରା ସ୍ତ୍ରୀମାନଙ୍କର କୌତୂହଳ ସେମାନଙ୍କ ପ୍ରତି ବହୁତ ବଢ଼ିଯାଏ। ସେମାନେ ସାମାନ୍ୟ ସୁଯୋଗ ପାଇଲେ ତା'ର ସୁବିଧା

ନିଅନ୍ତି। ତାଲା ବନ୍ଦ ଘରର ଝରକା ପାଖରେ ଅଧିକାଂଶ ସମୟ ଠିଆହୋଇ ବାହାରକୁ ଚାହିଁବା ପ୍ରବୃତ୍ତି ସେମାନଙ୍କର ହେବା ସ୍ୱାଭାବିକ ଏବଂ ଅନେକ ସମୟରେ ଅଲଗା ଚାବି ପାଖରେ ରଖିବା ମଧ୍ୟ ଅସମ୍ଭବ ନୁହେଁ। ତେଣୁ ଏପରି ଭାବରେ ବନ୍ଦ କରି ରଖିବା ଦ୍ୱାରା ସ୍ତ୍ରୀମାନଙ୍କ ଭିତରେ ବ୍ୟଭିଚାର ବଢ଼ିବା ଯେ ସୁନିଶ୍ଚିତ– ଏଥିରେ ସନ୍ଦେହ ନାହିଁ। ତେବେ ପ୍ରତ୍ୟେକ ସ୍ୱାମୀର ଗୋଟିଏ ଆତ୍ମସନ୍ତୋଷ ହୁଏ ଯେ ତା'ର ସ୍ତ୍ରୀର ସତୀତ୍ୱକୁ ସେ ତାଲା ବନ୍ଦ କରି ଅତି ନିରାପଦରେ ରଖିପାରିଛି ଏବଂ ସମାଜରେ ଯେତେକ ବ୍ୟଭିଚାର କଥା ଶୁଣାଯାଏ, ସେ ସବୁ ଅନ୍ୟମାନଙ୍କର ସ୍ତ୍ରୀ ଯୋଗୁଁ ହିଁ ଘଟିଥାଏ।

ଅନେକ ପୁରୁଷଙ୍କର ନିଜ ସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀ ସହିତ ଗୁପ୍ତ ସମ୍ପର୍କ ଥିଲେ ସୁଦ୍ଧା ନିଜ ସ୍ତ୍ରୀର ସତୀତ୍ୱ ବିଷୟରେ ତା'ର ବଦ୍ଧମୂଳ ବିଶ୍ୱାସ ଥାଏ। ଏହି ଧାରଣା ଏପରି ଅଯୌକ୍ତିକ ଭାବରେ ଚେର ମାଡ଼ିଥାଏ ଯେ କେହି ଏହା ବିରୁଦ୍ଧରେ ପଦେ କହିଲାକ୍ଷଣି ଅନେକେ ରାଗରେ ଅଗ୍ନିଶର୍ମା ହୋଇପଡ଼ନ୍ତି। ତା'ମାନେ ବିଚାର ଯୁକ୍ତି ଦ୍ୱାରା ନିଜ ମନର ଅନ୍ଧାର ଗହ୍ୱରକୁ ପଶିବାକୁ ଏମାନେ ଭୟ କରନ୍ତି। ଏ ପ୍ରକାର ମିଥ୍ୟା ବିଶ୍ୱାସ ସୃଷ୍ଟି ଦ୍ୱାରା ବ୍ୟକ୍ତିଗତ ସନ୍ତୋଷ ଲାଭ କରି ମୂର୍ଖର ସ୍ୱର୍ଗ ରାଜ୍ୟରେ ବିଚରଣ କରିବା ପାଇଁ ସମାଜର ଏତେ ବେଶି କ୍ଷତି ଘଟାଇବା ଆଦୌ ବାଞ୍ଛନୀୟ ନୁହେଁ, ଅନେକ ଭାବନ୍ତି ଯେ ପୁରୁଷ ସହିତ ବେଶି ମିଶିବା ଦ୍ୱାରାହିଁ ଯୌନ ପିପାସା ବଢ଼ିଯାଏ, କିନ୍ତୁ ଆଦୌ ନ ମିଶିବା ଦ୍ୱାରାହିଁ ଯୌନ ସଙ୍ଗମର ଅବରୁଦ୍ଧ ଇଚ୍ଛା ନିବାର୍ଯ୍ୟ ପୁରୁଷ ପ୍ରତି ଅତି ପ୍ରବଳ ବେଗରେ ଆକର୍ଷିତ ହୋଇଥାଏ ଓ ଏହି କାରଣ ଯୋଗୁଁ ନାନାପ୍ରକାର ଅବୈଧ ଓ ଅସାମାଜିକ କାର୍ଯ୍ୟରେ ମନ ବ୍ୟାପୃତ ହୋଇପଡ଼େ। ଅତ୍ୟଧିକ ସାମାଜିକ ଓ ନୈତିକ ଚାପ ଦ୍ୱାରା ପାଗଳାମି ଓ ନାନାପ୍ରକାର ମାନସିକ ବିକୃତି ମଧ୍ୟ ଦେଖାଦେଇଥାଏ। ଜୀବନସ୍ରୋତ ସରଳ ଓ ସ୍ୱାସ୍ଥ୍ୟକର ମାର୍ଗରେ ପରିଚାଳିତ ନ ହୋଇ ଅବରୁଦ୍ଧ ହୋଇ ପଡ଼ିଲେ, ଅସଂଖ୍ୟ କର୍ଦ୍ଦମାକ୍ତ, ଗତି ରହିତ ପଚାନାଳରେ ପରିଣତ ହୋଇଯାଏ ଏବଂ ଏହା ସମଗ୍ର ସମାଜର ସ୍ୱାସ୍ଥ୍ୟକୁ ନଷ୍ଟ କରିଦିଏ।

ମାନବୀୟ ନୈତିକତା ଛଡ଼ା ଅନ୍ୟାନ୍ୟ ଦୃଷ୍ଟିରୁ ମଧ୍ୟ ସ୍ତ୍ରୀ ପରାଧୀନତା ସମାଜ ପକ୍ଷରେ ଭୟଙ୍କର ମାରାତ୍ମକ। ମାନବ ଶିଶୁ, ମା' ବାପ ଉପରେ ଯେତେ ବେଶି ଓ ଯେତେଦିନ ଧରି ନିର୍ଭର କରିଥାଏ, ଅନ୍ୟାନ୍ୟ ଜନ୍ତୁମାନେ ସେପରି ନିର୍ଭର କରନ୍ତି ନାହିଁ। ଉନ୍ନତ-ବୁଦ୍ଧିର କ୍ରମବିକାଶ ଓ ଜଟିଳ ସାମାଜିକ ଜୀବନ ସହିତ ତାଳ ପକାଇ ଚାଲିବା ଲାଗି ମନୁଷ୍ୟ ଶିଶୁକୁ ବହୁବର୍ଷ ଲାଗିଯାଏ। ତେଣୁ ମା' ବାପାଙ୍କ ସ୍ନେହ ସାହଚର୍ଯ୍ୟରେ ରହି ତା'ର ଏ ସବୁ ଶିଖିବା ଦରକାର। ବିଶେଷତଃ ମା' ଉପରେ ତା'ର ଶିକ୍ଷା ବହୁତ ବେଶି ନିର୍ଭର କରିଥାଏ। ମା'

ସମାଧାନ କରିବା ଦରକାର ହୋଇପଡ଼େ। ଏହି ସମାଧାନ ଉପରେ ସମାଜର ଅଗ୍ରଗତି ବହୁତ ବେଶି ନିର୍ଭର କରିଥାଏ। ସ୍ତ୍ରୀ ସ୍ୱାଧୀନତା ସମସ୍ୟା ବର୍ତ୍ତମାନ ଏହି ଅବସ୍ଥାରେ ଆମମାନଙ୍କ ଆଗରେ ଆସି ଦେଖାଦେଇଛି। ଏହାର ଉପଯୁକ୍ତ ପ୍ରତିକାର ଅତିଶୀଘ୍ର ହେବା ଦରକାର। ତା' ନ ହେଲେ ଦେଶ ପଛକୁ ହଟିଯିବାର ଯଥେଷ୍ଟ ଆଶଙ୍କା ଅଛି।

ମାନବିକତା ଦୃଷ୍ଟିରୁ ସ୍ତ୍ରୀମାନେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛନ୍ତି, ସେଥିରୁ ମୁକ୍ତି ପାଇବା ଉଚିତ। ଗୋଟିଏ ଶ୍ରେଣୀର ସ୍ତ୍ରୀଲୋକମାନେ ଏପରି ବନ୍ଦୀ ଅବସ୍ଥାରେ ଅଛନ୍ତି ଯେ, ପଶୁପକ୍ଷୀଙ୍କଠାରୁ ମଧ ସେମାନଙ୍କର ଅବସ୍ଥା ହୀନ। ଗୋଟିଏ ପକ୍ଷୀକୁ ପିଞ୍ଜରାରେ ବନ୍ଦୀ ଥିବାର ଦେଖି ଯେଉଁ ଯେଉଁ ଦୟାଶୀଳ ଲୋକେ ସହାନୁଭୂତି ପ୍ରକାଶ କରି ମୁକ୍ତି କରିଦେବା ଲାଗି ଯୁକ୍ତି କରନ୍ତି, ସେହିମାନେ ହିଁ ଅନେକ ସମୟରେ ସ୍ତ୍ରୀମାନଙ୍କୁ ଅସୂର୍ଯ୍ୟମ୍ପସ୍ୟା ହିସାବରେ ରଖିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ। ଖୋଲା ଆକାଶ, ମୁକ୍ତବାୟୁ ଓ ଜଗତର ଜୀବନ ପ୍ରବହରୁ ଏମାନଙ୍କୁ ଦୂରରେ ରଖା ହୋଇଥାଏ। ବାହ୍ୟଜଗତ ପ୍ରତି ମନୁଷ୍ୟୋଚିତ ଆଗ୍ରହକୁ ମଧ ଜୋର ଜବରଦସ୍ତ ଚିପି ସାରି ଦିଆହୁଏ ପ୍ରତ୍ୟେକ ପରିବାର ଏମାନଙ୍କ ପାଇଁ ଗୋଟିଏ ଗୋଟିଏ ବନ୍ଦୀଶାଳା ଏବଂ ସ୍ୱାମୀ ଜେଲ ରକ୍ଷକ। ଏପରି କି କେତେକ କ୍ଷେତ୍ରରେ ସ୍ୱାମୀ ବାହାରକୁ ଗଲାବେଳେ ଘର ବାହାରୁ ତାଲା ବନ୍ଦ କରି ଯାଆନ୍ତି। ମାନବିକତା ଓ ନୈତିକତା ଦୃଷ୍ଟିରୁ ଏହା ଭୟଙ୍କର ଗର୍ହିତ। ମନୁଷ୍ୟୋଚିତ ଅଧିକାରରୁ ସେମାନଙ୍କୁ ବଞ୍ଚିତ କରିବାର ନୈତିକ ଅଧିକାର ପୁରୁଷର ନାହିଁ; ତେଣୁ ଜୋର୍ ଜବରଦସ୍ତ ଏପରିଭାବରେ ରଖିବା ନାନା ଦୃଷ୍ଟିରୁ ନିନ୍ଦନୀୟ। ଖାଲି ସେତିକି ନୁହେଁ, ଯେଉଁ ସଂକୀର୍ଣ୍ଣ ମନୋବୃତ୍ତି ଓ ଭୟଯୋଗୁଁ ପୁରୁଷମାନେ ସ୍ତ୍ରୀମାନଙ୍କୁ ଏପରିଭାବରେ ବନ୍ଦୀକରି ରଖନ୍ତି, ତା'ରି ବିରୁଦ୍ଧରେ ସ୍ତ୍ରୀମାନଙ୍କର ମନ ବିଦ୍ରୋହ କରିବା ସ୍ୱାଭାବିକ; କିନ୍ତୁ ନାନାକାରଣରୁ ଏ ମନୋଭାବ ପ୍ରକାଶ୍ୟରେ ଦେଖା ନଯାଇ ଲୁକ୍କାୟିତ ଭାବରେ ପ୍ରକାଶ ପାଇଥାଏ। ମନୁଷ୍ୟର ସ୍ୱଭାବସିଦ୍ଧ ଆଗ୍ରହକୁ କେବେ ପୂରାପୂରି ନଷ୍ଟକରି ଦିଆଯାଇ ନ ପାରେ। ଗୋଟିଏ ପିଲାକୁ ଯଦି କୁହାଯାଏ ଯେ ଅମୁକ ଜିନିଷଟା ପାଖକୁ ତା'ର କେଉଁଠି ହେଲେ ଯିବା ଉଚିତ ନୁହେଁ, ତା' ହେଲେ ସେଥିପ୍ରତି ତା'ର କୌତୂହଳ ଆହୁରି ବେଶି ବଢ଼ିଯିବ। ଯଦି ଜଣକୁ କୁହାଯାଏ ଯେ ଗୋଟିଏ ଘରର ଯେକୌଣସି ବଖରାକୁ ସେ ଯାଇପାରେ; କିନ୍ତୁ ଆଉ ଗୋଟିଏ ତାଲାବନ୍ଦ ଘରକୁ ସେ ଚାହିଁ ସୁଦ୍ଧା ପାରିବନାହିଁ। ତା' ହେଲେ, ସେ ଘର ପ୍ରତି ତା'ର କୌତୂହଳ କେତେ ବେଶି ବଢ଼ି ନ ଯିବ। ସେହିପରି ଅନ୍ୟ ପୁରୁଷମାନଙ୍କ ପ୍ରତି ଏହିପରି ଗୋଟିଏ ମନୋଭାବ ସୃଷ୍ଟି କରିବାଦ୍ୱାରା ସ୍ତ୍ରୀମାନଙ୍କର କୌତୁହଳ ସେମାନଙ୍କ ପ୍ରତି ବହୁତ ବଢ଼ିଯାଏ। ସେମାନେ ସାମାନ୍ୟ ସୁଯୋଗ ପାଇଲେ ତା'ର ସୁବିଧା

ନିଅନ୍ତି । ତାଲା ବନ୍ଦ ଘରର ଝରକା ପାଖରେ ଅଧିକାଂଶ ସମୟ ଠିଆହୋଇ ବାହାରକୁ ଚାହିଁବା ପ୍ରବୃତ୍ତି ସେମାନଙ୍କର ହେବା ସ୍ୱାଭାବିକ ଏବଂ ଅନେକ ସମୟରେ ଅଲଗା ଚାବି ପାଖରେ ରଖିବା ମଧ ଅସମ୍ଭବ ନୁହେଁ । ତେଣୁ ଏପରି ଭାବରେ ବନ୍ଦ କରି ରଖିବା ଦ୍ୱାରା ସ୍ତ୍ରୀମାନଙ୍କ ଭିତରେ ବ୍ୟଭିଚାର ବଢ଼ିବା ଯେ ସୁନିଶ୍ଚିତ– ଏଥିରେ ସନ୍ଦେହ ନାହିଁ । ତେବେ ପ୍ରତ୍ୟେକ ସ୍ୱାମୀର ଗୋଟିଏ ଆତ୍ମସନ୍ତୋଷ ହୁଏ ଯେ ତା'ର ସ୍ତ୍ରୀର ସତୀତ୍ୱକୁ ସେ ତାଲା ବନ୍ଦ କରି ଅତି ନିରାପଦରେ ରଖିପାରିଛି ଏବଂ ସମାଜରେ ଯେତେକ ବ୍ୟଭିଚାର କଥା ଶୁଣାଯାଏ, ସେ ସବୁ ଅନ୍ୟମାନଙ୍କର ସ୍ତ୍ରୀ ଯୋଗୁଁ ହିଁ ଘଟିଥାଏ ।

ଅନେକ ପୁରୁଷଙ୍କର ନିଜ ସ୍ତ୍ରୀ ଛଡ଼ା ଅନ୍ୟ ସ୍ତ୍ରୀ ସହିତ ଗୁପ୍ତ ସମ୍ପର୍କ ଥିଲେ ସୁଦ୍ଧା ନିଜ ସ୍ତ୍ରୀର ସତୀତ୍ୱ ବିଷୟରେ ତା'ର ବଦ୍ଧମୂଳ ବିଶ୍ୱାସ ଥାଏ । ଏହି ଧାରଣା ଏପରି ଅଯୌକ୍ତିକ ଭାବରେ ଚେର ମାଡ଼ିଥାଏ ଯେ କେହି ଏହା ବିରୁଦ୍ଧରେ ପଦେ କହିଲାକ୍ଷଣି ଅନେକେ ରାଗରେ ଅଗ୍ନିଶର୍ମା ହୋଇପଡ଼ନ୍ତି । ତା'ମାନେ ବିଚାର ଯୁକ୍ତି ଦ୍ୱାରା ନିଜ ମନର ଅନ୍ଧାର ଗହ୍ୱରକୁ ପଶିବାକୁ ଏମାନେ ଭୟ କରନ୍ତି । ଏ ପ୍ରକାର ମିଥ୍ୟା ବିଶ୍ୱାସ ସୃଷ୍ଟି ଦ୍ୱାରା ବ୍ୟକ୍ତିଗତ ସନ୍ତୋଷ ଲାଭ କରି ମୂର୍ଖର ସ୍ୱର୍ଗ ରାଜ୍ୟରେ ବିଚରଣ କରିବା ପାଇଁ ସମାଜର ଏତେ ବେଶି କ୍ଷତି ଘଟାଇବା ଆଦୌ ବାଞ୍ଛନୀୟ ନୁହେଁ, ଅନେକ ଭାବନ୍ତି ଯେ ପୁରୁଷ ସହିତ ବେଶି ମିଶିବା ଦ୍ୱାରାହିଁ ଯୌନ ପିପାସା ବଢ଼ିଯାଏ, କିନ୍ତୁ ଆଦୌ ନ ମିଶିବା ଦ୍ୱାରାହିଁ ଯୌନ ସଙ୍ଗମର ଅବରୁଦ୍ଧ ଇଚ୍ଛା ନିର୍ବାର୍ଯ୍ୟ ପୁରୁଷ ପ୍ରତି ଅତି ପ୍ରବଳ ବେଗରେ ଆକର୍ଷିତ ହୋଇଥାଏ ଓ ଏହି କାରଣ ଯୋଗୁଁ ନାନାପ୍ରକାର ଅବୈଧ ଓ ଅସାମାଜିକ କାର୍ଯ୍ୟରେ ମନ ବ୍ୟାପୃତ ହୋଇପଡ଼େ । ଅତ୍ୟଧିକ ସାମାଜିକ ଓ ନୈତିକ ଚାପ ଦ୍ୱାରା ପାଗଳାମି ଓ ନାନାପ୍ରକାର ମାନସିକ ବିକୃତି ମଧ ଦେଖାଦେଇଥାଏ । ଜୀବନସ୍ରୋତ ସରଳ ଓ ସ୍ୱାସ୍ଥ୍ୟକର ମାର୍ଗରେ ପରିଚାଳିତ ନ ହୋଇ ଅବରୁଦ୍ଧ ହୋଇ ପଡ଼ିଲେ, ଅସଂଖ୍ୟ କର୍ଦ୍ଦମାକ୍ତ, ଗତି ରହିତ ପଚାନାଳରେ ପରିଣତ ହୋଇଯାଏ ଏବଂ ଏହା ସମଗ୍ର ସମାଜର ସ୍ୱାସ୍ଥ୍ୟକୁ ନଷ୍ଟ କରିଦିଏ ।

ମାନବୀୟ ନୈତିକତା ଛଡ଼ା ଅନ୍ୟାନ୍ୟ ଦୃଷ୍ଟିରୁ ମଧ ସ୍ତ୍ରୀ ପରାଧୀନତା ସମାଜ ପକ୍ଷରେ ଭୟଙ୍କର ମାରାତ୍ମକ । ମାନବ ଶିଶୁ, ମା' ବାପ ଉପରେ ଯେତେ ବେଶି ଓ ଯେତେଦିନ ଧରି ନିର୍ଭର କରିଥାଏ, ଅନ୍ୟାନ୍ୟ ଜନ୍ତୁମାନେ ସେପରି ନିର୍ଭର କରନ୍ତି ନାହିଁ । ଉନ୍ନତ-ବୁଦ୍ଧିର କ୍ରମବିକାଶ ଓ ଜଟିଳ ସାମାଜିକ ଜୀବନ ସହିତ ତାଳ ପକାଇ ଚାଲିବା ଲାଗି ମନୁଷ୍ୟ ଶିଶୁକୁ ବହୁବର୍ଷ ଲାଗିଯାଏ । ତେଣୁ ମା' ବାପାଙ୍କ ସ୍ନେହ ସାହଚର୍ଯ୍ୟରେ ରହି ତା'ର ଏ ସବୁ ଶିଖିବା ଦରକାର । ବିଶେଷତଃ ମା' ଉପରେ ତା'ର ଶିକ୍ଷା ବହୁତ ବେଶି ନିର୍ଭର କରିଥାଏ । ମା'

ଯଦି ପିଲାକୁ ବିଜ୍ଞତାର ସହିତ ପାଳନ ନ କରେ, ତା' ହେଲେ ପିଲା ବଡ଼ ହେଲାପରେ ନାନା ଅସାମାଜିକ କାର୍ଯ୍ୟରେ ବ୍ୟାପୃତ ହୋଇପାରେ। ତେଣୁ ମା'ର ଶିକ୍ଷା ଯେ କେତେ ବେଶି ଦରକାର ତାହା ସହଜରେ ଅନୁମେୟ। ଉପଯୁକ୍ତ ଶିକ୍ଷା ନ ପାଇଲେ ନିଜର ତଥା ଶିଶୁର ସ୍ୱାସ୍ଥ୍ୟହାନି ହେବାର ମଧ୍ୟ ଯଥେଷ୍ଟ କାରଣ ରହିଛି। ସେଥିଲାଗି ଆମ ଦେଶରେ ବହୁ ନବଜାତ ଶିଶୁ ଓ ଗର୍ଭବତୀ ସ୍ତ୍ରୀ ପ୍ରାଣତ୍ୟାଗ କରୁଥିଲାବେଳେ ଅନ୍ୟାନ୍ୟ ଉନ୍ନତ ଦେଶରେ ବହୁତ କମ୍ ଶିଶୁ ଓ ସ୍ତ୍ରୀ ଏପରି ଭାବରେ ମୃତ୍ୟୁ ମୁଖରେ ପଡ଼ନ୍ତି। ତେଣୁ ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ବିନା କୌଣସି ସାମାଜିକ ସ୍ୱାସ୍ଥ୍ୟ ଯୋଜନା ଅସମ୍ଭବ।

ଶିଶୁର ସ୍ୱାସ୍ଥ୍ୟକର ସାମାଜିକ ବିକାଶ ଲାଗି ଦ୍ୱନ୍ଦ୍ୱରହିତ ପାରିବାରିକ ଜୀବନ ନିତାନ୍ତ ଆବଶ୍ୟକ; କିନ୍ତୁ ସ୍ତ୍ରୀ ପୁରୁଷ ଭିତରେ ଶିକ୍ଷାଗତ ପାର୍ଥକ୍ୟ ଥିବା ଯୋଗୁଁ ସ୍ୱାମୀ ସ୍ତ୍ରୀ ଭିତରେ ମାନସିକ ଐକ୍ୟ ପ୍ରାୟ ନ ଥାଏ। ସ୍ୱାମୀର ଚିନ୍ତାଧାରା ସ୍ତ୍ରୀର ଭାବନା ରାଜ୍ୟଠାରୁ ସଂପୂର୍ଣ୍ଣ ଅଲଗା। ସ୍ୱାମୀ ଦିନତମାମ ରାଜନୀତି, ଅର୍ଥନୀତି, ସମାଜନୀତି, ସଂସ୍କୃତି, କଳା, ବିଜ୍ଞାନ ପ୍ରଭୃତି ଜ୍ଞାନ ରାଜ୍ୟରେ ଗବେଷଣା କରି ଘରକୁ ଫେରିଲାବେଳକୁ ସ୍ତ୍ରୀ ଦିଅର-ଭାଉଜ-କଳି ବହି ପଢୁଥାଏ କିମ୍ବା ଅନ୍ଧାର ଘର ଭିତରେ ବସି ମାଳି ଗଡ଼ାଉଥାଏ କିମ୍ବା ଚାକର ପୂଜାରୀ ସହିତ ଥଟା, ପରିହାସ, କଳିତକରାଳ କରି ସମୟ କଟାଉଥାଏ। ଏପରି ପରିସ୍ଥିତିରେ ସ୍ୱାମୀ ସ୍ତ୍ରୀ ଭିତରେ ମନ ନ ମିଳିବା ସ୍ୱାଭାବିକ। ଜଣେ ଅନ୍ୟଠାରୁ କୌଣସି ପ୍ରେରଣା ପାଇପାରେନା। ସ୍ତ୍ରୀ ମହା ଉତ୍ସାହରେ ତା'ର ସାଙ୍ଗ ଝିଅଙ୍କର ପିଲାଝିଲା, ବାହାଚୂଡ଼ା ବିଷୟରେ ଗପିବସିଲା ବେଳକୁ ସ୍ୱାମୀ ଦେଶର ପରିସ୍ଥିତି ବା ଆଣବିକ ଶକ୍ତିର ବ୍ୟବହାର ବିଷୟରେ ଭାବୁଥାଏ। ଫଳରେ ମାନସିକ ଐକ୍ୟ ଓ ପରସ୍ପର କାର୍ଯ୍ୟ ଲାଗି ପ୍ରେରଣା ଓ ଉତ୍ସାହ ପରିବର୍ତ୍ତେ ମନୋମାଳିନ୍ୟ ସୃଷ୍ଟି ହୁଏ। କେହି କାହାର ଉପଯୁକ୍ତ ଜୀବନସାଥୀ ହୋଇପାରନ୍ତି ନାହିଁ। ସ୍ୱାମୀ ଯାହା ଭାବେ, ତାହା ସ୍ତ୍ରୀର ଭାବନା ଶକ୍ତିର ବାହାରେ ଏବଂ ସ୍ତ୍ରୀ ଯାହା ଭାବେ ସେଥିରେ ସ୍ୱାମୀର ଆଗ୍ରହ ନ ଥାଏ। ଏପରି ପରିସ୍ଥିତିରେ ପରସ୍ପର ଭିତରେ ପ୍ରେମ କେଉଁଠିହେଲେ ହୋଇପାରେନା। ଅବଶ୍ୟ ଏହା ଆମ ଦେଶର ବୁଦ୍ଧିଜୀବୀ ଓ ଶିକ୍ଷିତ ଶ୍ରେଣୀ ଭିତରେ ହିଁ ପ୍ରଧାନତଃ ଦେଖାଯାଏ।

ଆମେମାନେ ଆମ ଦେଶର ଦାମ୍ପତ୍ୟ ଜୀବନ ବିଷୟରେ ଯେତେ ଗର୍ବ କରୁନା କାହିଁକି, ଅନେକ କ୍ଷେତ୍ରରେ ଯୌନ ସଂପର୍କ ଛଡ଼ା ସ୍ୱାମୀ, ସ୍ତ୍ରୀ ଭିତରେ ଆଉ କୌଣସି ପ୍ରକାର ମିଳନ ନ ଥିବା ଯୋଗୁଁ ସ୍ୱାମୀ ସ୍ତ୍ରୀ ଭିତରେ ପ୍ରକୃତ ପ୍ରେମ କୌଣସିମତେ ସମ୍ଭବ ହୋଇପାରେନା। ସ୍ତ୍ରୀମାନଙ୍କୁ ଖୁସି କରାଇବା ଲାଗି 'ଅର୍ଦ୍ଧାଙ୍ଗିନୀ', 'ପ୍ରାଣସଙ୍ଗିନୀ' ପ୍ରଭୃତି ଯେତେ ଶ୍ରୁତିମଧୁର ଶବ୍ଦାବଳୀ ପ୍ରୟୋଗ କଲେ

ସୁଦ୍ଧା ସେମାନେ ଯେ ସବୁକ୍ଷେତ୍ରରେ ପୁରୁଷର ସମାନସ୍କନ୍ଦ ନୁହଁନ୍ତି, ଏଥିରେ ସନ୍ଦେହ ନାହିଁ। ଏହି ପାରିବାରିକ ଦ୍ୱନ୍ଦ୍ୱ ଓ ମାନସିକ ଅସମାନତା ଶିଶୁର ଲାଳନ ପାଳନ ଲାଗି ଭୟଙ୍କର କ୍ଷତିକାରକ। କୋମଳମତି ଶିଶୁ ବୁଝିପାରେନା ତା'ର ଆଦର୍ଶ କ'ଣ ଏବଂ କାହାକୁ ସେ ଅନୁକରଣ କରିବ। ଏହି ଦ୍ୱନ୍ଦ୍ୱମୟ ପରିସ୍ଥିତିରେ ଅନେକ ସମୟରେ ସେ ହତୋତ୍ସାହ ହୋଇ ଭାଙ୍ଗିପଡ଼େ ଏବଂ କୌଣସି ବଳିଷ୍ଠ ଆଦର୍ଶ ମନ ଭିତରେ ନ ଥିବାରୁ ଗନ୍ତବ୍ୟ ପଥରେ ଠିକ୍‌ଭାବରେ ଗତି କରିପାରେନା। ଆମ ସମାଜରେ ଛାତ୍ରମାନଙ୍କର ଯେଉଁ ଅନିର୍ଦ୍ଦିଷ୍ଟ ଆଦର୍ଶ ଓ ହତୋତ୍ସାହ ଦେଖାଦେଇଛି, ତା'ର କାରଣଗୁଡ଼ିକ ଭିତରୁ ଆମର ଅସମାନ ଓ ଦ୍ୱନ୍ଦ୍ୱାତ୍ମକ ପାରିବାରିକ ଜୀବନ ଗୋଟିଏ ପ୍ରଧାନ କାରଣ।

ଅର୍ଥନୈତିକ ଦୃଷ୍ଟିକୋଣରୁ ମଧ୍ୟ ସ୍ତ୍ରୀ ସ୍ୱାଧୀନତାର ଏକାନ୍ତ ଆବଶ୍ୟକତା ରହିଛି। ସ୍ତ୍ରୀମାନେ ଆର୍ଥିକ ଓ ଶିକ୍ଷାଗତ ସ୍ୱାଧୀନତା ପାଇ ନ ଥିବାରୁ ଦେଶର ଉତ୍ପାଦନ ବୃଦ୍ଧିରେ ବିଶେଷ ସାହାଯ୍ୟ କରିପାରୁନାହାନ୍ତି। ତଳଶ୍ରେଣୀର ସ୍ତ୍ରୀମାନେ ମଜୁରୀକାମ କରିବା ଛଡ଼ା ଉଚ୍ଚଧରଣର ଉତ୍ପାଦନ ପ୍ରଣାଳୀରେ ଏମାନେ କୌଣସି ଭାଗ ନେଇ ପାରୁନାହାନ୍ତି। ଜନସଂଖ୍ୟାର ଅଧାଅଧି ଲୋକ ଏପରି ଭାବରେ ଉତ୍ପାଦନ ପ୍ରଣାଳୀର ବାହାରେ ରହି ଯାଉଥିବାରୁ ଦେଶର ସର୍ବମୋଟ ଉତ୍ପାଦନ ପରିମାଣ ବହୁତ କମ୍ ହେବା ସ୍ୱାଭାବିକ। ତେଣୁ କୌଣସି ଦେଶ ଏମାନଙ୍କ ବିନାସାହାଯ୍ୟରେ ଉନ୍ନତ ହେବାର ସମ୍ଭାବନା ନାହିଁ। ତା' ଛଡ଼ା ସ୍ତ୍ରୀମାନଙ୍କର ଅର୍ଥନୈତିକ ଉତ୍ପାଦିକା ଶକ୍ତି ବୃଦ୍ଧି ନ ପାଇଲେ, ସେମାନେ ସମ୍ପୂର୍ଣ୍ଣରୂପେ ସ୍ୱାଧୀନ ହୋଇ ପାରିବେ ନାହିଁ ଏବଂ ତା' ଫଳରେ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପୁରୁଷମାନଙ୍କ ପରି ସମାନ ସୁଯୋଗ ଓ ସୁବିଧା ପାଇପାରିବେ ନାହିଁ। ଅର୍ଥନୈତିକ ଉତ୍ପାଦିକା ଶକ୍ତି ଓ ଅର୍ଥନୈତିକ ସ୍ୱାଧୀନତା ଭିତରେ ଘନିଷ୍ଠ ସମ୍ପର୍କ ରହିଥିବା ସ୍ଥଳେ ପ୍ରଥମ କ୍ଷେତ୍ରରେ ଉପଯୁକ୍ତ କ୍ଷମତା ହାସଲ ନ କରିବା ଯାଏ ଅନ୍ୟ କ୍ଷେତ୍ରରେ ବିଶେଷ ସୁବିଧା ପାଇବା ସମ୍ଭବ ନୁହେଁ। ତେଣୁ ଏହା ଏମାନଙ୍କ ପକ୍ଷରେ ଗୋଟିଏ ପ୍ରଧାନ ସମସ୍ୟା।

ମନୁଷ୍ୟ ସମାଜର ଅଗ୍ରଗତିରେ ଏପରି ଅବସ୍ଥା ଆସେ, ଯେତେବେଳେ କେତେଗୁଡ଼ିଏ ନୀତି ଗ୍ରହଣ କରିବା ଅନିବାର୍ଯ୍ୟ ହୋଇପଡ଼େ। ଯେଉଁ ସମାଜ କିଛିଦିନ ତଳେ କୌଣସି ନୀତିକୁ ଅବହେଳା କରି ଆସୁଥାଏ, ହଠାତ୍ ପରିବର୍ତ୍ତିତ ପରିସ୍ଥିତିରେ ତାକୁ ଗ୍ରହଣ କରିବାକୁ ବାଧ୍ୟ ହୁଏ। ତା' ନ ହେଲେ ତା'ର ଆଉ ଅନ୍ୟ ଉପାୟ ନ ଥାଏ। ଭାରତବର୍ଷରେ କାହିଁକି, ପୃଥିବୀର ଯେକୌଣସି ଦେଶରେ ସ୍ତ୍ରୀ ସ୍ୱାଧୀନତା ନୀତିକୁ ବର୍ତ୍ତମାନ ପୂରାପୂରି ଗ୍ରହଣ କରିବାକୁ ହେବ, ତା' ନ ହେଲେ ସେ ଦେଶର ଉନ୍ନତି ଅସମ୍ଭବ। ଦେଶକୁ ପ୍ରଗତି ପଥରେ ସୁସଂଯୋଜିତ

ଭାବରେ ପରିଚାଳିତ କରାଇବାକୁ ହେଲେ ସ୍ତ୍ରୀଲୋକମାନଙ୍କର ପୂର୍ଣ୍ଣ ସହଯୋଗ ବିନା ସମ୍ଭବ ଏହା ହେବ ନାହିଁ। ତା' ଛଡ଼ା ଆଜିକାଲିର ପରିସ୍ଥିତିରେ ଦେଶର ପ୍ରତ୍ୟେକ ବ୍ୟକ୍ତିକୁ କି ସ୍ତ୍ରୀ, କି ପୁରୁଷ, ଜାତୀୟ ଆଦର୍ଶରେ ଜାଗ୍ରତ କରାଇ ଦେଶର କଲ୍ୟାଣ ସକାଶେ ସାହସର ସହିତ ପ୍ରାଣ ବିନିଯୋଗ କରିବା ପାଇଁ ଶିକ୍ଷା ଦେବା ଉଚିତ। ସମସ୍ତେ ଏ ପ୍ରକାର ଶିକ୍ଷା ନ ପାଇଲେ, ଯେକୌଣସି ବଡ଼ଦେଶ ହେଉନା କାହିଁକି, ଉପରୋକ୍ତ ପ୍ରକାରେ ଦୀକ୍ଷିତ ହୋଇଥିବା ଗୋଟିଏ ଛୋଟିଆଦେଶ ଅତି ସହଜରେ ତାଙ୍କୁ ପରାସ୍ତ କରିଦେବ।

ଗତ ମହାଯୁଦ୍ଧରେ ଇଂଲଣ୍ଡ, ରୁଷିଆ ପ୍ରଭୃତି ଦେଶର ସ୍ତ୍ରୀଲୋକମାନେ ଯାହା କରିଛନ୍ତି, ତାହା ଆମମାନଙ୍କ ପକ୍ଷରେ କଳ୍ପନାତୀତ। ରୁଷିଆରେ ଗୋଟିଏ ଗୋଟିଏ ଅଞ୍ଚଳ ପୂରାପୂରି ପୁରୁଷହୀନ ହୋଇ ପଡ଼ିଥିଲେ ସୁଦ୍ଧା ସ୍ତ୍ରୀ ଲୋକମାନେ ଟ୍ରାକ୍ଟର ଚଳାଇ ଚାଷ କରିବା, ସ୍କୁଲ, ଡାକ୍ତରଖାନା ଚଳାଇବାଠାରୁ ଆରମ୍ଭ କରି ଶତ୍ରୁ ଭିତରେ ରହି ଗରିଲାଯୁଦ୍ଧ ଏବଂ ପ୍ରତ୍ୟକ୍ଷ ଟ୍ୟାଙ୍କ୍ ଓ ଆକାଶ ପଥରେ ବ୍ୟୋମଯାନ ଚଳାଇ ଯୁଦ୍ଧ ଚଳାଇ ପାରିଥିଲେ। ଜନସଂଖ୍ୟାର ଅର୍ଦ୍ଧେକ ସ୍ତ୍ରୀ ଏପରିଭାବରେ ଅତି ପ୍ରୟୋଜନୀୟ କାମ କରିବା ଦ୍ୱାରା ହିଁ ରୁଷ୍‌ଜାତି ଯୁଦ୍ଧରେ ଜୟୀ ହୋଇପାରିଥିଲା। ରୁଷିଆରେ ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ଅତି ଉଚ୍ଚଧରଣର ହୋଇପାରିଥିବାରୁ ଏ ପ୍ରକାର ସହଯୋଗ ସମ୍ଭବ ହୋଇପାରିଲା। ତା' ନ ହୋଇଥିଲେ ହୁଏତ ରୁଷିଆ ଅତି ଦୁର୍ଦ୍ଧର୍ଷ ହିଟଲର ଶକ୍ତି ଆଗରେ ସମ୍ପୂର୍ଣ୍ଣ ଲୋପ ପାଇଯାଇ ଥାଆନ୍ତା।

ଭାରତବର୍ଷକୁ ଯଦି କେହି ବାହ୍ୟଶକ୍ତି ଆକ୍ରମଣ କରେ, ତା' ହେଲେ ତା'ର ଅବସ୍ଥା କ'ଣ ହେବ ? ଯୁଦ୍ଧକ୍ଷେତ୍ରରେ ସୈନ୍ୟମାନେ ପରାସ୍ତ ହେଲା ପରେ ଶତ୍ରୁସୈନ୍ୟ ଗ୍ରାମ, ସହରସବୁ ବିନାବାଧାରେ ଦଖଲ କରିଯିବେ। ବର୍ତ୍ତମାନ ପରିସ୍ଥିତିରେ ଆମ ଦେଶର ନିରକ୍ଷରା, କୁସଂସ୍କାରଗ୍ରସ୍ତା ସ୍ତ୍ରୀ ଜାତି ଏତେ ଦୁର୍ବଳ ଓ ଦୁନିଆ ବିଷୟରେ ଏତେ ଅନଭିଜ୍ଞ ଯେ ଜାତୀୟ ଭାବର ତାତ୍ପର୍ଯ୍ୟ ବା ଦେଶକୁ ଶତ୍ରୁ ହାତରୁ ଉଦ୍ଧାର କରିବାର ମର୍ଯ୍ୟାଦା ବୁଝିବା ତା ପକ୍ଷରେ ଅସମ୍ଭବ। ଅବଶ୍ୟ ଆମ ଦେଶରେ ଅଧିକାଂଶ ପୁରୁଷ ମଧ୍ୟ ଏମାନଙ୍କଠାରୁ ଖୁବ୍ ଉଚ୍ଚରେ ନାହାନ୍ତି। ବରଂ ବର୍ତ୍ତମାନ ବହୁ ଶିକ୍ଷିତ ସ୍ତ୍ରୀ ପୁରୁଷମାନଙ୍କୁ ପଛରେ ପକାଇ ଆଗେଇ ଚାଲିପାରନ୍ତି; ତଥାପି ଏମାନଙ୍କର ସଂଖ୍ୟା କମ୍। ଆଧୁନିକ ଯାନ୍ତ୍ରିକ ଯୁଗରେ ଦେଶର ସମଗ୍ର ଜନତା ବିରୁଦ୍ଧରେହିଁ ଯୁଦ୍ଧ ଘୋଷଣା କରାହୁଏ ; ତେଣୁ ଅର୍ଦ୍ଧେକ ଲୋକ ଏପରି ଭାବରେ ଅଶିକ୍ଷିତ ରହିଗଲେ, ଦେଶ ପକ୍ଷରେ ଏହା ବଡ଼ ମାରାତ୍ମକ। ସାହସର ସହିତ ଆମମାନଙ୍କୁ ସମସ୍ତ ପ୍ରକାର କୁସଂସ୍କାର ବିରୁଦ୍ଧରେ 'ଯୁଦ୍ଧ କରି ସ୍ତ୍ରୀଜାତିକୁ ପୂର୍ଣ୍ଣ ସ୍ୱାଧୀନତା ଦେବାକୁ ହେବ। ତା' ନହେଲେ ଆମମାନଙ୍କୁ ଅନ୍ୟ ଦେଶର ପଦାନତ ହୋଇ ରହିବାକୁ ପଡ଼ିପାରେ। ବର୍ତ୍ତମାନର ଆନ୍ତର୍ଜାତିକ ପରିସ୍ଥିତିରେ

ଏହାଛଡ଼ା ଅନ୍ୟ ଉପାୟ ନାହିଁ, ତେଣୁ ଏହିକ୍ଷଣି ଏହି ସମସ୍ୟାଟି ଆଉ ଯୁକ୍ତିତର୍କ ସଭାର ଆଲୋଚ୍ୟ ବିଷୟବସ୍ତୁ ହୋଇ ରହିନାହିଁ।

ଅନେକେ ସମ୍ପୂର୍ଣ୍ଣ ସ୍ତ୍ରୀ ସ୍ୱାଧୀନତାର ବିରୋଧ କରି କହିବେ ଯେ, ଘରର ସ୍ତ୍ରୀମାନେ ଯଦି ବାହାରେ ପୁରୁଷମାନଙ୍କ ପରି ସବୁପ୍ରକାର କାମ କରିବେ, ତା'ହେଲେ ପାରିବାରିକ ଜୀବନ ଏକାବେଳକେ ଲୋପ ପାଇଯିବ। କିନ୍ତୁ ଏ ପ୍ରକାର ଯୁକ୍ତି ଭିତିହୀନ ବୋଲି ମନେହୁଏ। ପ୍ରଥମତଃ ଆମ ଦେଶର ସ୍ତ୍ରୀ ପରାଧୀନତାଜନିତ ପ୍ରଚଳିତ ପାରିବାରିକ ଜୀବନ ଏତେ ନିମ୍ନ ସ୍ତରରେ ଯେ, ତାକୁ ରଖି କିଛି ଲାଭ ନାହିଁ। ଦେହ ଭିତରେ କାନ୍‌ସର ଘା'କୁ ଘୋଡ଼ାଇ ରଖି ବାହାରେ ନିଜର ସ୍ୱାସ୍ଥ୍ୟ ବିଷୟରେ ବାହାବା' ନେଲା ପରି ଅତି ସଂକୀର୍ଣ୍ଣ ଓ ଦୂଷିତ ପାରିବାରିକ ଅନୁଷ୍ଠାନ କାନ୍‌ସର ଘା' ପରି ସାମାଜିକ ଜୀବନକୁ ନଷ୍ଟ କରି ଦେଉଥିଲାବେଳେ ଆମେ 'ହିନ୍ଦୁ ସଂସ୍କାର' ତଥା 'ଭାରତୀୟ କୃଷ୍ଟି' ନାମରେ ଅଯଥା ବାହାବା' ନେବାରେ ଲାଗିଛୁ। ତା' ଛଡ଼ା ମାନବିକତା ଦୃଷ୍ଟିରୁ ଦେଖିଲେ ମଧ ମନୁଷ୍ୟଙ୍କୁ ଏପରି କଦର୍ଯ୍ୟଭାବରେ ଘର ଭିତରେ ବନ୍ଦ କରି ପୁରାତନ ସଂସ୍କୃତିକୁ ଧରି ରଖିବାରେ ଯେଉଁ ବାହାଦୂରୀ, ସେଥିରେ କିଛି ମୂଲ୍ୟ ନାହିଁ। ଗରିବ ଭିକାରୀ ଦଳ ସୃଷ୍ଟି କରି ଦାନଶୀଳ ଲୋକର ମହତ୍ତ୍ୱ ବଢ଼ାଇବା ଯେପରି ନିଷ୍ଠୁରତା,ସ୍ତ୍ରୀ ଲୋକମାନଙ୍କୁ ଏପରି ହୀନ ଅବସ୍ଥାରେ ଜବରଦସ୍ତ ରଖି ପବିତ୍ର ପାରିବାରିକ ଜୀବନ ଗଢ଼ିବା ସେହିପରି ଗର୍ହିତ।

ପ୍ରକୃତରେ ବିଚାର କରି ଦେଖିଲେ ଜଣାଯିବ ଯେ, ଉପଯୁକ୍ତ ଶିକ୍ଷା ଓ ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତ ସ୍ତ୍ରୀ ଜାତି ସାହାଯ୍ୟରେ ସୁସଙ୍ଗଠିତ ସାମାଜିକ ଜୀବନ ଓ ପ୍ରକୃତ ପାରିବାରିକ ସୁଖ ଉପଭୋଗ କରିହେବ। ଭବିଷ୍ୟତ ଶ୍ରେଣୀହୀନ ସମାଜ ବିଭିନ୍ନ କ୍ଷେତ୍ରରେ ଦକ୍ଷତା ହାସଲ କରିଥିବା ଓ ଉପଯୁକ୍ତ ଶିକ୍ଷା ପାଇଥିବା ନରନାରୀଙ୍କର ସମଷ୍ଟିଗତ ଚେଷ୍ଟା ଦ୍ୱାରା ହିଁ ପରିଚାଳିତ ହେବ। ତେଣୁ ସ୍ତ୍ରୀମାନେ ପୁରୁଷମାନଙ୍କ ପରି ଶିକ୍ଷିତା ଏବଂ ବିଭିନ୍ନ କ୍ଷେତ୍ରରେ ସମାନ ପରିମାଣରେ ଦକ୍ଷତା ହାସଲ କରିପାରିବେ। ସମସ୍ତେ ସବୁପ୍ରକାର କାମ କରିପାରିବାକୁ ଶକ୍ତି ଓ ଅଧିକାର ହାସଲ କରିବେ। ଫଳରେ ସ୍ତ୍ରୀ ମଧ ପୁରୁଷ ପରି ଯେକୌଣସି କାମ କରିପାରିବ। ଯେକୌଣସି ଚାକିରି କରିପାରିବ। ସ୍ୱାମୀ ସ୍ତ୍ରୀ ଉଭୟେ ଘରକାମ ଶେଷ କରି ଛୁଆ ପିଲାଙ୍କୁ ନେଇ ବାହାରିବେ ଅଫିସକୁ କିମ୍ବା କାରଖାନାକୁ। ସେଠାରେ ସୁଦକ୍ଷ ନର୍ସ, ଡାକ୍ତର ଓ ମନସ୍ତତ୍ତ୍ୱବିତ୍‌ଙ୍କ ଦ୍ୱାରା ପରିଚାଳିତ ନାର୍ସରିରେ (ଛୋଟ ପିଲାଙ୍କ ପାଇଁ ସମସ୍ତପ୍ରକାର ଶିକ୍ଷା ଓ ଖେଳର ବ୍ୟବସ୍ଥା ଥିବା ଗୋଟିଏ ପ୍ରକାର ସ୍କୁଲ) ପିଲାଙ୍କୁ ଛାଡ଼ି କାମରେ ବାହାରିବେ। କାମ ଶେଷ ହେଲା ପରେ ପିଲାମାନଙ୍କୁ ନେଇ ଫେରିବେ ଘରକୁ। ତା' ଦ୍ୱାରା ବରଂ ବାପମା'ଙ୍କର ସନ୍ତାନ ସ୍ନେହ ଅଧିକ

ହେବ। କାରଣ ବର୍ତ୍ତମାନ ସାରାଦିନ ମା' ପାଖରେ ପିଲାମାନେ ରହିବା ଦ୍ୱାରା ମା'ମାନେ ବିରକ୍ତ ହୋଇପଡ଼ନ୍ତି ଏବଂ ପିଲାମାନଙ୍କୁ ମାରିବାକୁ ମଧ୍ୟ କୁଣ୍ଠାବୋଧ କରନ୍ତି ନାହିଁ। ଏପରି ବିରକ୍ତିଭାବ ଆସିବା ମଧ୍ୟ ସ୍ୱାଭାବିକ। ତା'ଛଡ଼ା ସେହି ଏକଘେୟାଁ ପରିସ୍ଥିତିରେ ରହି ରହି ପିଲାର ମାନସିକ ଅବସ୍ଥା ମଧ୍ୟ ଭଲ ରହେନା। ପିଲାମାନେ ପ୍ରତିଦିନ କିଛି ସମୟ ବନ୍ଧୁ ପିଲାଙ୍କ ମଧ୍ୟରେ ରହି ଅନେକ ରକମର ଖେଳନା ନେଇ ଖେଳିବା ଦ୍ୱାରା ସେମାନଙ୍କର ମନ ପ୍ରଫୁଲ୍ଲ ରହେ। ସେମାନଙ୍କର ସାମାଜିକ ଓ ବୌଦ୍ଧିକ ଚେତନା ଶକ୍ତି ବଢ଼େ। ଅନ୍ୟମାନଙ୍କ ସହିତ କିପରି ଚଳିବାକୁ ହୁଏ, ସେ ବିଷୟରେ ମୂଳରୁ ଶିକ୍ଷା ପାଆନ୍ତି। ସେମାନଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ବିଷୟରେ ସୁଦକ୍ଷ ଡାକ୍ତର ଓ ମନସ୍ତତ୍ତ୍ୱବିତ୍‌ମାନେ ଯତ୍ନ ନିଅନ୍ତି।

ପ୍ରତ୍ୟେକ ନରନାରୀର ବାପ ମା' ହେବାର ଅଧିକାର ଅଛି; କିନ୍ତୁ ଶିଶୁପାଳନ ଲାଗି ଯେ ବିଶେଷ ପ୍ରକାର ଜ୍ଞାନ ଓ ନିପୁଣତା ଦରକାର, ତାହା ପ୍ରତ୍ୟେକଙ୍କର ନ ଥାଇପାରେ। ପ୍ରତ୍ୟେକ ଶିଶୁର ଲାଳନପାଳନ ଉପରେ ସାରା ସମାଜର ଭବିଷ୍ୟତ ନିର୍ଭର କରେ, ତେଣୁ ଜନ୍ମ ହେଲା ଦିନରୁ ତା'ର ସ୍ୱାସ୍ଥ୍ୟ ଓ ମାନସିକ ବିକାଶ ଲାଗି ବୈଜ୍ଞାନିକ ପ୍ରଣାଳୀରେ ଚେଷ୍ଟା ହେବା ଦରକାର। ତା'ହେଲେ ଯାଇ ଦେଶ ଉନ୍ନତ ଓ ସମାଜ ସୁଗଠିତ ହୋଇପାରିବ। ଯୁବକ, ଯୁବତୀ ବଳିଷ୍ଠ ସାମାଜିକ ପ୍ରେରଣାରେ ଉତ୍ସାହିତ ହୋଇ ଉଠିବେ। ତେଣୁ ଏ ପ୍ରକାର ବ୍ୟବସ୍ଥା ହେଲେ, ବାପ ମା' ଓ ଶିଶୁ ସମସ୍ତେ ଉପକୃତ ହେବେ। ବୋଧହୁଏ କୌଣସି ବାପ ମା' ଏପରି ଯୋଜନାରେ ଅରାଜି ହେବେ ନାହିଁ। ବରଂ ଭାବିପାରନ୍ତି ଯେ ଏତେବଡ଼ ଯୋଜନାକୁ କାର୍ଯ୍ୟରେ ପରିଣତ କରିବା ସହଜ ନୁହେଁ। ଉନ୍ନତ ଦେଶ ମାନଙ୍କରେ ଏହା ସମ୍ଭବ ହୋଇପାରିଛି ଶୁଣିଲେ ହତୋତ୍ସାହ ହେବାର କାରଣ ରହିବ ନାହିଁ। ସ୍ତ୍ରୀ ଶିକ୍ଷା ଓ ସ୍ୱାଧୀନତା ବଢ଼ିବା ସଙ୍ଗେ ସଙ୍ଗେ ଏପ୍ରକାର ବ୍ୟବସ୍ଥା ନିଶ୍ଚୟ ହୋଇପାରିବ। ତା' ନହେଲେ ସମ୍ପୂର୍ଣ୍ଣ ସ୍ତ୍ରୀ ସ୍ୱାଧୀନତା ହୋଇପାରିବ ନାହିଁ। କାମ ପରେ ବାପ ମା' ପିଲାମାନଙ୍କୁ ନେଇ ଘରକୁ ଫେରିଲା ପରେ ପାରିବାରିକ ଜୀବନ କ'ଣ ମଧୁମୟ ହୋଇପାରିବ ନାହିଁ ? ଘରେ ଆବଦ୍ଧ ହୋଇ ରହିଥିବା ସ୍ତ୍ରୀ ଓ ମାଡ଼ ଗାଳି ଖାଇ ଖାଇ ଧୂଳିରେ ବସି ଖେଳୁଥିବା ମଇଳା ଛୁଆମାନଙ୍କୁ ବାହାର କାମରୁ ଫେରିଲା ପରେ ଦେଖିବା ହିଁ କ'ଣ ପବିତ୍ର ପାରିବାରିକ ଜୀବନର ନୈସର୍ଗିକ ଅନୁଭୂତି ?

ସ୍ୱାଧୀନତା ବିରୋଧୀ ଦଳର ଲୋକେ ଆଉ ଗୋଟିଏ ଆପତ୍ତି କରିବସିବେ ଯେ, ଏପରି ପରିସ୍ଥିତି ହେଲେ ସ୍ତ୍ରୀମାନେ ପୁରାପୂରି ସ୍ୱାଧୀନ ହୋଇଯିବେ ଏବଂ ଯେକୌଣସି ମୁହୂର୍ତ୍ତରେ ସେ ଘର ଛାଡ଼ି ଆଉ ଜଣକୁ ବିବାହ କରିପାରେ। ଏପରି ଯୁକ୍ତି କରୁଥିବା ପୁରୁଷମାନେ ସ୍ତ୍ରୀମାନଙ୍କୁ ହୀନ ଚକ୍ଷୁରେ ଦେଖନ୍ତି। ସେମାନଙ୍କୁ

ଜବରଦସ୍ତ ଘରେ ନ ରଖିଲେ, ସେମାନେ ଯେପରି କଯେଦି ପରି ଅପେକ୍ଷା କରି ରହିଛନ୍ତି ଜେଲ ବାହାରକୁ ପଳାଇଯିବା ପାଇଁ। ସ୍ତ୍ରୀସୁଲଭ ସ୍ନେହ ଓ ମନୁଷ୍ୟୋଚିତ ମମତା ପରସ୍ପରକୁ ଯେ ବାନ୍ଧି ରଖିପାରେ, ଏଥିରେ ଏପରି ପୁରୁଷମାନଙ୍କର ବିଶ୍ୱାସ ନାହିଁ। ସାମାନ୍ୟ ସାମାନ୍ୟ କାରଣରୁ ସ୍ୱାମୀ, ପିଲାପିଲିଙ୍କୁ ଛାଡ଼ିଦେଇ ଶିକ୍ଷିତା ସ୍ତ୍ରୀ ଚାଲିଯିବ ବୋଲି ଭାବିବା ଭୁଲ୍। ସ୍ୱାଧୀନତା ଓ ଉପଯୁକ୍ତ ଉଚ୍ଚଶିକ୍ଷା ପାଇଲେ ମନୁଷ୍ୟୋଚିତ ସ୍ନେହ, ପ୍ରେମ, ମମତା ପ୍ରଭୃତି କ'ଣ ଲୋପ ପାଇଯିବା କଥା ? ଜୋରକରି ବାନ୍ଧିରଖିଲେ କ'ଣ ପ୍ରେମ ଉତ୍ତରୋତ୍ତର ବୃଦ୍ଧି ପାଇବ ? ଏ ପ୍ରକାର ଯୁକ୍ତି ପଛରେ ପୁରୁଷର ସ୍ୱାର୍ଥଗତ ସଂକୀର୍ଣ୍ଣତା ଓ ରକ୍ଷଣଶୀଳ ମନୋବୃତ୍ତି କାମ କରୁଛି। ସ୍ତ୍ରୀ ସ୍ୱାଧୀନତା ପାଇଲେ ଓ ପୁରୁଷର ସମାନସ୍କନ୍ଧ ହୋଇଗଲେ ପୁରୁଷ ଇଚ୍ଛାନୁସାରେ ସ୍ତ୍ରୀକୁ ବ୍ୟବହାର କରିପାରିବ ନାହିଁ। ଇଚ୍ଛାମତେ ଏକାଧିକ ସ୍ତ୍ରୀକୁ ଧନଲୋଭ ଦେଖାଇ ନିଜ ସୁବିଧା ଲାଗି କିଣିପାରିବ ନାହିଁ। କେତେକ ଏକାଧିକ ସ୍ତ୍ରୀ ବିବାହ କରିପାରିବେ ନାହିଁ। ବେଶ୍ୟାବୃତ୍ତିକୁ ସାମାଜିକ ଅନୁଷ୍ଠାନରୂପେ ରଖିପାରିବ ନାହିଁ। ଫଳରେ ତା'ର ବ୍ୟଭିଚାରଗତ ସୁଖରେ ବାଧା ଆସିବ। ତେଣୁ ସେ ନାନା ଅସଙ୍ଗତ ଯୁକ୍ତି କରି ସ୍ତ୍ରୀ ପରାଧୀନତାକୁ କାଯମ ରଖିବାକୁ ଚାହୁଁଛି।

ମନୋବିଜ୍ଞାନ ଦୃଷ୍ଟିରୁ ବିଚାର କଲେ ମଧ୍ୟ ଜଣାଯାଏ ଯେ, ସ୍ତ୍ରୀ ଅପେକ୍ଷା ପୁରୁଷ ବେଶି ଉଚ୍ଛୃଙ୍ଖଳ। ପୁରୁଷ ନିଜର ପ୍ରକୃତି ଅନୁସାରେ ସ୍ତ୍ରୀକୁ ବିଚାର କରେ ଏବଂ ନିଜକୁ ଦୋଷ ନ ଦେଇ ଅନ୍ୟ ଉପରେ ଦୋଷଟି ଢାଳିଦେଇ ତାକୁ ଅତ୍ୟଧିକ ଭାବରେ ନିନ୍ଦା କରିବା ଦ୍ୱାରା ବିବେକ ଆଗରେ ନିଜକୁ ଦୋଷଶୂନ୍ୟ ବୋଲି ପ୍ରମାଣିତ କରି ଆନନ୍ଦ ପାଏ।

ସ୍ତ୍ରୀ ସ୍ୱାଧୀନତା ଫଳରେ ସ୍ୱାମୀ ସ୍ତ୍ରୀ ସଂପର୍କ କୋହଳ ହେବା ପରିବର୍ତ୍ତେ ବରଂ ବୃଦ୍ଧି ପାଇବା କଥା। ବ୍ୟଭିଚାର ବଢ଼ିବା ପରିବର୍ତ୍ତେ କମିବାର ଆଶା ବେଶି। ଉପଯୁକ୍ତ ଶିକ୍ଷା ଯୋଗୁଁ ବରଂ ବହୁ ସାମାଜିକ ଦୁର୍ଗୁଣ ଲୋପ ପାଇଯିବ। ମାନସିକ ସାମ୍ୟ, ଆର୍ଥିକ ଉନ୍ନତି ଏବଂ ସନ୍ତାନମାନଙ୍କର ଉପଯୁକ୍ତ ଶିକ୍ଷା ଓ ସ୍ୱାସ୍ଥ୍ୟ ଯୋଗୁଁ ପାରିବାରିକ ଜୀବନ ମଧୁରତର ହୋଇପାରିବ। ଦାମ୍ପତ୍ୟ ସୁଖ ବହୁ ପରିମାଣରେ ବୃଦ୍ଧି ପାଇବ। ପ୍ରକୃତ ପ୍ରେମର ସୃଷ୍ଟି ହେବ ଏବଂ ଉଭୟେ ଉଭୟଙ୍କୁ ନିଜ ନିଜ କାର୍ଯ୍ୟରେ ପ୍ରେରଣା ଓ ଉତ୍ସାହ ଦେବା ଦ୍ୱାରା ପ୍ରେମର ପରିପୂର୍ଣ୍ଣତା ହେବ। ପାରିବାରିକ ଜୀବନ ସୁଖକର ଓ ଦ୍ୱନ୍ଦ୍ୱରହିତ ହେବା ଯୋଗୁଁ ସାମାଜିକ ଜୀବନ ମଧ୍ୟ ମଧୁର ଓ ସୁଖକର ହେବ। ସ୍ୱାସ୍ଥ୍ୟସଂପନ୍ନ ଶିକ୍ଷିତ ଓ ଉଚ୍ଚ ଆଦର୍ଶାଭିଳାଷୀ ବଳିଷ୍ଠ ମନୋଭାବାପନ୍ନ ନରନାରୀଙ୍କଦ୍ୱାରା ହିଁ ପ୍ରକୃତ ମାନବୋଚିତ ସଭ୍ୟତା ଓ ସଂସ୍କୃତି ଗଢ଼ି ଉଠିବ।




# ଆମର ସାମାଜିକ ମୂଲ୍ୟବୋଧ

ସାମାଜିକ ମୂଲ୍ୟବୋଧର ପରିସର ବହୁତ ବ୍ୟାପକ। ମନୁଷ୍ୟର କୌଣସି ସାମାଜିକ ଆଚରଣ ନାହିଁ, ଯାହା ପଛରେ ସମାଜିକ ମୂଲ୍ୟବୋଧର ପ୍ରତିଫଳନ ନାହିଁ। ଅବଶ୍ୟ କେତେକ ଲୋକଙ୍କଠାରେ ଏପରି ଆଚରଣ ରହିଥାଏ ଯାହାକି ଲୋକଲୋଚନର ବାହାରେ। ଏହାର ବ୍ୟାବହାରିକ ପରିସର ବହୁତ ସଂକୀର୍ଣ୍ଣ। ଏହା ପ୍ରାୟତଃ ଗୋପନୀୟ ଭାବରେ ସମ୍ପାଦିତ ହୋଇଥାଏ। ଏହା ବ୍ୟକ୍ତିବିଶେଷର ନିବିଡ଼ ସ୍ୱାର୍ଥଗତ ବ୍ୟବହାର। ଯେଉଁ ବ୍ୟବହାର ଅନ୍ୟ କାହାକୁ ଏପରିକି ନିଜ ପରିବାରର ଲୋକଙ୍କୁ ମଧ୍ୟ ପ୍ରଭାବିତ ନକରେ, ସେଥିରେ କାହାର କିଛି କହିବାର ନ ଥାଏ। ଧରାଯାଉ ଜଣେ ଅତି ନିରୋଳାରେ କିଛି ମଦ ପିଇଲା ଏବଂ ଏହି ମଦ୍ୟପାନ ଯୋଗୁଁ କୌଣସି ପ୍ରକାରର ଅସ୍ୱାଭାବିକ ସାମାଜିକ ପରିସ୍ଥିତି ସୃଷ୍ଟି ହେଲା ନାହିଁ। କିମ୍ୱା ଅନ୍ୟ କୌଣସି ଲୋକ ଏଥିରେ ପ୍ରଭାବିତ ହେଲା ନାହିଁ– ତା'ହେଲେ ତାକୁ ପ୍ରାୟତଃ ସାମାଜିକ ଆଚରଣ ପର୍ଯ୍ୟାୟଭୁକ୍ତ କରାଯାଏ ନାହିଁ। ତଥାପି ତା'ର ମଦ ଅଭ୍ୟାସ ଯୋଗୁ ପରିବାରର ଲୋକେ ଦୁଃଖରେ ଅଶାନ୍ତି ଭୋଗିବେ, ମଦ ବ୍ୟବସାୟୀର ସାମାଜିକ ଜୀବନରେ ନାନା ପ୍ରକାରର ଅସ୍ୱାଭାବିକ ପ୍ରଭାବ ପାଇଁ ପ୍ରକାରାନ୍ତରେ ସେ ଦାୟୀ ହେବ। ତାହା ସାମାଜିକ ଆଚରଣକୁ ପରୋକ୍ଷ ଭାବରେ ପ୍ରଭାବିତ କରୁଛି ବୋଲି ଧରାଯିବ।

ମୋଟାମୋଟି ଭାବରେ ଏହା ସର୍ବସମ୍ମତ ଯେ ସମାଜରେ ମନୁଷ୍ୟ ଯେଉଁ ଆଚରଣ ଦେଖାଏ, ତାହା ସାମାଜିକ ଜୀବନକୁ ପ୍ରଭାବିତ କରୁଥିବାରୁ ଏହାର ଯଥାଯଥ ବିଚାର ସାମାଜିକ ମୂଲ୍ୟବୋଧଦ୍ୱାରା ନିର୍ଦ୍ଧାରିତ ହୋଇଥାଏ। ସମାଜରେ ପ୍ରଚଳିତ ଆଇନ କାନୁନ, ନ୍ୟାୟାଳୟର ବିଚାରପଦ୍ଧତି, ସାମ୍ବିଧାନିକ ନିର୍ଦ୍ଦେଶନା ତଥା ସମସ୍ତ ସାମାଜିକ ରୀତି ନୀତି ପଛରେ ନିର୍ଦ୍ଦିଷ୍ଟ ସାମାଜିକ ମୂଲ୍ୟବୋଧ କାମ କରୁଥାଏ। ସାମାଜିକ ପରିବର୍ତ୍ତନ ସହିତ ଏହି ମୂଲ୍ୟବୋଧ ଭିତ୍ତିକ କାର୍ଯ୍ୟକଳାପ ମଧ୍ୟ ପରିବର୍ତ୍ତନ ହୋଇ ଚାଲିଥାଏ। କେତେକ ସମାଜରେ ଏହା ଧୀର ମନ୍ଥର ଗତିରେ ପରିବର୍ତ୍ତନଶୀଳ ପ୍ରକ୍ରିୟା ଭିତର ନେଇ ଗତି କରୁଥାଏ। ଆଉ କେତେକ ଦେଶରେ ପୁରାତନ ଯୁଗରୁ ପ୍ରଚଳିତ ମୂଲ୍ୟବୋଧଜନିତ ଅମାନବିକ, ଅନାଚାର, ଅତ୍ୟାଚାର ଓ ପ୍ରଚଳିତ ଆଇନଗତ ଅବିଚାର ସହିତ ନୂତନ ଯୁଗର ପରିବର୍ତ୍ତିତ ଚିନ୍ତାଧାରା ଯେଉଁ ଦ୍ୱନ୍ଦ୍ୱଭାବ ସଂଘର୍ଷ ସୃଷ୍ଟି କରେ, ତା'ଫଳରେ ବିପ୍ଳବାତ୍ମକ ପରିବର୍ତ୍ତନ ଅତି ଦ୍ରୁତ ଗତିରେ ଦେଖାଦିଏ। ପୁରୁଣା ସମାଜ ନୂତନ ଯୁଗର ଆଶା ଆକାଂକ୍ଷାକୁ ପୂରଣ ନକରି ଭୁଶୁଡ଼ିପଡ଼େ। ନୂଆ ଆଇନକାନୁନ ନୂତନ ଦିଗ୍‌ଦର୍ଶନ ସୃଷ୍ଟି କରେ ; କିନ୍ତୁ ପ୍ରତ୍ୟେକ ରାଜନୈତିକ ବିପ୍ଳବ ପରେ ଯେ ଠିକ୍ ଠିକ୍ ଭାବରେ ନୂତନ ଦିଗ୍‌ଦର୍ଶନ ତଥା ସାମାଜିକ ମୂଲ୍ୟବୋଧ ଦେଶରେ ପ୍ରତିଫଳିତ ହୋଇଯାଏ ତାହା ନୁହେଁ। ଅନେକ ସ୍ଥଳରେ ଯେଉଁମାନେ ବିପ୍ଳବର ନେତୃତ୍ୱ ନେଇଥାଆନ୍ତି ସେମାନେ ସମାଜର ଏହି ନୂତନ ଆଶା ଆକାଂକ୍ଷାକୁ ପ୍ରତାରିତ କରିବାରେ ଦେଖାଯାଏ। କିଛି କିଛି ନୂତନ ପରିବର୍ତ୍ତନ ନିଶ୍ଚିତ ଭାବରେ ହୋଇଥାଏ ; କିନ୍ତୁ ଯେପରି ଭାବରେ

ବଳିଷ୍ଠ ସାମାଜିକ ମୂଲବୋଧ ପ୍ରତିଷ୍ଠିତ ହେବା କଥା ତାହା ଏହି ନେତାମାନଙ୍କ ଯୋଗୁହିଁ ସମ୍ଭବ ହୋଇପାରେ ନାହିଁ। ବିପ୍ଳବୀମାନେ ପୁରୁଣା ସମାଜର କେତେକ ନ୍ୟସ୍ତସ୍ୱାର୍ଥଗତ ଲୋଭନୀୟ ଆଚରଣକୁ ଛାଡ଼ିପାରନ୍ତି ନାହିଁ। କାରଣ ତାହା ସେମାନଙ୍କୁ ସମାଜରେ ପ୍ରତିଷ୍ଠିତ କରିବାରେ ସାହାଯ୍ୟ କରେ। ଫଳରେ ବିପ୍ଳବର ଲକ୍ଷ୍ୟ ପ୍ରତାରିତ ହୁଏ ଏବଂ ଏମାନେ କ୍ରମେ ସୁବିଧାବାଦୀ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀରେ ପରିଣତ ହୋଇଯାଆନ୍ତି। ଯେଉଁ ନୂତନ ସାମାଜିକ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ବିପ୍ଳବ ଦେଖାଦେଇଥାଏ, ତାହା ଶେଷରେ ଏମାନଙ୍କଦ୍ୱାରା ଆଂଶିକ ବା ଅତ୍ୟଧିକ ପରିମାଣରେ ପ୍ରତାରିତ ହୋଇଯାଏ। ନୂତନ ସାମାଜିକ ମୂଲ୍ୟବୋଧ ସାମ୍ବିଧାନିକ ନିର୍ଦ୍ଦେଶନାରେ ସ୍ଥାନ ପାଇଲେ ସୁଦ୍ଧା ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ତାହା ବିପର୍ଯ୍ୟସ୍ତ ଓ ବିକୃତ ହୋଇଯାଏ।

ଫ୍ରାନ୍ସ, ରୁଷ ପ୍ରଭୃତି ଦେଶରେ ସମ୍ପୂର୍ଣ୍ଣ ବିପ୍ଳବ ଦେଖାଦେଇଥିଲେ ସୁଦ୍ଧା ଏହାର ନୂତନ ବଳିଷ୍ଠ ଦିଗ୍‌ଦର୍ଶନ ବହୁପରିମାଣରେ ପ୍ରତିହତ ହୋଇଯାଇଥିଲା। ଆମ ଦେଶରେ ବ୍ରିଟିଶ୍ ଶାସନପରେ ଯେଉଁ ସ୍ୱାଧୀନତା ହେଲା, ତାହାକୁ ଭାରତୀୟ ନେତାମାନେ ବିପ୍ଳବ ବୋଲି କହୁଥିଲେ ମଧ୍ୟ ଏହା ପ୍ରକୃତରେ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିବାରେ ସକ୍ଷମ ହୋଇନାହିଁ। ସମ୍ପୂର୍ଣ୍ଣ କ୍ରାନ୍ତିକାରୀ ପରିବର୍ତ୍ତନ ସ୍ଥାନରେ କ୍ଷମତାର ହସ୍ତାନ୍ତର ପଦ୍ଧତି ଯୋଗୁଁ ବହୁତ ପ୍ରକାରର ନ୍ୟସ୍ତ ସ୍ୱାର୍ଥଗତ ଆଚରଣ ରହିଗଲା। ସାମ୍ବିଧାନିକ ଓ ଆଇନଗତ ସିଦ୍ଧାନ୍ତରେ କେତେକ ଯୁଗାନ୍ତକାରୀ ପରିବର୍ତ୍ତନର ରୂପରେଖ ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ ସୁବିଧାବାଦୀ ନେତୃତ୍ୱ ଓ ଔପନିବେଶିକ ଅମଲାତାନ୍ତ୍ରିକ ସଂସ୍ଥାର ଅନିୟନ୍ତ୍ରିତ କ୍ଷମତା ଯୋଗୁଁ ନୂତନ ଯୁଗାନ୍ତକାରୀ ସାମାଜିକ ଓ ଅର୍ଥନୈତିକ ମୂଲ୍ୟବୋଧର ପ୍ରତିଷ୍ଠା ସମ୍ଭବ ହୋଇପାରିଲା ନାହିଁ। ଧଳା ଲୋକଙ୍କ ଜାଗାରେ ଭାରତୀୟମାନେ ଠିକ୍ ସେହିପରି ଭାବରେ ଶାସନ କରିବାରେ ଲାଗିଲେ। ଦିଲ୍ଲୀ ରାଜଭବନରେ ମହାତ୍ମାଗାନ୍ଧୀଙ୍କର ସ୍ୱପ୍ନ ଅନୁଯାୟୀ ଗୋଟିଏ ହରିଜନ ସ୍ତ୍ରୀଲୋକ ସ୍ଥାନରେ ଭାରତର ରାଷ୍ଟ୍ରପତି ଠିକ୍ ଆଗପରି ସମ୍ରାଟ ହୋଇ ରହିଲେ। ସେହି ରାଜକୀୟ ଆଡ଼ମ୍ବର ଚାରିଆଡ଼େ ଚାଲୁ ରହିଲା। ଏସବୁ ଗାଦୀରେ ଇଂରେଜମାନଙ୍କ ପରି ବସି ରାଜତ୍ୱ କରିବାର ଅବଦମିତ ସ୍ୱପ୍ନ ଭାରତୀୟ ନେତାମାନଙ୍କଠାରେ ପ୍ରତିଫଳିତ ହେଲା।

ଭାରତର ସମ୍ବିଧାନ ଗୋଟିଏ ଉତ୍‌କୃଷ୍ଟ ଧରଣର ନୂତନ ଦିଗ୍‌ଦର୍ଶନ ନିର୍ଦ୍ଧାରିତ ଲିପିବଦ୍ଧ ଶାସ୍ତ୍ର ବୋଲି ଧରାଯାଏ ; କିନ୍ତୁ ଏଥିରେ ନୂତନ ସାମାଜିକ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ଯେଉଁ ମୌଳିକ ନୀତି ନିୟମ ନିର୍ଦ୍ଧାରିତ ହୋଇଛି, ତାହା କାର୍ଯ୍ୟରେ ପରିଣତ କରିବାରେ ରାଜନୈତିକ ନେତାମାନେ ଉଦ୍ୟମ ମଧ୍ୟ କଲେ ନାହିଁ। ଏଥିରେ ଅମଲାତାନ୍ତ୍ରିକ ସଂସ୍ଥା ସମ୍ପୂର୍ଣ୍ଣରୂପେ ସାହାଯ୍ୟ କଲା। ବରଂ ଏହାକୁ ବିପରୀତମାର୍ଗୀ କରିବାରେ ଏମାନେ ସିଦ୍ଧହସ୍ତ ହୋଇଗଲେ। ଗଣତାନ୍ତ୍ରିକ ନିର୍ବାଚନ କେବଳ କେତେ ବର୍ଷରେ ଥରେ ଲୋକପ୍ରତିନିଧି ବାଛିବାରେ ସୀମିତ ରହିଲା। କେତେକ ରାଜନୈତିକ ନେତାଙ୍କ ସ୍ୱାର୍ଥରେ ବାଧା ଆଣିଲେ ତାହା ମଧ୍ୟ ବାତିଲ ହୋଇଗଲା। ଏହି ନିର୍ବାଚନ ଛଡ଼ା ଆଉ କୌଣସି କ୍ଷେତ୍ରରେ ଗଣତାନ୍ତ୍ରିକ ପଦ୍ଧତିର ଆବଶ୍ୟକତା ରହିଲା ନାହିଁ। ରାଜନୈତିକ ଦଳ ଭିତରେ

ନେତା ନିର୍ବାଚନ ନ ହୋଇ ମନୋନୟନ କାର୍ଯ୍ୟ ବଳବତ୍ତର ରହିଲା । ରାଜାଙ୍କର ଅନୁଗତ ଲୋକେହିଁ ସବୁ କାର୍ଯ୍ୟପାଇଁ ମନୋନୀତ ହେଲେ । ବହୁକ୍ଷେତ୍ରରେ ଗଣତାନ୍ତ୍ରିକ ନିର୍ବାଚନ ପ୍ରକ୍ରିୟାକୁ ବନ୍ଦ କରିଦିଆଗଲା । ଫଳରେ କ୍ଷମତା କେତେକ ମୁଷ୍ଟିମେୟ ଲୋକଙ୍କ ହାତରେ କେନ୍ଦ୍ରୀଭୂତ ହୋଇରହିଲା । ଦୈନନ୍ଦିନ ଶାସନ ଓ ବ୍ୟବହାରରେ ସାମନ୍ତବାଦୀ ଔଦ୍ଧତ୍ୟ ବଳବତ୍ତର ରହିଲା । ସଭାରେ ଏହିମାନେହିଁ କହିବେ । କେହି ସେମାନଙ୍କର ଚିନ୍ତାଧାରାକୁ ସଭାରେ ଆହ୍ୱାନ କଲେ–ଦଳୀୟ ଗୁଣ୍ଡାମାନେ ସ୍ୱେଚ୍ଛାସେବୀ ଭାବରେ ମଞ୍ଚ ପାଖରେ ଥାଆନ୍ତି 'ଏମାନଙ୍କର ଡାକବାଜି ଯନ୍ତ୍ରକୁ ବନ୍ଦ କରିବା ପାଇଁ ଏବଂ ସେମାନଙ୍କୁ ସଂପୂର୍ଣ୍ଣଭାବରେ ନିୟନ୍ତ୍ରଣ କରିବା ପାଇଁ ।

ଶାସନ ଗୋଷ୍ଠୀ ସମସ୍ତଙ୍କୁ ହତାଦର କରିବାରେ ସିଦ୍ଧହସ୍ତ । ଅଫିସର ଶାସନକର୍ତ୍ତା, ସ୍କୁଲରେ ଶିକ୍ଷକ, କଲେଜରେ ଅଧ୍ୟାପକ, ଡାକ୍ତରଖାନାରେ ଡାକ୍ତର, ଘରେ ସମସ୍ତ କ୍ଷମତାବାନ ବାପ ବା ସ୍ୱାମୀ ଯୁଗଯୁଗଧରି ଚଳିଆସୁଥିବା ସାମନ୍ତବାଦୀ ଔଦ୍ଧତ୍ୟକୁ ବଜାୟ ରଖିଲେ । ଫଳରେ ଗଣତାନ୍ତ୍ରିକ ମୂଲ୍ୟବୋଧ ସମାଜରେ ପ୍ରତିଫଳିତ ହୋଇପାରିଲା ନାହିଁ। ଦେଶର ଶାସକ ଶ୍ରେଣୀ ଓ ଶିକ୍ଷିତବର୍ଗଙ୍କୁ ଦେଶର ସଂଖ୍ୟାଧିକ ଜନତାଙ୍କୁ ନିୟନ୍ତ୍ରଣ କରିବାରେ ଏହା ସାହାଯ୍ୟ କଲା । ଗଣତାନ୍ତ୍ରିକ ବ୍ୟବହାର ଜାଗାରେ ବ୍ୟକ୍ତିପ୍ରାଧାନ୍ୟ ଔଦ୍ଧତ୍ୟ ଆମର ସାମାଜିକ ମୂଲ୍ୟବୋଧର ମୁଖ୍ୟ ଭିତ୍ତି ହୋଇ ରହିଗଲା । ଯେଉଁମାନେ ଏହାର ଶିକାର ହେଲେ ସେମାନେ ମଧ ଏହାର ପ୍ରତିରୋଧ କରିପାରିଲେ ନାହିଁ। କାରଣ ଆଜି ଯେ ଏହାର ଶିକାର କାଲି ଦି'ଅକ୍ଷର ପାଠ ପଢ଼ିଦେଲେ ଚପରାଶି, ଶିକ୍ଷକ, ଅଫିସର କିମ୍ବା ଓକିଲ, ଡାକ୍ତର ହୋଇ ଏ ପ୍ରକାର ବ୍ୟକ୍ତିପ୍ରଧାନ୍ୟ ଔଦ୍ଧତ୍ୟ ଦେଖାଇବାର ସୁଯୋଗକୁ ସେ ଅପେକ୍ଷା କରୁଥାଏ ।

ଶାସନ କ୍ଷେତ୍ରରେ ଯେପରି ଶିକ୍ଷା କ୍ଷେତ୍ରରେ ମଧ ସେହିପରି ଅଗଣତାନ୍ତ୍ରିକ ଏକମୁହାଁ ଆଦେଶଗତ ବ୍ୟବହାର ପରିଲକ୍ଷିତ ହେଉଛି ଅଥଚ ବର୍ତ୍ତମାନ ଯୁଗର ଶିକ୍ଷାପଦ୍ଧତି ପାରସ୍ପରିକ ପ୍ରଶ୍ନୋତ୍ତର ଭିତ୍ତିକ ବୈଜ୍ଞାନିକ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ଫଳରେ ଆମର ପାଠ୍ୟକ୍ରମ ଚର୍ବିତଚର୍ବଣ ମୁଖସ୍ତ ଶିକ୍ଷାରେ ପରିଣତ ହୋଇଯାଇଛି। ଉଚ୍ଚଶିକ୍ଷିତ ବିଜ୍ଞାନୀ ଯୁକ୍ତିଯୁକ୍ତ ବିଚାରଧାରା ପରିବର୍ତ୍ତେ ନାନାପ୍ରକାରର ଅଯୌକ୍ତିକ କୁସଂସ୍କାରମୂଳକ କାର୍ଯ୍ୟରେ ଲିପ୍ତ ରହୁଛି । ଅବୈଜ୍ଞାନିକ ଶିକ୍ଷାଦାନ ପଦ୍ଧତି ଆମର ବୁଦ୍ଧି ଓ ବିବେକକୁ ନିଷ୍କ୍ରିୟ କରି ଦେଉଛି । ତେଣୁ ବୈଜ୍ଞାନିକ ଦୃଷ୍ଟିକୋଣ ଓ ଯୁକ୍ତିଯୁକ୍ତ ବିଚାରପଦ୍ଧତି ସମାଜରେ ପ୍ରଚଳିତ ହୋଇପାରିଲା ନାହିଁ। ବହୁ ମଧ୍ୟଯୁଗୀୟ କୁସଂସ୍କାରଗତ ମୂଲ୍ୟବୋଧ ହାସ୍ୟାସ୍ପଦ ଭାବରେ ଚାଲୁରହିଲା । ମନ୍ଦିର, ମସ୍‌ଜିଦ ପରି ଅବାନ୍ତର ପ୍ରଶ୍ନ ଜାତୀୟ ସମସ୍ୟାରେ ପରିଣତ ହେଲା । କେତେକ ନ୍ୟସ୍ତସ୍ୱାର୍ଥ ବାବାଜୀ ସରକାରୀ ସ୍ୱାମୀଜୀ ଭାବରେ ଅଖଣ୍ଡ କ୍ଷମତା ବିସ୍ତାର କଲେ । ସେମାନଙ୍କ ପରାମର୍ଶରେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ପ୍ରଭୃତି ସମାଜର ନେତାମାନେ କେତେବେଳେ ମନ୍ଦିରରେ ଯାଇ ମୁଣ୍ଡ ଲଣ୍ଡା କଲେଣି ତ, ଆଉ କେବେ କାହାର ଝୁଲୁଥିବା ପାଦ ପାଖରେ ନିଜ ମୁଣ୍ଡ ଲଗାଇଲେଣି; ବର୍ଷା ପାଇଁ ଘିଅପୋଡ଼ା ଯଜ୍ଞର ସେମାନେ ପୁରୋଧା ହେଲେଣି । ଏହିପରି ବହୁ

ଅବିବେକୀ କାର୍ଯ୍ୟ ସମାଜରେ ଦୃଢ଼ୀଭୂତ ହେବାରେ ଲାଗିଛି। ଏହା କିନ୍ତୁ ତରୁଣ ସମାଜରେ ନାନାପ୍ରକାର ଜ୍ୱାଳାତ୍ମକ ମନୋଭାବ ସୃଷ୍ଟି କରିବାରେ ଲାଗିଛି। ଫଳରେ ଜନତାର ନୂତନ ଯୁଗୋପଯୋଗୀ ବିରାଟ ସୃଜନ ଶୀଳତାର ପରିପ୍ରକାଶ ସମ୍ଭବ ହୋଇ ପାରୁନାହିଁ।

ଆମ ସମ୍ବିଧାନରେ ନିର୍ଦ୍ଦେଶନା ଥିଲା ଯେ ଦଶବର୍ଷ ଭିତରେ ସବୁଦେଶରେ ସାର୍ବଜନୀନ ପ୍ରାଥମିକ ଶିକ୍ଷା ପ୍ରଚଳିତ ହେବ। ସମସ୍ତେ ସାକ୍ଷର ହେବେ ; କିନ୍ତୁ କୌଣସି ସରକାର ଏଥିରେ ଆନ୍ତରିକତା ପ୍ରଦର୍ଶନ କଲେ ନାହିଁ। କାରଣ ସରକାରୀ ଅଫିସର ଓ ନେତାମାନଙ୍କର ପିଲାଙ୍କ ପାଇଁ ଅଳ୍ପସଂଖ୍ୟକ ଖର୍ଚ୍ଚବହୁଳ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା ହେଲେ ଯଥେଷ୍ଟ। ଗାଁଗଣ୍ଡାରେ ସମସ୍ତେ ଶିକ୍ଷା ପାଇଲେ ଏମାନଙ୍କର କ୍ଷତି ଛଡ଼ା ଲାଭ ନାହିଁ। ଫଳରେ ପ୍ରାଥମିକ ଶିକ୍ଷା ସାର୍ବଜନୀନ ହୋଇପାରୁନାହିଁ। ଅଥଚ ଭାରତରେ ବହୁ ବିଶ୍ୱବିଦ୍ୟାଳୟ ଥିବା ସତ୍ତ୍ୱେ ହଜାର ହଜାର କୋଟି ଟଙ୍କା ଖର୍ଚ୍ଚରେ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମ୍ଭବ ହେଲା। ବଡ଼ ବଡ଼ ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା କରି ଖୁବ୍ ମେଧାବୀ ଛାତ୍ରଙ୍କୁ ସେଠାରେ ଶିକ୍ଷା ଦେଇ ବାହାର ଦେଶକୁ ପଠାଇବାରେ ଆମର ସମ୍ବଳର ଅଭାବ ହେଲା ନାହିଁ। କାରଣ ଏମାନଙ୍କ ଭିତରୁ ଅଧିକାଂଶ ଏହି ଶାସକ ଶ୍ରେଣୀଙ୍କର ସନ୍ତାନ। ତେଣୁ ସମ୍ବିଧାନରେ ଥିବା ଶିକ୍ଷିତ ସମାଜ ଗଠନର ଲକ୍ଷ୍ୟକୁ ପ୍ରତିହତ କରାହେଲା। ଅଳ୍ପ ଶିକ୍ଷିତ ଲୋକେ ସଂଖ୍ୟାଧିକ ଅଶିକ୍ଷିତ ଲୋକଙ୍କ ଉପରେ ଆଧିପତ୍ୟ କରିବାର ସୁବିଧା ବଜାୟ ରଖାହେଲା। ଏହା ଧାରାବାହିକ ଭାବରେ ସବୁ କ୍ଷେତ୍ରରେ ଦେଖାଦେଲା। ତେଣୁ ସମାଜବାଦୀ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ସଂପୂର୍ଣ୍ଣରୂପେ ବିକୃତ କରି ଦିଆଗଲା– ଶିକ୍ଷା କ୍ଷେତ୍ରରେ ପ୍ରଚଳିତ ବ୍ୟବଧାନ ନୀତିକୁ ଦୃଢ଼ୀଭୂତ କରାହେଲା।

ଜାତି ବର୍ଣ୍ଣଗତ, ସାଂପ୍ରଦାୟିକ ଓ ଧର୍ମଗତ ବିଭେଦକୁ ସାମାଜିକ କ୍ଷେତ୍ରରେ ପ୍ରଶ୍ରୟ ନ ଦେବା ଲାଗି ଆମର ବଳିଷ୍ଠ ଆଦର୍ଶ ଘୋଷିତ ହୋଇଥିଲା ; କିନ୍ତୁ ବର୍ତ୍ତମାନ ତା'ର ସମ୍ପୂର୍ଣ୍ଣ ବିପରୀତ ଭାବଧାରାକୁ ଶାସନ ଓ ରାଜନୈତିକ କ୍ଷେତ୍ରର କ୍ରମେ ବଳବତ୍ତର କରାହେଲା। ହରିଜନ ଆଦିବାସୀ, ବ୍ରାହ୍ମଣ, ଚଷା, ବଢ଼େଇ, ହିନ୍ଦୁ, ମୁସଲମାନ ଇତ୍ୟାଦି ଗୋଷ୍ଠୀଗତ ବିଭେଦକୁ ରାଜନୈତିକ ସ୍ତରରେ କେବଳ ଭୋଟ ପାଇଁ ଦୃଢ଼ୀଭୂତ କରାଯାଉଛି। ସମ୍ବିଧାନରେ ଯୁଗଯୁଗ ଧରି ଦଳିତ ହରିଜନ ଓ ଆଦିବାସୀଙ୍କର ସାମାଜିକ ମର୍ଯ୍ୟାଦା ବଢ଼ାଇବା ଲାଗି ଦଶବର୍ଷ ପାଇଁ କେତେକ ସ୍ୱତନ୍ତ୍ର ସୁବିଧା ଦିଆଯାଇଥିଲା। ବର୍ତ୍ତମାନ ତାହା ନ୍ୟସ୍ତସ୍ୱାର୍ଥଗତ ସ୍ଥାୟୀ ନୀତିରେ ପରିଣତ ହେଲା। ଜାତି ନାମରେ ଦଳିତ ଶ୍ରେଣୀର କିଛି ଶିକ୍ଷିତ ଓ ବୁଦ୍ଧିଜୀବୀଙ୍କୁ ଚାକିରି ଓ ଲୋକପ୍ରତିନିଧିତ୍ୱର ସୁବିଧା କରିନେଇ ସେମାନଙ୍କ ଜରିଆରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସଂଖ୍ୟାଧିକ ଲୋକଙ୍କୁ ନିୟନ୍ତ୍ରଣ କରାହେଲା। ଏହି କେତେକ ଲୋକେ ବଂଶାନୁକ୍ରମେ ସୁବିଧା ଉପଭୋଗ କଲେ ; କିନ୍ତୁ ଏମାନଙ୍କ ତଳେ ଥିବା ଗରିବ ସେହିପରି ଗରିବ ରହିଗଲେ। ଏମାନଙ୍କ ପାଇଁ ପ୍ରାଥମିକ ଶିକ୍ଷା ସମ୍ଭବ ହେଲାନାହିଁ। କାଁ ଭାଁ ଜଣେ ଦି'ଜଣ ଶିକ୍ଷିତ ହେଲାପରେ ସେମାନଙ୍କୁ ଲାଞ୍ଚଦେଲା ପରି ଚାକିରି ଦେଇ କରାୟତ୍ତ କରାହେଲା। ଯେଉଁ ମେଧାବୀ ହରିଜନ

ଆଦିବାସୀ ଛାତ୍ର ଛାତ୍ରୀ ନିଜ ବୁଦ୍ଧିବଳରେ ସମାଜରେ ପ୍ରତିଷ୍ଠାଲାଭ କଲେ ସେମାନଙ୍କ ମନରେ ସବୁବେଳେ ହୀନମନ୍ୟତା କାମକଲା। ସମାଜ ମଧ୍ୟ ଏମାନଙ୍କୁ ସୁବିଧାବାଦୀ ଓ ବୁଦ୍ଧିହୀନ ନାଗରିକ ହିସାବରେ ଦେଖିଲା। ଫଳରେ ଏହି ବର୍ଣ୍ଣଗତ ବିଭିନ୍ନତା ବଳବତ୍ତର ରହିଲା। ବର୍ତ୍ତମାନ ମଣ୍ଡଳ ରିପୋର୍ଟ କାର୍ଯ୍ୟକାରୀ ହେଲା ପରେ ସମାଜରେ ବର୍ତ୍ତମାନ ଖୋଜାଚାଲିଛି କିଏ କେଉଁ ଜାତି ଓ ବର୍ଣ୍ଣର ଲୋକ। ଲୋକେ କ୍ରମେ ଭୁଲିଯାଉଥିବା ଜାତି ବର୍ଣ୍ଣ ସଂଜ୍ଞା ପୁଣି ରାଜନୈତିକ ମର୍ଯ୍ୟାଦା ପାଇଲା। ସେହିପରି ହିନ୍ଦୁ ମୁସଲମାନ ଭିତରେ ଥିବା ଧର୍ମଗତ ବିଭେଦକୁ ଉତ୍ତେଜିତ କରି ରଖାଯାଉଛି। ଏସବୁ କେବଳ ଭୋଟ ପାଇଁ। ଅଥଚ ସମସ୍ତ ଭାରତୀୟ ନାଗରିକଙ୍କ ପାଇଁ ସମାନ ଧରଣର ନାଗରିକ ଆଇନ ହୋଇ ପାରୁନାହିଁ। ସବୁବେଳେ କେବଳ ସଂଖ୍ୟାଲଘୁ ଓ ସଂଖ୍ୟାଧିକ ସାଂପ୍ରଦାୟିକ ଆଲୋଚନା ଚାଲୁ ରହିଲା। ଫଳରେ ଭାରତୀୟ ନାଗରିକତ୍ୱର ଉନ୍ନତ ମୂଲ୍ୟବୋଧ ଚେତନାକୁ ଦୁର୍ବଳ କରିଦିଆଗଲା। ଏହା ଜାତୀୟ ସଂହତି ଓ ଅଖଣ୍ଡତା ଦିଗରେ ଗୋଟିଏ ଆତ୍ମଘାତୀ ପ୍ରକ୍ରିୟା ବୋଲି ଅଭିହିତ ହେଲେ ମଧ୍ୟ ମୁଷ୍ଟିମେୟ ଶାସକ ଗୋଷ୍ଠୀ ତଥା ସମସ୍ତ ରାଜନୈତିକ ଦଳ ଏହାକୁ ବଜାୟ ରଖିଲେ।

କେନ୍ଦ୍ରୀଭୂତ ସ୍ୱେଚ୍ଛାଚାରୀ ଶାସନ ଯୋଗୁ ଜାତୀୟ ସଂହତିଗତ ମୂଲ୍ୟବୋଧ ଦୃଢ଼ୀଭୂତ ହୋଇ ପାରୁନାହିଁ। ଗୋଟିଏ ରାଜନୈତିକ ଦଳର ବଂଶଗତ ଶାସନ ଯୋଗୁଁ ସମସ୍ତ କ୍ଷମତା ଜଣେ ଜଣେ ବ୍ୟକ୍ତିଙ୍କ ହାତରେ ଠୁଳ ହୋଇଗଲା। ମନ୍ତ୍ରିମଣ୍ଡଳର ବିଚାର ଆଲୋଚନା ପ୍ରହସନରେ ପରିଣତ ହେଲା। ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ଯାହା କହିଲେ, ତାହା ଧ୍ରୁବ ସତ୍ୟ ବୋଲି ଧରାହେଲା। ରାଜ୍ୟମାନେ ପ୍ରଧାନମନ୍ତ୍ରୀ ଓ ଦିଲ୍ଲୀ ଶାସନର କରଦ ରାଜ୍ୟରେ ପରିଣତ ହୋଇଗଲେ। ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଦିଲ୍ଲୀ ଦରବାରର ସୁବେଦାର ରୂପେ କାର୍ଯ୍ୟ କଲେ। ପ୍ରଧାନମନ୍ତ୍ରୀଙ୍କ ମନୋନୀତ ମୁଖ୍ୟମନ୍ତ୍ରୀମାନେ ରାଜ୍ୟ ବିଧାନସଭାକୁ ହେୟ ମନେ କଲେ। ବିଧାନସଭାର ସବୁ ସଦସ୍ୟ ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ ଗଲେ ମଧ୍ୟ ସେ ମୁଖ୍ୟମନ୍ତ୍ରୀ ରହିପାରିବେ ବୋଲି ମୁଖ୍ୟମନ୍ତ୍ରୀମାନେ ଘୋଷଣା କଲେ। ବିଧାନସଭା ସଭ୍ୟମାନେ ନ୍ୟସ୍ତସ୍ୱାର୍ଥରେ ଏପରି ଜଡ଼ିତ ହୋଇ ରହିଲେ ଯେ ଏହାର ପ୍ରତିରୋଧ ସମ୍ଭବ ହେଲାନାହିଁ। ପ୍ରଧାନ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କର ସ୍ୱେଚ୍ଛାଚାରୀ ଶାସନକୁ ସମସ୍ତେ ମୁଣ୍ଡ ପୋତି ସହିନେଲେ। ଫଳରେ ଗଣତାନ୍ତ୍ରିକ ମୂଲ୍ୟବୋଧ ସହିତ ଜାତୀୟ ସଂହତିଗତ ମୂଲ୍ୟବୋଧ ମଧ୍ୟ କ୍ରମେ ଦୁର୍ବଳ ହୋଇପଡ଼ିଲା। ଶାସକବର୍ଗଙ୍କର ସାମନ୍ତବାଦୀ ଔଦ୍ଧତ୍ୟ ଦେଶର ପ୍ରଧାନ ମୂଲ୍ୟବୋଧରେ ପରିଣତ ହୋଇଯାଇଛି।

ଶାସକଗୋଷ୍ଠୀ କୌଣସି ଅର୍ଥନୈତିକ ହେର୍‌ଫେର୍ ଓ ଦୁର୍ନୀତି ପାଇଁ ଉତ୍ତରଦାୟୀ ହେଲେ ନାହିଁ। ଖବରକାଗଜ ଯେତେ ନିର୍ଲ୍ଲଜକର ବିବରଣୀ ପ୍ରକାଶ କଲେ ସୁଦ୍ଧା ଏମାନେ ଏତେ ଶକ୍ତିଶାଳୀ ଏବଂ ଲୋକପ୍ରତିନିଧିମାନେ ଏପରି ସ୍ୱାର୍ଥଗତ ଜଞ୍ଜାଳରେ ଲିପ୍ତ ରହିଲେ ଯେ ସ୍ୱେଚ୍ଛାଚାରୀ ଶାସନ ଚାଲୁ ରହିପାରିଲା। ଏମାନଙ୍କ ପାଇଁ ନୀତିନିୟମ, ଆଇନକାନୁନ ଅଲଗା—ବାଛବିଚାର ଅଲଗା। ଦୁର୍ନୀତି ଯେପରି ଏମାନଙ୍କର ଆଇନଗତ ଅଧିକାର। ଓକିଲ, ବିଚାରପତି ଏପରିକି ସାଧାରଣ ବୁଦ୍ଧିଜୀବୀମାନେ ଏହାକୁ ଯେପରି ସମର୍ଥନ

କରିଗଲେ। ଫଳରେ ସାରା ସମାଜରେ ଦୁର୍ନୀତି ବ୍ୟାପିଗଲା। ଜନସାଧାରଣ ନେତାମାନଙ୍କର ଦୁର୍ନୀତିକୁ ଅନୁକରଣ କରିଗଲେ। କୌଣସି କାର୍ଯ୍ୟ ପାଇଁ କେହି ଉତ୍ତରଦାୟୀ ହେଲେ ନାହିଁ। ସରକାରୀ ସଂସ୍ଥାର ଗୋଟିଏ ମୁଖ୍ୟ କର୍ତ୍ତବ୍ୟ ହେଲା ଉଚ୍ଚସ୍ତରରେ ଦୁର୍ନୀତିକୁ ପଦାରେ ନ ପକାଇ ଚାପି ରଖିବା। କାରଣ ଏମାନେ ସମସ୍ତେ ମିଳିମିଶି ଶତକଡ଼ା ନବେ ଭାଗ ଲୋକଙ୍କୁ କରାୟତ୍ତ କରି ରଖିପାରିଛନ୍ତି। ଏମାନଙ୍କର ସ୍ୱାର୍ଥ ଜନତାର ସ୍ୱାର୍ଥଠାରୁ ସଂପୂର୍ଣ୍ଣ ଅଲଗା। ସେମାନଙ୍କର ଦରମା ବଢ଼ିବ – ଦର ବଢ଼ିଲେ ମହଙ୍ଗାଭତ୍ତା ବଢ଼ିବ। ପେନସନ୍ ବଢ଼ିବ ଇତ୍ୟାଦି। ଅଥଚ ଏଣେ ସମାଜବାଦୀ ଆଦର୍ଶ 'ଗରିବି ହଟାଅ' ଏକ ରାଜନୈତିକ ଚାଲବାଜି। ଏ ପ୍ରକାର ଶଠତା ସାଧାରଣ ଜୀବନରେ ବିରାଟ ଅରାଜକତା ସୃଷ୍ଟି କରୁଛି। ଦେଶରେ ନାନାପ୍ରକାରର ବିଶୃଙ୍ଖଳା, ବିଦ୍ରୋହାତ୍ମକ ଖଣ୍ଡଯୁଦ୍ଧ, ସାମାଜିକ ଅତ୍ୟାଚାର ଓ ନିଷ୍ଠୁରତା ଦେଖାଦେଉଛି। ଏପରି ପରିସ୍ଥିତିରେ ସାଂବିଧାନିକ ସାମାଜିକ ନ୍ୟାୟ, ସାମ୍ୟବାଦୀ ନୀତିଗତ ମୂଲ୍ୟବୋଧର ସ୍ଥାନ କେଉଁଠି ?

ସର୍ବଶକ୍ତିମାନ ଏହି ମୁଷ୍ଟିମେୟ ଲୋକଙ୍କ ଦ୍ୱାରା ମଧ୍ୟ ଆମର ସାଂସ୍କୃତିକ ମୂଲ୍ୟବୋଧ ପରିଚାଳିତ ହେବାକୁ ବାଧ୍ୟ। ଏମାନଙ୍କର ମନୋରଞ୍ଜନ ହିଁ ଆମ ପ୍ରତିଭାଶାଳୀ ଶିଳ୍ପୀମାନଙ୍କର ମୁଖ୍ୟ କାମ। ଫଳରେ ଅଧିକାଂଶ ଚଳଚ୍ଚିତ୍ରରେ ଖଣ୍ଡଯୁଦ୍ଧ, ନିଷ୍ଠୁରତା, ନାରୀ ଧର୍ଷଣ ଓ ନିମ୍ନ ଧରଣର ନାରୀ ଚରିତ୍ର ଚିତ୍ରଣ ଓ ଅନ୍ୟାନ୍ୟ ଅପସଂସ୍କୃତିର ଉତ୍ପତ୍ତି। ଧନୀ ପାଶ୍ଚାତ୍ୟ ଦେଶମାନଙ୍କର ଆଚରଣ ଆମେ ବିନାଦ୍ୱିଧାରେ ଗ୍ରହଣ କରି ନେଉଛେ। ପ୍ରଭୂତ ସୌଖୀନ ଜିନିଷ ବିକ୍ରି ପାଇଁ ଅର୍ଦ୍ଧନଗ୍ନ ନାରୀର ଚାତୁରୀପୂର୍ଣ୍ଣ ବିଜ୍ଞାପନ ଆମ ଜାତୀୟ ଦୂରଦର୍ଶନରେ ଅର୍ଥକାରୀ ପ୍ରଦର୍ଶନ। ଆମର ଚଳଚ୍ଚିତ୍ର ଅଭିନେତା ଅଭିନେତ୍ରୀମାନେ ଏହି ମୁଷ୍ଟିମେୟ ଲୋକଙ୍କର ଅର୍ଥରେ ପରିଚାଳିତ। ଫଳରେ 'ଚୋରୀ ମେରା କାମ', 'ଚୋଲି ପିଛେ କ୍ୟା ହେ' ଗୀତ ଓ ଚଳଚ୍ଚିତ୍ର ଆମର ଜନପ୍ରିୟ ସାଂସ୍କୃତିକ ମୂଲ୍ୟବୋଧର ଚରମ ନିଦର୍ଶନ। ମଟର ସାଇକେଲରେ ଯାଉଥିବା ପ୍ରସିଦ୍ଧ ଅଭିନେତା ଜଣେ ବିଶିଷ୍ଟ ଅଭିନେତ୍ରୀ ଦେହରେ ଜାଣିଶୁଣି ମଟର ସାଇକେଲ ଲଗାଇବ। ନାୟିକା ପ୍ରଥମେ ବହୁତ ରାଗିଯିବେ। ତା'ପରେ ସେମାନଙ୍କ ଭିତରେ ପ୍ରେମ ଜମିଉଠିବ। ଫଳରେ ଆମ ସହରମାନଙ୍କରେ ଜାଣିଶୁଣି ଯୁବକମାନେ ଯୁବତୀମାନଙ୍କ ଦେହରେ ସାଇକେଲ ମଟର ସାଇକେଲ ଘଷି ନେଇଯାଆନ୍ତି। ଜାଣିଶୁଣି ଅଶ୍ଳୀଳ ଇଙ୍ଗିତ କରନ୍ତି। କାଳେ ପ୍ରେମ ହୋଇଯିବ ଭବିଷ୍ୟତରେ। ତେଣୁ ସ୍ତ୍ରୀମାନଙ୍କ ପ୍ରତି ପୁରୁଷମାନଙ୍କର ସାମାଜିକ ସମ୍ମାନ ଓ ମୂଲ୍ୟବୋଧ କଅଣ ହୋଇପାରେ ?

ଯେଉଁ ଦେଶ ଯେତେ ଉନ୍ନତ, ସେଠାକାର ଲୋକଙ୍କଠାରେ ସମୟାନୁବର୍ତ୍ତିତା ଓ କାର୍ଯ୍ୟଦକ୍ଷତା ସେତେ ଉଚ୍ଚଧରଣର। ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଦୁଇଟି ସାମାଜିକ ମୂଲ୍ୟବୋଧ ବହୁଦିନ ଧରି ଚରିତ୍ରଗତ ହୋଇଯାଇଛି, କିନ୍ତୁ ଚାଇନା ପରି ବିକାଶଶୀଳ ଦେଶରେ ଏହି ଦୁଇଟି ଗୁଣ ଲୋକଙ୍କଠାରେ ମାତ୍ର ୪୦ ବର୍ଷ ଭିତରେ ଯେପରି ଭାବରେ ଚରିତ୍ରଗତ ହୋଇଯାଇଛି, ତାହା ଭାରତରେ ସମ୍ଭବ ହୋଇପାରିଲା ନାହିଁ। ଏ କ୍ଷେତ୍ରରେ କୌଣସି ଦିଗ୍‌ଦର୍ଶନ ମଧ୍ୟ ନାହିଁ। ସାମନ୍ତବାଦୀ ସମାଜରେ ଗଣ୍ୟମାନ୍ୟବ୍ୟକ୍ତିମାନେ ବିଳମ୍ବରେ ଆସିବାଟାକୁ ସେମାନଙ୍କର ପଦମର୍ଯ୍ୟାଦାର ଗୋଟିଏ ବିଶିଷ୍ଟ ଗୁଣ ବୋଲି

ଧରାଯାଉଛି। ତେଣୁ ଆଧୁନିକ ସମାଜରେ ମନ୍ତ୍ରୀ ଓ ବଡ଼ ଅଫିସରମାନେ ସବୁବେଳେ ଡେରିରେ ଆସନ୍ତି। ଘଣ୍ଟାଏ ଅଧଘଣ୍ଟାଏ ବିଳମ୍ବ କିଛି ନୁହେଁ। ଲୋକେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରନ୍ତି। ଏହା ଗୋଟିଏ ସ୍ୱାଭାବିକ ସାମାଜିକ ଘଟଣା ହିସାବରେ ଧରାଯାଉଛି। ତା' ସହିତ ଆମର ଅପାରଗତା। ଅପାରଗ ଅଫିସର ଘନଘନ ପ୍ରମୋଶନ ପାଏ। ଅପାରଗ ମନ୍ତ୍ରୀ ବାରମ୍ବାର ମନ୍ତ୍ରୀ ହେଉଥାଏ। ଅପାରଗତା କୌଣସି ଲଜ୍ଜାଜନକ କାର୍ଯ୍ୟ ବୋଲି ଧରାଯାଉ ନାହିଁ, ଅପାରଗତା ଓ ସମୟାନୁବର୍ତ୍ତିତା ଏକାସାଙ୍ଗରେ ଦେଖାଯାଉଥାଏ ଏବଂ ପୃଥିବୀରେ ଆମ ଦେଶ ଏଥିପାଇଁ ପ୍ରସିଦ୍ଧି ଲାଭ କରିଛି।

ଯେକୌଣସି ବିପ୍ଳବାତ୍ମକ ପରିବର୍ତ୍ତନ ଯୋଗୁଁ ରାଜନୈତିକ, ଅର୍ଥନୈତିକ, ସାମାଜିକ ତଥା ଶିକ୍ଷା ଓ ସାଂସ୍କୃତିକ ମୂଲ୍ୟବୋଧର ପ୍ରବର୍ତ୍ତନ ହୋଇଥାଏ। ରାଜନୈତିକ ଓ ଅର୍ଥନୈତିକ ସଂସ୍ଥା ଅନୁଯାୟୀ ଅନ୍ୟାନ୍ୟ ସାମାଜିକ ପରିବର୍ତ୍ତନ ଦେଖାଦେବା ସ୍ୱାଭାବିକ। ଆମ ଦେଶର ରାଜନୈତିକ ଓ ଅର୍ଥନୈତିକ ପଦ୍ଧତି ପୁରୁଣା ଔପନିବେଶିକ ଢାଞ୍ଚାରେ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ଏମାନଙ୍କର ସାମନ୍ତବାଦୀ ଆବଶ୍ୟକତା ଓ ଚାଲିଚଳଣ ଅନୁସାରେ ଅନ୍ୟାନ୍ୟ ସାମାଜିକ ମୂଲ୍ୟବୋଧ ଦେଖାଦେବା ସ୍ୱାଭାବିକ। ସ୍ୱାଧୀନତା ପରଠାରୁହିଁ ସାମ୍ବିଧାନିକ ମହତ ଲକ୍ଷ୍ୟ ମୁଷ୍ଟିମେୟ ଲୋକଙ୍କ ସ୍ୱାର୍ଥସାଧନ ଲାଗି ଉଦ୍ଦିଷ୍ଟ ହୋଇଛି। ଦ୍ୱିତୀୟ ମହାଯୁଦ୍ଧ ପରେ ସମାଜବାଦୀ ଦେଶମାନେ ସାର୍ବଜନୀନ ଶିକ୍ଷା, ସ୍ୱାସ୍ଥ୍ୟ ଓ ଶିଶୁକଲ୍ୟାଣ ଦିଗରେ ଯେପରି ବଳିଷ୍ଠ ପଦକ୍ଷେପ ନେଲେ, ତା'ଫଳରେ ସେମାନଙ୍କର ସାମାଜିକ ଓ ସାଂସ୍କୃତିକ ଚରିତ୍ର ବଡ଼ ଦ୍ରୁତ ଗତିରେ ବଦଳିଗଲା। ଜନକଲ୍ୟାଣ ଓ ମାନବିକ ମୂଲ୍ୟବୋଧର ବଳିଷ୍ଠ ଆଦର୍ଶ ସମାଜରେ ପ୍ରତିଷ୍ଠିତ ହୋଇ ପାରିଲା। ସେହି ଦୃଷ୍ଟିରୁ ଆମର ସ୍ୱାଧୀନତା ଆନ୍ଦୋଳନ ଭୟଙ୍କର ଭାବରେ ପ୍ରତାରିତ ହୋଇଗଲା। ମାନବୀୟ ଓ ଜାତୀୟ ସଂହତି ଦୃଷ୍ଟିରୁ ଜନକଲ୍ୟାଣକର ମୂଲ୍ୟବୋଧ ପରିବର୍ତ୍ତେ ଅସମାଜିକ ପାଶବିକ ମୂଲ୍ୟବୋଧ ବଢ଼ିଚାଲିଲା। ତେଣୁ ଏହି ସଂଘର୍ଷାତ୍ମକ ଅରାଜକତା ଭିତରେ ଆମେ ଗତି କରୁଛେ। ତେଣୁ ଆମ ଦେଶରେ ଦ୍ୱିତୀୟ ସାମାଜିକ ବିପ୍ଳବ ଅବଶ୍ୟମ୍ଭାବୀ ହୋଇପଡ଼ିଛି। ତା'ନହେଲେ ଆମର ଲୋକ ଚରିତ୍ରର ଅବକ୍ଷୟର ମାତ୍ରା ବଢ଼ି ଚାଲିଥିବ। ନୂତନ ଯୁଗର ମାନବୀୟ ଦିଗ୍‌ଦର୍ଶନ ଅନୁପ୍ରାଣିତ ସାମାଜିକ ଓ ସାଂସ୍କୃତିକ ମୂଲ୍ୟବୋଧ ଆହୁରି ବେଶି ବିକୃତ ହୋଇଯିବ। ଦେଶର ସୃଜନଶୀଳତା ପ୍ରତିହତ ହେବ।

ଯୁଗାନ୍ତକାରୀ ମୂଲ୍ୟବୋଧମାନ ସାରା ବିଶ୍ୱରେ ପ୍ରସାରିତ ତଥା ଆଦୃତ ହେଉଥିବାବେଳେ ଭାରତ ମଧ୍ୟଯୁଗୀୟ ଆଚରଣ ଭିତରେ ରହିପାରିବା ସମ୍ଭବ ନୁହେଁ। ଯାହା ଅବଶ୍ୟମ୍ଭାବୀ, ତାକୁ ଯେଉଁ ଦେଶ ଯେତେ ଶୀଘ୍ର ଗ୍ରହଣ କରିନିଏ– ଏ ତା'ର ପ୍ରଖର ଅଗ୍ରଗତି ହୁଏ। ଅନ୍ୟମାନେ ପଛେଇ ଯାଆନ୍ତି– ସମୟର ପ୍ରଖର ସ୍ରୋତରୁ ଅଲଗା ହୋଇଯାଆନ୍ତି। ଏପରି ଭାବରେ ପରାଭୂତ ବହୁ ସଭ୍ୟତାର ଧ୍ୱଂସାବଶେଷ ଇତିହାସରେ ଦେଖିବାକୁ ମିଳେ।

# ଚିନ୍ତା ଓ ତା'ର ଦିଗ

ଜଣକର ଖୁବ୍ ତୀକ୍ଷ୍ଣ ବୁଦ୍ଧି ଥାଇପାରେ। ସେ ଖୁବ୍ ପଣ୍ଡିତ ମଧ୍ୟ ହୋଇଥାଇପାରେ—ବହି ପଢ଼ିବାରେ ଅସାଧାରଣ ଆଗ୍ରହ ଓ ଏକାଗ୍ରତା ମଧ୍ୟ ତା'ର ଥାଇପାରେ; କିନ୍ତୁ ଯୁକ୍ତିତର୍କ ଆଲୋଚନା, ସମାଲୋଚନା ବେଳେ ତା'ର ଜ୍ଞାନ ଓ ପାଣ୍ଡିତ୍ୟ ସ୍ୱାଭାବିକ ଭାବରେ ପରିସ୍ଫୁଟ ହୋଇ ନ ପାରେ। କେତେକ ଯେତିକି ଜାଣିଥା'ନ୍ତି, ସେତିକି ଖବରକୁ ସଜାଇଗୁଡ଼ାଇ ଯେପରି ଧାରବାହିକ ଭାବରେ ବାଢ଼ିପାରନ୍ତି, ଘଟଣାସ୍ଥଳରେ ଠିକ୍ ଠିକ୍ ଭାବରେ ବ୍ୟବହାର କରି ପାରନ୍ତି—କ୍ଷୁର ଧାରରେ କାଟିଲାପରି ଅନ୍ୟର ଯୁକ୍ତିକୁ ଉପଯୁକ୍ତ ଚିନ୍ତାଧାରା ଓ ବାକ୍ୟର ପ୍ରୟୋଗ ଦ୍ୱାରା ଯେପରି ତୀକ୍ଷ୍ଣ ଭାବରେ କାଟିପାରନ୍ତି, ସେମାନଙ୍କଠାରୁ ବୁଦ୍ଧିରେ ଏବଂ ଜ୍ଞାନରେ ବେଶି ଥିବା ଅନେକ ଲୋକ ସେପରି ପାରଦର୍ଶିତା ଓ କୌଶଳର ସହିତ ଭାଷା ତଥା ଜ୍ଞାନର ପ୍ରୟୋଗ କରି ପାରନ୍ତି ନାହିଁ। ତା'ର କାରଣ କ'ଣ?

ଭଲ ଭଲ ଓ ଦାମିକା ଜିନିଷସବୁ ଅସଜଡ଼ାଭାବରେ ଏପାଖ ସେପାଖ କରି ଭଣ୍ଡାର ଘରେ ରଖିଥିଲେ ଦରକାର ଅନୁସାରେ କୌଣସି ଗୋଟିଏ ଜିନିଷକୁ ପାଇବା କଷ୍ଟକର ହୋଇପଡ଼େ। ଯେଉଁ ଗୃହକର୍ତ୍ରୀଙ୍କର ଭଣ୍ଡାରଘର ବହୁତ ଜିନିଷରେ ଭର୍ତ୍ତି, କିନ୍ତୁ ସେସବୁ ଆବୁରୁଜାବୁରୁ ହୋଇ ରହିଥାଏ, ସେ ସବୁବେଳେ ବ୍ୟସ୍ତ ହୋଇ ଜିନିଷ ଖୋଜୁ ଥାଆନ୍ତି ଏବଂ ଅଧିକାଂଶ ସମୟରେ ଠିକ୍ ସମୟରେ ଉପଯୁକ୍ତ ଜିନିଷ ପାଇପାରନ୍ତି ନାହିଁ। ତରକାରିରେ ଲୁଣ ପକାଇଲାବେଳକୁ ଲୁଣ ଥିବା ଡବାଟି ମିଳେନାହିଁ। ଡାଲି ଫୁଟେଇଲାବେଳକୁ ଜିରା ଡବା ଖୋଜିବାକୁ ପଡ଼େ—ଅନେକ ସମୟରେ ଲୋକ ଦୌଡ଼େ ବଜାରକୁ, କିନ୍ତୁ ବଜାରରୁ ଫେରିଲାବେଳକୁ ତରକାରି ଅସ୍ୱାଦ ହୋଇଯାଇଥାଏ—ଖାଇଲାବାଲାର କ୍ଷୁଧା ମରିଯାଇଥାଏ। ପରେ ଡବା ଡବା ଲୁଣ ଓ ଜିରା ଭଣ୍ଡାର ଘରୁ ବାହାରେ। ଜିନିଷଗୁଡ଼ିକ ଠିକ୍ ଠିକ୍ ଜାଗାରେ ରହୁଥିଲେ କେତେ ସୁବିଧା ହୁଅନ୍ତା!

ସେହିପରି ଆମର ଭାବନା, ଚିନ୍ତା ଓ ଜ୍ଞାନକୁ ଅନେକ ସମୟରେ ଠିକ୍‌ଭାବରେ ଉପଯୁକ୍ତ କ୍ଷେତ୍ରରେ ବ୍ୟବହାର କରି ପାରୁନା, କାହିଁକି ନା, ଆଖି ବୁଲେଇଲାବେଳକୁ ଆମର ଉପଯୁକ୍ତ କାରଣ, ଭାବନା, ଚିନ୍ତା, ଆମ ଆଖି ଆଗରେ ଆସି ପଡ଼େନା; ମନ ଭୂଆଁ ବୁଲେ; ନାନା ଅବାନ୍ତର କଥା ଆଖିରେ ଆସି ପଡ଼ିଯାଏ। କାରଣ ଯାହା ମନ ଭିତରେ ଭର୍ତ୍ତି ହୋଇଥାଏ, ତାହା ଠିକ୍ ଠିକ୍ ଭାବରେ ସଜାଡ଼ି ହୋଇ ରହି ନଥାଏ। ତେଣୁ ଅନେକ ଖୁବ୍ ପଣ୍ଡିତଲୋକ ବଡ଼ ଅବାନ୍ତର ଯୁକ୍ତି କରନ୍ତି, ହାସ୍ୟାସ୍ପଦ ଭାବରେ ଘଣ୍ଟା ଘଣ୍ଟା ଧରି ଯାଡ୍ରୁ ସିଆଡ୍ରୁ ବକନ୍ତି, ଗୋଟିଏ କଥା କହୁ କହୁ ଦଶଟା ବାଛେ, କଥା ପାଟିରେ ଆସିଯାଏ ଏବଂ ସେଆଡ଼େ କଥାରେ ଭାସି ଯାଆନ୍ତି, [illegible] ଜାଗାକୁ ଆସିଲାବେଳକୁ ଶ୍ରୋତାମାନଙ୍କର ଆଉ

ଧୈର୍ଯ୍ୟ ନ ଥାଏ ଶୁଣିବାକୁ। ଏପରି ବକ୍ତୃତା ଘଣ୍ଟା ଘଣ୍ଟା ଧରି ଶୁଣିଲେ ମଧ୍ୟ ଶ୍ରୋତାମାନଙ୍କର ବିଶେଷ ଉପକାର ହୁଏ ନାହିଁ। ଏ ସବୁ ଚିନ୍ତାଧାରା ସେମାନଙ୍କ ମନ ଭିତରେ ସଜାଡ଼ି ହୋଇ ରହି ପାରେନାହିଁ। ଫଳରେ ସମସ୍ତଙ୍କର ଭାବନା-ରାଜ୍ୟରେ ଅରାଜକତା ଦେଖାଦିଏ ।

କିନ୍ତୁ ଅନେକ ସମୟରେ ଲେଖିଲାବେଳେ ଏତେ ବେଶି ବିଶୃଙ୍ଖଳା ଦେଖାଦିଏ ନାହିଁ-ଆମେ ଆମର ଚିନ୍ତାଧାରାର ଅଯୌକ୍ତିକତା ବିଷୟରେ ବୁଝିପାରୁ–ଯୁକ୍ତିସଙ୍ଗତ ଲେଖା ଧାରାବାହିକ ଭାବରେ ସଜାଡ଼ି ଲେଖିବାକୁ ଚେଷ୍ଟା କରୁ। କାରଣ ସେତେବେଳେ ଆମକୁ ବେଶି ସମୟ ମିଳେ; ଭାବଧାରାକୁ ଏପାଖ ସେପାଖ କରି ଓଲଟପାଲଟ କରି ଦେଖିବୁ, ଶୃଙ୍ଖଳିତଭାବରେ ରଖିବାକୁ ସମୟ ଓ ସୁଯୋଗ ମିଳେ। କହିଲାବେଳେ ଏତେ ସମୟ ମିଳେନାହିଁ। ତେଣୁ କହିବା ପୂର୍ବରୁ ଯଦି ଆମେ ଥରେ ସଂକ୍ଷେପରେ ସେସବୁ କଥା ଲେଖି ପକାଉ, ତା'ହେଲେ କହିଲାବେଳେ ଭାବନାଗୁଡ଼ିକ ସେହି ଗୋଟିଏ ନିର୍ଦ୍ଦିଷ୍ଟ ରାସ୍ତାରେ ଆସିବାର ସମ୍ଭାବନା, କିନ୍ତୁ ଅନେକ ବକ୍ତା ଏତେ ପରିଶ୍ରମ କରିବାକୁ ରାଜି ହୁଅନ୍ତି ନାହିଁ। ବିଶେଷତଃ ବକ୍ତୃତା ଦେବାର ଯେଉଁମାନଙ୍କର ଧରାବନ୍ଧା ପେଷା ହୋଇଗଲାଣି, ସେମାନେ ଏଥିପ୍ରତି ନଜର ଦିଅନ୍ତି ନାହିଁ। କିନ୍ତୁ ଯେ କୌଣସି ସ୍ତରର ବକ୍ତା ହେଉନା କାହିଁକି ବକ୍ତୃତା ଦେବା ପୂର୍ବରୁ ବିଷୟବସ୍ତୁ ବିଷୟରେ ଗୋଟିଏ ଧାରାବାହିକ ବିବରଣୀ ଲେଖିନେବା ଉଚିତ୍; କିମ୍ବା ଅନ୍ତତଃ ମନେମନେ ଚିନ୍ତାର ଅନୁକ୍ରମିକ ଭାବଧାରା ଠିକ୍ କରିନେବା ଉଚିତ। ତା' ନ ହେଲେ ଯେତେ ବଡ଼ ସିଦ୍ଧହସ୍ତ ବକ୍ତା ହେଉନା କାହିଁକି, ବକ୍ତୃତା ଖାପଛଡ଼ା ଓ ଅବାନ୍ତର ହୋଇଯାଇପାରେ।

ଏ ତ ଗଲା ବକ୍ତୃତା କଥା; କିନ୍ତୁ ସାଧାରଣ କଥାବାର୍ତ୍ତାରେ, ଆଲୋଚନା ସଭାରେ ଚିନ୍ତାଧାରାର ସଙ୍ଗତି ଓ ମୌଳିକତା କିପରି ଭାବରେ ଆୟତ୍ତ କରାଯାଇପାରେ ? ଏଥିଲାଗି ଦୁଇଟି ପନ୍ଥା ଅନୁସରଣ କରା ଯାଇପାରେ। ଗୋଟିଏ ହେଉଛି ଯେଉଁ ବିଷୟରେ ପଢ଼ାପଢ଼ି କରୁଥିବ, ସେହି ବିଷୟରେ କିଛି ସମୟ ନିଜେ ନିଜେ ଭାବିବା ଉଚିତ। ଚୁପ୍‌ଚାପ୍ ବସି ବିଷୟବସ୍ତୁକୁ ନାନା ଦିଗରୁ ବିଚାର କଲେ ଭାବନାଗୁଡ଼ିକର ପାରସ୍ପରିକ ସଂପର୍କ ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ଏହାର ଯୁକ୍ତିଯୁକ୍ତ ସଙ୍ଗତି ମଧ୍ୟ ବଢ଼ିଉଠେ। ଏଥି ସଙ୍ଗେ ସଙ୍ଗେ ନିଜ ଚିନ୍ତାଧାରାରେ ମୌଳିକତ୍ୱ ଦେଖାଦେବାର ସମ୍ଭାବନା ଅଧିକ। ଏପରି ଅଭ୍ୟାସ ଫଳରେ ଆମେ ଯେଉଁ ଯେଉଁ ବିଷୟରେ ପଢୁ, ସେସବୁ ବିଷୟବସ୍ତୁ ଆମ ମନରେ ଧାରାବାହିକ ଭାବରେ ସଜାଡ଼ି ହୋଇ ରହିଯାଏ।

ଦ୍ୱିତୀୟ ଉପାୟଟି ହେଉଛି ନାନା ବିଷୟରେ ଅନ୍ୟମାନଙ୍କ ସହିତ ଆଲୋଚନା କରିବା। କେତେ ଜଣ ଏକାଠି ବସି ଆଲୋଚନା କରିବା ଫଳରେ ଆମର ମସ୍ତିଷ୍କ ଭିତରେ ଥିବା ଜ୍ଞାନ ପରିମାର୍ଜିତ, ପରିବର୍ଦ୍ଧିତ ଓ ନୂତନଭାବରେ ପରିକଳ୍ପିତ

ହେବା ସଙ୍ଗେ ସଙ୍ଗେ ବିଭିନ୍ନ ବ୍ୟକ୍ତିର ଭିନ୍ନ ଭିନ୍ନ ଦୃଷ୍ଟିକୋଣ ଯୋଗୁଁ ଆମର ଭାବନାଶକ୍ତି ବହୁ ପରିମାଣରେ ଉଦ୍ଦୀପିତ ହୁଏ। ଫଳରେ ଆମର ଭାବନା ରାଜ୍ୟରେ ଭିନ୍ନ ଭିନ୍ନ ମାର୍ଗ ଦେଖାଯାଏ। ନାନା ଭାବରେ ଗୋଟିଏ ବିଷୟବସ୍ତୁ ଉଦ୍‌ବେଳିତ ଓ ଉନ୍ମେଷିତ ହୋଇପାରେ। ଭିନ୍ନ ଭିନ୍ନ ଉପାଦାନରେ ଏହା ପରିପୁଷ୍ଟ ହୁଏ। ଭାବୁକର ମୌଳିକତ୍ୱ ଫୁଟିଉଠେ। ସମଷ୍ଟିଗତ ଆଲୋଚନା, ସମାଲୋଚନା ଦ୍ୱାରା ହିଁ ବ୍ୟକ୍ତିର ଚିନ୍ତାଧାରା ପରିସ୍ଫୁଟ ହୋଇଯାଏ। ତା' ନ ହେଲେ ବ୍ୟକ୍ତିଗତ ଭାବନା ଅବାନ୍ତର, ଅସ୍ପଷ୍ଟ, ଅସଙ୍ଗତ ଓ ଅସମ୍ଭବ କଳ୍ପନାରେ ହିଁ ପରିଣତ ହୁଏ। ଏ ପ୍ରକାର ଭାବନା ବ୍ୟକ୍ତି ପକ୍ଷରେ ଯେପରି କ୍ଷତିକାରକ, ସମାଜ ପକ୍ଷରେ ସେପରି ଅହିତକର। ଭାବନା ଅବାସ୍ତବ ଓ ବିଷୟବସ୍ତୁ ଅପରୀକ୍ଷିତ ହୋଇଥିବାରୁ ସାମାଜିକ କ୍ଷେତ୍ରରେ ଏହା ମାରାତ୍ମକ ହୋଇପଡ଼େ। ଏ ପ୍ରକାର ଲୋକେ ଖୁବ୍ ବେଶି ଖାମଖିଆଲି ହୋଇପଡ଼ନ୍ତି। ନିଜ ଶକ୍ତିରେ ନିଜେ ଖୁବ୍ ବେଶି ଆସ୍ଥାବାନ ହୋଇପଡ଼ନ୍ତି—ସେମାନଙ୍କର ଅସମ୍ଭବ ଚିନ୍ତାଧାରା ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରନ୍ତି। ଫଳରେ ସମାଜରେ ଦେଖାଯାଏ ବିଭ୍ରାଟ, କାର୍ଯ୍ୟକ୍ଷେତ୍ରରେ ଅରାଜକତା, ବାସ୍ତବକ୍ଷେତ୍ରରେ ଅବାସ୍ତବ କଳ୍ପନାର ମୃଗତୃଷ୍ଣା। ତେଣୁ ବ୍ୟକ୍ତି ତଥା ସମାଜର ସୁସ୍ଥ ଜୀବନ ଲାଗି ସମଷ୍ଟିଗତ ଆଲୋଚନା, ସମାଲୋଚନା, ବାଦାନୁବାଦ ଯୁକ୍ତିତର୍କର ଆବଶ୍ୟକତା ଖୁବ୍ ବେଶି। ଏହି ଦୃଷ୍ଟିରୁ ଦେଖିଲେ ଗଣତାନ୍ତ୍ରିକ ପରିବେଶର ମୂଲ୍ୟ ବହୁତ ବେଶି। ଯେଉଁ ଦେଶରେ ଗଣତାନ୍ତ୍ରିକ ପରମ୍ପରା ବା ଉଦ୍‌ବେଳନ ନାହିଁ, ସେଠାରେ ବ୍ୟକ୍ତି ବା କ୍ଷୁଦ୍ର ଗୋଷ୍ଠୀର ସଂକୀର୍ଣ୍ଣ ଚିନ୍ତାଧାରା ସମାଜିକ ବିକାଶକୁ ସଂକୁଚିତ ତଥା କ୍ଷତବିକ୍ଷତ କରିପକାଏ।

ଆମ ଦେଶରେ ଗଣତାନ୍ତ୍ରିକ ସମ୍ବିଧାନ ହୋଇଛି ସତ; କିନ୍ତୁ ଗଣତାନ୍ତ୍ରିକ ବିକାଶ ସବୁ କ୍ଷେତ୍ରରେ ଦେଖାଦେଇ ପାରୁନାହିଁ। ସମଷ୍ଟିଗତ ଚିନ୍ତା ଓ ଆଲୋଚନା ଅଭାବରୁ ଆତ୍ମବଡ଼ିମା, ବ୍ୟକ୍ତିଗତ ଗର୍ବ, ପଣ୍ଡିତମନ୍ୟତା ଓ ଦୂରଦୃଷ୍ଟିହୀନତା ଏତେ ବେଶି; ଫଳରେ ଚିନ୍ତା-ରାଜ୍ୟରେ ଅସହ୍ୟକର ଅଯୌକ୍ତିକତା, କର୍ମକ୍ଷେତ୍ରରେ ଅକ୍ଷମଣୀୟ ଅପାରଗତା ଏବଂ ସାମାଜିକ କ୍ଷେତ୍ରରେ ଅସମ୍ଭବଭାବରେ ଅରାଜକତା। ଏପରି ପରିସ୍ଥିତିରେ ବରଂ ଆଦର୍ଶବାଦୀ ବିଜ୍ଞ ଲୋକର ଯୁକ୍ତିଯୁକ୍ତ ଚିନ୍ତା ଓ ଭାବନା ଅବଜ୍ଞାର ପରିହାସ ସୃଷ୍ଟି କରେ—ସମାଲୋଚକଙ୍କୁ ବୁଦ୍ଧିହୀନ ପାଗଳା ବୋଲି ଉଡ଼ାଇ ଦିଆଯାଏ, ତଥାପି ଏମାନଙ୍କୁ ସମସ୍ତେ ଭୟ କରନ୍ତି। ତେଣୁ ଯେଉଁମାନେ ନିର୍ଭୀକ ଭାବରେ ଚିନ୍ତା କରନ୍ତି, ଯୁକ୍ତିଯୁକ୍ତ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ସାହସ ଯେଉଁମାନଙ୍କର ଅଛି, ସେହିମାନେ ହିଁ ପ୍ରକୃତ ଗଣତାନ୍ତ୍ରିକ ସାମାଜିକ ପଦ୍ଧତିର ମୂଳଭିତ୍ତି ସ୍ଥାପିତ କରି ପାରିବେ। ଏ ପ୍ରକାର ଚିନ୍ତା ବ୍ୟକ୍ତି ତଥା ସମଷ୍ଟି ଭିତରେ ନୂତନ ପ୍ରେରଣା ଆଣିଦେବା ସଙ୍ଗେ ସଙ୍ଗେ ସମାଜରେ ଗୋଟିଏ ପ୍ରକାର ସୁସ୍ଥ ସବଳ ଜୀବନୀଶକ୍ତି ପୁନର୍ଜୀବିତ କରେ। ■□■



# ସାଧନା ଓ ସିଦ୍ଧି

ମନୁଷ୍ୟଛଡ଼ା ଅନ୍ୟାନ୍ୟ ଜୀବଜନ୍ତୁ ଲକ୍ଷ ଲକ୍ଷ ବର୍ଷଧରି ସେହି ଗୋଟିଏ ଚିରାଚରିତ ରାସ୍ତାରେ ଚାଲିଛନ୍ତି। ନୂଆ ନୂଆ ବସା ବାନ୍ଧୁଛନ୍ତି କିମ୍ବା ମାଟି ଗୋଡ଼ି ଗାତ ଭିତରେ ଲୁଚି ରହିଛନ୍ତି। ଆକାଶରେ ଉଡୁଛନ୍ତି କିମ୍ବା ପାଣିରେ ବୁଡ଼ିରହିଛନ୍ତି। ଠିକ୍ ସେହି ଗୋଟିଏ ପ୍ରଣାଳୀରେ ଗୋଟିଏ ଶ୍ରେଣୀର ଜୀବଜନ୍ତୁ ଯନ୍ତ୍ରପରି ସେହି ଗୋଟିଏ ବୃତ୍ତରେ ଘୂରିବୁଲୁଛନ୍ତି; ଆଗକୁ ଯିବାର ଆକାଂକ୍ଷା ନାହିଁ କି ପଛେଇ ଯିବାର କ୍ଷମତା ମଧ୍ୟ ନାହିଁ। ଆଉ ଲକ୍ଷେ ବର୍ଷ ପରେ ମଧ୍ୟ ଠିକ୍ ସେହିଭାବରେ ସେମାନେ ଚାଲିଥିବେ; ସାଧନାର ବ୍ୟତିକ୍ରମ ନାହିଁ କି ସିଦ୍ଧିରେ ନୂତନତା ନାହିଁ—ଅଛି କେବଳ ଅସରନ୍ତି ଗତି—ଅବିରାମ କାର୍ଯ୍ୟକ୍ରମ। ସାଫଲ୍ୟ ବୈଫଲ୍ୟର ଉଦବେଳନ ନାହିଁ—ଅତୀତ ଭବିଷ୍ୟତର ଆଲୋଡ଼ନ ନାହିଁ—ଅଛି କେବଳ ବର୍ତ୍ତମାନର ଜୈବନିକ ବିସ୍ଫୁରଣ। କିନ୍ତୁ ମନୁଷ୍ୟ ଜୀବଟି ସେମାନଙ୍କଠାରୁ ସଂପୂର୍ଣ୍ଣ ଅଲଗା। ସେମାନଙ୍କର କାର୍ଯ୍ୟକ୍ରମ, ଉଦ୍ଦେଶ୍ୟ, ଅଭିଳାଷ, ସିଦ୍ଧି, ସାଧନା ସବୁ ଅନ୍ୟାନ୍ୟ ଜୀବଜନ୍ତୁଙ୍କର କାର୍ଯ୍ୟକଳାପଠାରୁ ସଂପୂର୍ଣ୍ଣ ଭାବେ ନୂତନ।

ମନୁଷ୍ୟ ଯେ ଯନ୍ତ୍ରବତ୍ ଅନେକ କାମ ନ କରେ ତା' ନୁହେଁ—ଜଣେ ଜଣେ ଜୀବନତମାମ ନିଜର ବାପ, ମା', ଭାଇ, ଭଉଣୀ ସାଇପଡ଼ିଶା ଲୋକଙ୍କଠାରୁ ଅନୁକରଣ କରି କଳ ଚାଲିଲାପରି କାମ କରିଯା'ନ୍ତି, ତଥାପି ଏମାନଙ୍କର ପ୍ରଧାନ ବୈଶିଷ୍ଟ୍ୟ ହେଲା ଯେ, ଏମାନେ ବିଚାରଶୀଳ। ବୁଝିବିଚାରି, ଭାବିଚିନ୍ତି, ଭବିଷ୍ୟତ ପ୍ରତି ଦୃଷ୍ଟିରଖି, ଯୋଜନା ଅନୁଯାୟୀ କାମ କରିବାର କ୍ଷମତା ସେମାନଙ୍କର ଅଛି ଏବଂ ମନୁଷ୍ୟ ଯେତିକି ଆଗେଇ ପାରିଛି, ତାହା କେବଳ ଏହି ବିଶିଷ୍ଟ ଶକ୍ତି ଯୋଗୁଁ ସମ୍ଭବ ହୋଇପାରିଛି। ଏହି ବୈଶିଷ୍ଟ୍ୟ ହିଁ ମନୁଷ୍ୟର ପ୍ରଧାନ ଗୁଣ ଏବଂ ଏହି ଗୁଣଟି ଯେଉଁ ବ୍ୟକ୍ତିବିଶେଷର ବା ସମାଜର ଯେତେ ବେଶି, ସେହି ବ୍ୟକ୍ତି ବା ସମାଜ ସେତେ ବେଶି ଉନ୍ନତି କରିପାରେ। ତେଣୁ ଏହା ମନୁଷ୍ୟ ପକ୍ଷରେ ଗୋଟିଏ ଅତ୍ୟନ୍ତ ସ୍ୱାଭାବିକ, ଯୁକ୍ତିଯୁକ୍ତ ଓ ସରଳ ନିୟମ ବୋଲି ଧରାଯାଇପାରେ। ସିଦ୍ଧି ପଛରେ ସାଧନା ରହିଛି ଏବଂ ସାଧନାର ଯଥାଯଥ ପରିଣତି ହେଉଛି ସିଦ୍ଧି। ସିଦ୍ଧିଲାଭ କରିଥିବା ଯେ କୌଣସି ବ୍ୟକ୍ତି ବା ସମାଜର କାର୍ଯ୍ୟ—ଯୋଜନା ବିଶ୍ଳେଷଣ କଲେ ଏହା ପରିଷ୍କାର ଭାବରେ ଜଣାଯାଏ। ଯେଉଁମାନେ ଅକୃତକାର୍ଯ୍ୟ ହୁଅନ୍ତି, ସେମାନଙ୍କଠାରେ ସାଧନାର ଅଭାବ ଥାଇପାରେ କିମ୍ବା ସାଧନାଲାଗି ଉପଯୁକ୍ତ ପରିବେଶର ଅଭାବ ଥାଇପାରେ। ଅନେକ ସମୟରେ ସାଧନାର ତୀବ୍ରତା ଯୋଗୁଁ ପ୍ରତିକୂଳ ପରିବେଶ ମଧ୍ୟ ସମ୍ପୂର୍ଣ୍ଣରୂପେ ବଦଳିଯାଇପାରେ। ଯୁଗ ପରିବର୍ତ୍ତନକାରୀ ବିପ୍ଳବୀମାନଙ୍କର ସାଧନାରୁ ଏହା ଜଣାଯାଏ, କିନ୍ତୁ ଲକ୍ଷ ଲକ୍ଷ ମନୁଷ୍ୟର ଅକୃତକାର୍ଯ୍ୟ

ନରକଙ୍କାଳ ପ୍ରତି ଦୃଷ୍ଟି ଦେଲେ, ପରିବେଶର ପ୍ରାଧାନ୍ୟ ପ୍ରତିପାଦିତ ହୁଏ। ସାଧନାରେ ମଧ୍ୟ ସେହି ଦୃଷ୍ଟିରୁ ଦୋଷତ୍ରୁଟି ଦେଖାଦେଇଥାଏ। ଅନେକ ସମୟରେ ସାଧନା ତଥା ସିଦ୍ଧି ଭିତରେ ପରିବେଶ ଏପରିଭାବରେ ପ୍ରତିଫଳିତ ହୋଇଥାଏ ଯେ, ପରିବେଶ ସାଧନା ଓ ସିଦ୍ଧିର ପ୍ରକୃତ କାର୍ଯ୍ୟକାରୀ ଶକ୍ତି ବୋଲି ମନେହୁଏ। ଏହା ବି ଅଧିକାଂଶଙ୍କର ଜୀବନରେ ସତ୍ୟ; କିନ୍ତୁ ସାଧନା ଅନୁସାରେ ପରିବେଶକୁ ଯେ ବଦଳାଇ ଦିଆଯାଇପାରେ, ଏହା ମଧ୍ୟ ସତ୍ୟ।

କୌଣସି ଗୋଟିଏ ପ୍ରକାର ସାଧନା କରିବାରେ ପ୍ରବୃତ୍ତି ହୁଏ, ଯଦି ସେହି ସାଧନାର ଶେଷ ପ୍ରାନ୍ତରେ ଥିବା ସିଦ୍ଧି ବିଷୟରେ ଗୋଟିଏ ସଠିକ୍ ଧାରଣା ଥାଏ। ଏହି ନିର୍ଦ୍ୱନ୍ଦ୍ୱ ଧାରଣାକୁ ଆଦର୍ଶ ବୋଲି କୁହାଯାଇପାରେ। ଏହି ଆଦର୍ଶ ଯାହାର ଯେତେ ବେଶି ପରିଷ୍କାର ଓ ଚିତ୍ତାକର୍ଷକ, ସେ ଦିଗରେ ସାଧନା ଲାଗି ତା'ର ସତେ ବେଶି ଆଗ୍ରହ ଓ ଉନ୍ମାଦନା ଦେଖାଦେବା ସ୍ୱାଭାବିକ। ତେଣୁ ସାଧନା ଓ ସିଦ୍ଧି ଅଙ୍ଗାଙ୍ଗୀଭାବରେ ଜଡ଼ିତ। ସାଧନା ଏବଂ ସିଦ୍ଧି ଭିତରେ ଗତ୍ୟାତ୍ମକ ସମ୍ବନ୍ଧ ଅଭାବରୁ ଭବିଷ୍ୟତ ସାଧନା ମଧ୍ୟ କଳୁଷିତ ହୋଇଯାଏ। ଏଥିଲାଗି ବ୍ୟକ୍ତିବିଶେଷ ଯେତେ ଦାୟୀ ତା'ଠାରୁ ବେଶି ଦାୟୀ ପରିବେଶର ଅରାଜକତା। କେତେକ ସମାଜରେ ବ୍ୟକ୍ତିବିଶେଷ ପ୍ରଥମରୁ ଯେକୌଣସି ଗୋଟିଏ ଦୃଢ଼ ଧାରଣା କରିବା ପାଇଁ ସାହସ ବାନ୍ଧି ପାରେନା—ସେ ଚାରିଆଡ଼େ ଏତେ ବେଶି ପ୍ରତିବନ୍ଧକ ଓ ଅରାଜକତା ଦେଖିବାକୁ ପାଏ ଯେ, ସିଦ୍ଧି ଲାଗି ତା'ର ଅକ୍ଳାନ୍ତ ସାଧନା ଅପେକ୍ଷା ଅନ୍ୟାନ୍ୟ ସାମାଜିକ ପରିବେଷ୍ଟନୀର ଶକ୍ତି ବହୁତ ବେଶି ବୋଲି ତା'ର ଧାରଣା ହୁଏ। ସାଧନା ସହିତ ବ୍ୟକ୍ତିବିଶେଷର ସିଦ୍ଧିଲାଭ କରିବାର ଯେତିକି ସମ୍ଭାବନା, ବହୁ ସାଧନା ଫଳରେ ହୁଏତ ଆଉ ଜଣକ ପକ୍ଷରେ ସିଦ୍ଧିର ସମ୍ଭାବନା ସେତିକି କମ୍। ତା'ଫଳରେ ସେ କର, କପାଳ, କୋଷ୍ଠୀରେ ଯେତେ ବିଶ୍ୱାସ କରେ, ସାଧନାରେ ସେତେ ବେଶି ବିଶ୍ୱାସ କରିପାରେ ନାହିଁ। ଭୃଗୁ ସଂହିତାରେ ନଥାଇପାରେ ସେହି ରାସ୍ତାର ଶେଷପର୍ଯ୍ୟନ୍ତ ଯିବାପାଇଁ—ତା'ହେଲେ ଏତେ ପରିଶ୍ରମ କରି ଲାଭ କ'ଣ ? ଜଣେ ଡାକ୍ତର ହେବାକୁ ଚାହେଁ, କିନ୍ତୁ ଡାକ୍ତର ହେବାପାଇଁ ତା' ପକ୍ଷରେ ବୁଦ୍ଧି ଓ ପରିଶ୍ରମର ମୂଲ୍ୟ ଯେତେ ବେଶି ନୁହେଁ, ପରିସ୍ଥିତିର ମୂଲ୍ୟ ସେତେ ବେଶି। ଏପରି ସାମାଜିକ ପରସ୍ଥିତିରେ ବ୍ୟକ୍ତିତ୍ୱର ବିକାଶ ଯେତେ ବେଶି ନୁହେଁ, ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଉନ୍ନତି ସେତେ ବେଶି ହୁଏ ଏବଂ ତା' ସଙ୍ଗେ ସଙ୍ଗେ ଗଣତନ୍ତ୍ରର ବିନାଶ ସେତେ ଶୀଘ୍ର ଘଟେ। ଏହାର ଚରମ ପରିଣତି ଏକଚ୍ଛତ୍ର ଶାସନ କିମ୍ବା ନ୍ୟସ୍ତସ୍ୱାର୍ଥ ସଂକୀର୍ଣ୍ଣ ଗୋଷ୍ଠୀଗତ ରାଜତ୍ୱ। ତେଣୁ ଗଣତାନ୍ତ୍ରିକ ସମାଜବାଦୀମାନଙ୍କର ସାମ୍ୟବାଦୀ ନୀତିର ଆଲୋଚନା ସହିତ ବ୍ୟଷ୍ଟି ତଥା ସମଷ୍ଟିଗତ ସିଦ୍ଧି, ସାଧନା ଉପଯୋଗୀ ପରିବେଶର ଅନୁକୂଳ ସମାବେଶ କି କି ଉପାୟରେ ସାଧିତ ହୋଇପାରିବ, ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଉଚିତ।

କେତେକ ସମାଜରେ ବ୍ୟକ୍ତିଗତ ସାଧନା ଉପରେ ବେଶି ଜୋର ଦଅନ୍ତି। ଗୋଟିଏ ପ୍ରକାର ଦାର୍ଶନିକ ତତ୍ତ୍ୱରେ ସେମାନଙ୍କର ବିଶ୍ୱାସ ଯେ ଯାର ଯେତେ ଅନ୍ତର୍ନିହିତ ଶକ୍ତି ଅଛି, ତା'ର ପ୍ରକୃତ ପ୍ରତିଫଳନ ହୋଇପାରିବ କେବଳ ତା'ର ସାଧନା ବଳରେ–ଯେତେ ପ୍ରକାର ସାମାଜିକ ପ୍ରତିବନ୍ଧକ ଥିଲେ ସୁଦ୍ଧା ସେ ତା'ର ଶକ୍ତି ଓ ଉଦ୍ୟମ ବଳରେ ତାକୁ ପରାଜୟ କରି ଆଗେଇଯିବ। ବ୍ୟକ୍ତିତ୍ୱର ସଂପୂର୍ଣ୍ଣ ଉନ୍ମେଷ ଏହା ଫଳରେ ସମ୍ଭବ ହୁଏ। ସମାଜ ଶକ୍ତିଶାଳୀ ହୁଏ। ଆଉ ଗୋଟିଏ ମତବାଦ ହେଲା ଯେ ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ଶକ୍ତିର ଉତ୍କର୍ଷଣ ପାଇଁ ଉପଯୁକ୍ତ ସାମାଜିକ ପରିବେଶର ଆବଶ୍ୟକତା ବହୁତ ବେଶି। ସାମାଜିକ ସୁବିଧା ସୁଯୋଗ ଫଳରେ ବହୁ ଲୋକଙ୍କର ଅସ୍ଫୁଟ ଶକ୍ତି ଉଦ୍‌ବେଳିତ ହୋଇ ପାରିବ। କାରଣ ବ୍ୟକ୍ତି ବିଶେଷଠାରେ ଯେକୌଣସି ଅନ୍ତର୍ନିହିତ କ୍ଷମତା ପରିପ୍ରକାଶ ପାଇଁ ଅନୁକୂଳ ପରିବେଶର ଆବଶ୍ୟକତା ରହିଛି। ସଙ୍ଗୀତ କଳା ବିଜ୍ଞାନ ପ୍ରଭୃତି ମାନସିକ ସୃଜନଶୀଳତା'ର ଉଦ୍ରେକ ପାଇଁ–ତା'ର ସାଧନାର ମୂଳ ପ୍ରେରଣା ଯୋଗାଇଦେବା ଲାଗି ତ ଅନୁକୂଳ ପରିବେଶର ଆବଶ୍ୟକତା ରହିଛି। ତେଣୁ ସମାଜ ସମସ୍ତଙ୍କୁ ତା'ର ବ୍ୟାପକ ଅନୁକୂଳ ପରିବେଶ ସମସ୍ତଙ୍କ ଆଗରେ ଉପସ୍ଥାପିତ କରିବା ଉଚିତ୍। ତା'ହେଲେ ଯାଇଁ ସାଧନାର ଆରମ୍ଭ ହେବାର ସୁଯୋଗ ମିଳିବ–ସିଦ୍ଧିର ରୂପରେଖ ସହିତ ସାଧନାର ଯୋଗସୂତ୍ର ସ୍ଥାପିତ କରାଯାଇ ପାରିବ।

ଆଧୁନିକ ପ୍ରଗତିଶୀଳ ସମାଜ ଦର୍ଶନ ଏହି ମୂଳନିତିରେ ବିଶ୍ୱାସ କରେ। ସମସ୍ତଙ୍କ ପାଇଁ ସବୁପ୍ରକାର ସୁଯୋଗ ସୁବିଧା ପ୍ରଦାନ କରିବା ହେଉଛି ଆଧୁନିକ ମନୁଷ୍ୟ ସମାଜର ସୁଦୂର ପ୍ରସାରୀ ସ୍ୱପ୍ନ। ଏପରି ସାମାଜିକ ପରିବେଶରେ ମାନବ ସମାଜର ନରନାରୀଙ୍କର ସର୍ବୋତ୍କୃଷ୍ଟ ସୃଜନଶୀଳତାର ବିକାଶ ସମ୍ଭବ ହୋଇପାରିବ। ସାଧନା ସିଦ୍ଧିର କାର୍ଯ୍ୟକାରିତା ସମ୍ପର୍କ ବିଷୟରେ ପ୍ରତ୍ୟେକ ବ୍ୟକ୍ତିର ସ୍ପଷ୍ଟ ଧାରଣା ହୋଇପାରିବ, ଫଳରେ ସିଦ୍ଧିର ପ୍ରେରଣା ସାଧନାର ପଥକୁ ଆନନ୍ଦମୟ କାର୍ଯ୍ୟ କ୍ରମରେ ଆଲୋକିତ ତଥା ସାଫଲ୍ୟମଣ୍ଡିତ କରିପାରିବ। ଯେଉଁ ସମାଜରେ ଏହି ସମାଜିକ ପରିବେଶ ଯେତେ ସଙ୍କୁଚିତ ସେହି ଦେଶର ଅଗ୍ରଗତି ସେତେବେଶି ସଂକୀର୍ଣ୍ଣ ଓ ସୃଜନଶୀଳତାର ଆବେଗ ଭରା ଜୀବନ ଯାତ୍ରା ଅଭାବରୁ ମାନସିକ ଉଦାସୀନତା ତଥା ବିଷର୍ଣ୍ଣତା ସମାଜକୁ ବିଷାଦଗ୍ରସ୍ତ କରି ରଖିଥାଏ ଏବଂ ଏହାର ନରନାରୀ ପଶ୍ଚାତମୁଖୀ ଭାବନାରେ ନିଜକୁ କଳୁଷିତ ତଥା ଦୀନହୀନ ମନେ କରି ଜଗନ୍ନାଥଙ୍କର କୌସ୍ତୁଭମଣିରେ ପରିଣତ ହେବାର ଅଭିଳାଷ ପରିବର୍ତ୍ତେ ରାସ୍ତାର ଧୂଳିକଣା ବୋଲି କରୁଣ ପ୍ରାର୍ଥନାରେ ରତ ହୋଇଯାଆନ୍ତି। ସିଦ୍ଧିର ଅଭାବରୁ ସାଧନା ଦୁର୍ବଳ ହୋଇଯାଏ।

# ମନୁଷ୍ୟର ସାମର୍ଥ୍ୟ ଓ ଦୁର୍ବଳତା

ମନୁଷ୍ୟ ଜୀବନର ଇତିହାସ ଆରମ୍ଭ ହେବା ପୂର୍ବରୁ ଆମର ଏହି ପୃଥିବୀ ବକ୍ଷରେ ଅନେକ ପ୍ରକାରର ଅତିକାୟ ଜୀବଜନ୍ତୁ ଓ ସରୀସୃପ ଜାତୀୟ ପ୍ରାଣୀମାନେ ବିଚରଣ କରୁଥିଲେ। ସେମାନଙ୍କର ଶାରୀରିକ ଶକ୍ତି, ଅବୟବାବଳୀ ଓ ଆକାର ପ୍ରକାର ତୁଳନାରେ ପାଞ୍ଚଫୁଟ ସାଢ଼େ ପାଞ୍ଚଫୁଟ କ୍ଷୁଦ୍ରକାୟ ମନୁଷ୍ୟ, ହାତୀ ପାଖରେ ମୂଷା ପରି ଦୁର୍ବଳ ଓ ନଗଣ୍ୟ ଦେଖାଯିବା ସ୍ୱାଭାବିକ; କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ଏହି ବିଶାଳକାୟ ଜୀବଜନ୍ତୁ ସବୁ ପ୍ରାଗୈତିହାସର କଥାବସ୍ତୁ ହୋଇ ରହିଥିବା ସ୍ଥଳେ ମଣିଷ ଇତିହାସ ତିଆରି କରିବାରେ ଲାଗିଛି ଏବଂ ଏହା ସମ୍ଭବ ହୋଇପାରିଛି ମଣିଷର ଅପେକ୍ଷାକୃତ ଉନ୍ନତ ମସ୍ତିଷ ଓ ମାଂସପେଶୀମାନଙ୍କର କର୍ମପଟୁତା କ୍ରମୋନ୍ନତ ବୁଦ୍ଧି ବଳରେ। ଏହି କାରଣ ଯୋଗୁଁ ଯେତେବେଳେ ହଠାତ୍ କୌଣସି ପ୍ରାକୃତିକ ବିପ୍ଲବ ଘଟେ, ଅତି ଥଣ୍ଡା ପବନ ସହିତ ବରଫ ମାଡ଼ିଆସେ କିମ୍ବା ଅନ୍ୟାନ୍ୟ ଜଳବାୟୁଜନିତ ପରିବର୍ତ୍ତନ ଦେଖାଦିଏ, ସେତେବେଳେ ଅଧିକାଂଶ ଜୀବଜନ୍ତୁ ପ୍ରାଣତ୍ୟାଗ କଲାବେଳେ ମଣିଷ ବୁଦ୍ଧିବଳରେ ନିଜକୁ ବଞ୍ଚାଇବାକୁ ଚେଷ୍ଟା କରେ। ଏହି ଚେଷ୍ଟା ମୂଳରେ ଯେଉଁ ଅନ୍ତର୍ନିହିତ ମାନସିକ ଶକ୍ତି ରହିଛି, ତାହା ପଶୁ-ସମାଜରେ ନାହିଁ। ପଶୁମାନେ ସେମାନଙ୍କର ନିତ୍ୟ ନୈମିତ୍ତିକ ଚାଲିଚଳନରେ ହଠାତ୍ ବାଧାବିଘ୍ନ ଆସି ପହଞ୍ଚିଲେ, ସେସବୁକୁ ଏଡ଼ାଇ ପାରନ୍ତି ନାହିଁ। ଅର୍ଥାତ୍ ନିଜକୁ ବିଭିନ୍ନ ପରିବର୍ତ୍ତିତ ଅବସ୍ଥାରେ ଖାପଖୁଆଇ ଚଳାଇବାର ମାନସିକ ଶକ୍ତି ସେମାନଙ୍କର ନାହିଁ। ଦୈନନ୍ଦିନ ଜୀବନର ଗୁଡ଼ୁରାଣ ମେଣ୍ଟାଇବା ପାଇଁ ସେମାନେ ଯନ୍ତ୍ରବତ୍ ଚାଳିତ ହୋଇଥାଆନ୍ତି ଏବଂ ସେଗୁଡ଼ିକ ଠିକ୍ ଗୋଟିଏ ପ୍ରକାର ରୀତିରେ ସମ୍ପାଦନ କରନ୍ତି। ଘଣ୍ଟା, ରେଡ଼ିଓ ପ୍ରଭୃତି ଯନ୍ତ୍ରସବୁ କେତେଗୁଡ଼ିଏ କଳକବ୍‌ଜା ଓ ସ୍ପ୍ରିଂ ସାହାଯ୍ୟରେ ଠିକ୍ ଠିକ୍ ଭାବରେ କାମ କଲା ପରି ଏମାନେ କେତୋଟି ଜନ୍ମଗତ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଯନ୍ତ୍ରବତ୍ କାମ କରିଯାଆନ୍ତି। ଏମାନେ ମନୁଷ୍ୟପରି ଭାବି, ଚିନ୍ତି ଅତୀତ ଅନୁଭୂତିକୁ ମନେରଖି ଭବିଷ୍ୟତ ପ୍ରତି ଦୃଷ୍ଟି ଦେଇ କୌଣସି ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ କାମ କରି ପାରନ୍ତିନାହିଁ; କିନ୍ତୁ ଯେଉଁ କେତୋଟି କାମ କରନ୍ତି, ବଡ଼ ନିର୍ଭୁଲ ଭାବରେ କରନ୍ତି। ବସା ତିଆରି କରିବା, ଜନ୍ମ ହେଲା ପରେ ପରେ ଖୁଣ୍ଟି ଖାଇବାକୁ ଆରମ୍ଭ କରିବା, ବିଭିନ୍ନ ଋତୁରେ ଆବଶ୍ୟକ ଅନୁଯାୟୀ କାମ କରିବା ପ୍ରଭୃତି କାର୍ଯ୍ୟାବଳୀ ପକ୍ଷୀମାନଙ୍କୁ ଶିଖିବାକୁ ହୁଏନା। ଏ ସବୁ ଜନ୍ମଗତ। ତେଣୁ ପଶୁପକ୍ଷୀ ଛୁଆମାନେ ଜନ୍ମ ହେବାର ସାମାନ୍ୟ କିଛିଦିନ ପରେ ହିଁ ସ୍ୱାଧୀନ ଭାବରେ ଜୀବନ ଧାରଣ କରିପାରନ୍ତି; କିନ୍ତୁ ମନୁଷ୍ୟ ଶିଶୁକୁ ଅନେକ ଦିନ ଧରି ବାପ, ମା' ଓ ଅନ୍ୟାନ୍ୟମାନଙ୍କ ଉପରେ ବହୁତ ବେଶି ନିର୍ଭର

କରିବାକୁ ପଡ଼େ। କାରଣ ସାମାନ୍ୟ କେତୋଟି ଜନ୍ମଗତ ପ୍ରବୃତ୍ତି ଛଡ଼ା ତାକୁ ମନୁଷ୍ୟସମାଜ ବିଷୟରେ ବହୁତ କିଛି ଶିଖିବାକୁ ହୋଇଥାଏ ଏବଂ ଏହି ଶିକ୍ଷା ତା'ର ଉନ୍ନତ ମସ୍ତିଷ ଓ ବୁଦ୍ଧିବଳରେ ସମ୍ଭବ ହୁଏ। କେବଳ ବ୍ୟକ୍ତିଗତ ଉନ୍ନତ ବୁଦ୍ଧି ଯଥେଷ୍ଟ ନୁହେଁ। ଦଳବଦ୍ଧ ମନୁଷ୍ୟ ସମାଜର କ୍ରମୋନ୍ନତି ହୋଇ ଆସୁଅଛି ଓ ଆମ୍ଭେମାନେ ପ୍ରଗତି ପଥରେ ଆଗେଇ ଚାଲିଛେ। ତା' ଅର୍ଥ ଆମର ଭଲମନ୍ଦ ଆମ ଚେଷ୍ଟା ଉପରେ ନିର୍ଭର କରେ; ପଶୁପକ୍ଷୀମାନଙ୍କପରି କେବଳ ଖାଇ ପିଇ ଛୁଆ ଜନ୍ମ କରି ମରି ଯିବାରେ ଆମର ସାର୍ଥକତା ରହେନାହିଁ। ଏତଦ୍‌ବ୍ୟତୀତ ଆମର ଆହୁରି ଅନେକ କିଛି ଆବଶ୍ୟକ। ତେଣୁ ଆମକୁ ଜୀବନ ଧାରଣ ଲାଗି ବହୁତ ପରିଶ୍ରମ କରିବାକୁ ହୁଏ ଏବଂ ତା ସଙ୍ଗେ ସଙ୍ଗେ ସାହିତ୍ୟ, କଳା, ବିଜ୍ଞାନ ପ୍ରଭୃତି ସୃଷ୍ଟି କରି ଆମେମାନେ ଜୀବନକୁ ଉପଭୋଗ କରିପାରୁ।

ଆଜି ଯେ ଆମେ ପ୍ରକୃତି ସହିତ ମିଳିମିଶି ବିଭିନ୍ନ ପ୍ରାକୃତିକ ଶକ୍ତିକୁ ଆମର ସୁବିଧା ଲାଗି ବିନିଯୋଗ କରିପାରିଛୁ, ତାହା ଆମ ଶକ୍ତିର ଯଥେଷ୍ଟ ପରିଚୟ ଦିଏ। ପ୍ରକୃତି ସାହାଯ୍ୟରେ ପ୍ରକୃତିକୁ କରାୟତ୍ତ କରିଛୁ; ହଜାର ହଜାର ମାଇଲ ବ୍ୟାପୀ ଗଭୀର ସମୁଦ୍ର, ଅଗ୍ନାଗ୍ନି ଗିରିକନ୍ଦର, ପ୍ରଖରସ୍ରୋତା ସ୍ରୋତସ୍ୱତୀ ପ୍ରଭୃତି ବିରାଟ ପ୍ରାକୃତିକ ପ୍ରତିବନ୍ଧକ ଆଗରେ ମନୁଷ୍ୟ ଆଜି କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ, ଦୁର୍ବଳ ଭାବରେ ଠିଆହୋଇ ଏମାନଙ୍କୁ ଅନାୟତ୍ତ ଦେବତା ହିସାବରେ ପୂଜା କରୁ ନାହିଁ; ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ପ୍ରଭୃତିଙ୍କ ଆଗରେ କାକୁତି ମିନତି କରି ନିଜର ଖାଦ୍ୟ ସଂଗ୍ରହ ଲାଗି ପ୍ରାର୍ଥନା କରିବାକୁ ଲଜ୍ଜାବୋଧ କରୁଛି; ମଣିଷ, ଛେଳି, କୁକୁଡ଼ା, ଗାଈ, ବଳଦର ରକ୍ତଦାନ କରି ପୃଥିବୀର ଉର୍ବରତା ବଢ଼ାଇବାର ବିଶ୍ୱାସ ତା'ର ଆଉ ନାହିଁ; ହଇଜା, ବସନ୍ତ, କୁଷ୍ଠ ପ୍ରଭୃତି ନିଦାରୁଣ ରୋଗର ଅନୁଷ୍ଠାତ୍ରୀ ଦେବୀମାନଙ୍କ ଆଗରେ ନତମସ୍ତକ ହୋଇ ପ୍ରାଣଭିକ୍ଷା କରିବାକୁ ଯାଉ ନାହିଁ କାହିଁକି? କାରଣ ମନୁଷ୍ୟ ଆଜି ତା'ର ଅନ୍ତର୍ନିହିତ ଶକ୍ତି ବିଷୟରେ ଯଥେଷ୍ଟ ସଚେତ ହୋଇପାରିଛି ଏବଂ ସେହି ଶକ୍ତି ବଳରେ ଏ ସମସ୍ତ ଶତ୍ରୁକୁ ନିଜର କରାୟତ୍ତ କରିପାରୁଛି ଏବଂ ଯେତିକି କରାୟତ୍ତ କରୁଛି, ସେତିକି ତା'ର ଆତ୍ମବିଶ୍ୱାସ ବଢ଼ିଯାଉଛି। ସେ ଆଗେଇ ଚାଲିବାରେ ଆହୁରି ଦୃଢ଼ପରିକର ହୋଇ ଉଠୁଛି। ମଣିଷର ଏ ଚେଷ୍ଟାରେ ପ୍ରକୃତି ଯେତିକି ପ୍ରତିବନ୍ଧକ ରୂପେ ଠିଆହେଉଛି, ସେତିକି ମଧ୍ୟ ସହାଯ୍ୟ କରୁଛି। ପ୍ରକୃତି ଯେପରି ଅପେକ୍ଷା କରି ରହିଛି, ମନୁଷ୍ୟର କରାୟତ୍ତ ହେବା ଲାଗି।

ମନୁଷ୍ୟର ସୃଷ୍ଟି କରିବାର ଶକ୍ତି ଓ ଉତ୍ସାହ ଏତେ ବେଶି ଯେ ସେ ସହଜରେ ପ୍ରକୃତି ଆଗରେ ହଟି ଯାଏନା। ଜଣେ ହଟିଗଲେ ଆଉ ଜଣେ ତା ପଛକୁ ବାହାରିଆସେ ଆଗେଇବା ଉଦ୍ଦେଶ୍ୟରେ। ଜଣେ ପକ୍ଷୀ ପରି ଉଡ଼ିବାକୁ ଚେଷ୍ଟା କରିବାକୁ ଯାଇ ପ୍ରାଣତ୍ୟାଗ କଲା ପରେ ପରେ ଆଉ ଜଣେ ବାହାରି

ଆସେ, ତା'ରି ଅସମ୍ପୂର୍ଣ୍ଣ ଆଶା ସଫଳ କରିବା ପାଇଁ। ଶେଷରେ ଜଣେ ନା ଜଣେ କୃତକାର୍ଯ୍ୟ ହୁଏ। ତା' ନ ହୋଇଥିଲେ ଆଜି ଆମେମାନେ ସଂସ୍କୃତି ଓ ସଭ୍ୟତାର ଏତେ ଉପରକୁ ଆସିପାରି ନ ଥା'ନ୍ତେ। ପ୍ରକୃତିକୁ କରାୟତ୍ତ କରି ଇଚ୍ଛାନୁସାରେ ଜୀବନଧାରଣ କରୁ ନ ଥାନ୍ତେ; ପକ୍ଷୀ ପରି ଆକାଶରେ ଉଡ଼ୁ ନ ଥା'ନ୍ତେ କି ମାଛ ପରି ପାଣିରେ ଭାସୁ ନ ଥା'ନ୍ତେ। କ୍ଷୁଦ୍ରାଦପି କ୍ଷୁଦ୍ର ଜୀବଣୁଠାରୁ ଆରମ୍ଭ କରି କୋଟି କୋଟି କ୍ରୋଶ ଦୂରରେ ଥିବା ଜ୍ୟୋତିଷମାନଙ୍କ ବିଷୟରେ ଅବାଧରେ ଗବେଷଣା ଚଳେଇ ନ ଥାନ୍ତେ। ମୋଟାମୋଟି ବର୍ତ୍ତମାନ ପର୍ଯ୍ୟନ୍ତ ମଣିଷ ବୁଦ୍ଧିବଳରେ ଯେଉଁ ଅସାଧାରଣ ସାଧନା କରିଛି, ତାହା କ'ଣ ଆମମାନଙ୍କର ବିରାଟ ଶକ୍ତିର ପରିଚୟ ଦିଏ ନାହିଁକି ?

ତେବେ ଏଠି ପ୍ରଶ୍ନ ଉଠିପାରେ ଯେ ଆମେ ଯେଉଁ ପରିମାଣରେ ଅସାଧାରଣ ଶକ୍ତିରେ ବଳୀୟାନ୍ ହୋଇ ଉଠିଛୁ, ସେହି ପରିମାଣରେ ମଧ୍ୟ ଆମର ଅନ୍ୟାନ୍ୟ ଦୁଃଖ ଯନ୍ତ୍ରଣାର ମାତ୍ରା ବଢ଼ିଚାଲିଛି। ଦ୍ରୁତଗାମୀ ଉଡ଼ାଜାହାଜ ସାହାଯ୍ୟରେ ହଜାର ହଜାର ମାଇଲ ଏକା ଦିନକେ ଅତିକ୍ରମ କରି ବହୁ ମୁମୂର୍ଷୁ ବ୍ୟକ୍ତିକୁ ଔଷଧ, ଖାଦ୍ୟ ପ୍ରଭୃତି ଦେଇ ମୃତ୍ୟୁମୁଖରୁ ଉଦ୍ଧାର କରିବାର ଶକ୍ତି ଆମର ଅଛି ସତ; କିନ୍ତୁ ସେହି ଦ୍ରୁତଗାମୀ ବିମାନ ସାହାଯ୍ୟରେ ଆମେ ଯୁଦ୍ଧ ସମୟରେ ଲକ୍ଷ ଲକ୍ଷ ନିରୀହ ନରନାରୀଙ୍କୁ ମୃତ୍ୟୁମୁଖକୁ ମଧ୍ୟ ଠେଲି ଦେଉଛୁ। ଯେଉଁ ପରମାଣୁ ଶକ୍ତି ଆମର ପୃଥିବୀର ସମସ୍ତ ଦୁଃଖ ଦାରିଦ୍ର୍ୟ ଘୁଞ୍ଚାଇ ଦେଇପାରେ, ସେହି ପରମାଣୁ ବୋମାର ଭୟରେ ସାରା ପୃଥିବୀ ଆତଙ୍କିତ ହୋଇ ଉଠିଛି। ହୁଏତ ନିକଟ ଭବିଷ୍ୟତରେ ସାରା ମାନବସମାଜ ହାଇଡ୍ରୋଜେନ୍ ବୋମାଦ୍ୱାରା ଧ୍ୱଂସ ହୋଇଯାଇ ପାରେ। ତେବେ ଆମର ସୁଖ ସମୃଦ୍ଧି ବଢ଼ିଲା କିପରି ? ଆମେ ପ୍ରଗତିର କ୍ରମୋନ୍ନତ ଶିଖର ଦେଶକୁ ଆଗେଇ ଚାଲିଛେ କିପରି ? ଆମର ସାମର୍ଥ୍ୟ ସହିତ ଆମର ଦୁର୍ବଳତା ଗୁଡ଼ିକ ମଧ୍ୟ ବହୁ ପରିମାଣରେ ବଢ଼ିଯାଇ ନାହିଁକି ? ଏ ପ୍ରକାର ସମସ୍ୟାର ସରଳ ଓ ପ୍ରଶ୍ନହୀନ ସମାଧାନରେ ପହଞ୍ଚିବା ବଡ଼ କଷ୍ଟ। ତେବେ ଏତିକି କୁହାଯାଇପାରେ ଯେ ଯେଉଁ ଶକ୍ତି ବଳରେ ଆମେମାନେ ଆଗେଇ ଚାଲିଛୁ, ସେହି ଶକ୍ତିବଳରେ ହିଁ ଆମେ ପଛକୁ ଟାଣି ଆଣୁଥିବା ଦୁର୍ବଳତାକୁ ପରାସ୍ତ କରିପାରିବୁ। ଅବଶ୍ୟ ଆମର ଦୁର୍ବଳତାଗୁଡ଼ିକୁ କ୍ଷୁଦ୍ର ବୋଲି ଧରିନେବା ଉଚିତ ନୁହେଁ। ଏହାର ପ୍ରଭାବ ବହୁତ ବେଶି। ଯଥାସମୟରେ ଦୁର୍ବଳତାଗୁଡ଼ିକୁ ଆୟତ୍ତାଧୀନ ନ କଲେ, ମନୁଷ୍ୟର ସର୍ବନାଶ ଯେ ନ ଘଟେ ନୁହେଁ। ଇତିହାସର ପତ୍ରେ ପତ୍ରେ ଏହାର ନମୁନା ମିଳେ; କିନ୍ତୁ ତା ବୋଲି ଦୁର୍ବଳତାକୁ ଅପରାଜେୟ ବୋଲି ଧରିନେବା ଭୁଲ୍। ଅନେକ ସମୟରେ ଆମେମାନେ କହିଥାଉଁ ଯେ ଅମୁକ ଘଟଣାଟା ଘଟିବା ସ୍ୱାଭାବିକ—ଏହା ମଣିଷ ପ୍ରକୃତି; ଯୁଦ୍ଧ ହେବା ସୁନିଶ୍ଚିତ—ଏହା ମଣିଷର ସ୍ୱଭାବଗତ କ୍ରିୟାକଳାପ ଏବଂ ଏହାକୁ ପ୍ରତିପାଦିତ କରିବା ପାଇଁ ପଶୁଜଗତର ଉଲ୍ଲେଖ ମଧ୍ୟ କରାଯାଇଥାଏ।

ଅବଶ୍ୟ ପଶୁ ପ୍ରବୃତ୍ତିଗୁଡ଼ିକ ମଣିଷମାନଙ୍କ ଭିତରେ ଭଣା ଅଧିକେ ଅଛି; କିନ୍ତୁ ତା' ବୋଲି ଠିକ୍ ସେହିପରି ନଗ୍ନଭାବରେ ଏହି ପଶୁ ପ୍ରବୃତ୍ତିଗୁଡ଼ିକ ଯେ ଆମ ଉପରେ ଆଧିପତ୍ୟ ବିସ୍ତାର କରିବ, ତା ଠିକ୍ ନୁହେଁ। ଯେଉଁ ଶକ୍ତିବଳରେ ଆମେମାନେ ସେମାନଙ୍କଠାରୁ ଏତେ ବେଶି ବଳୀୟାନ୍ ହୋଇ ପାରିଛୁ, ସେହି ଶକ୍ତିବଳରେ ଆମେମାନେ ଦୁର୍ବଳତାଗୁଡ଼ିକୁ ମଧ୍ୟ ନିୟନ୍ତ୍ରିତ କରିପାରିବୁ। ଯେତେବେଳେ ଏହା ସମ୍ଭବ ହୁଏନା, ସେତେବେଳେ ପୃଥିବୀରେ ଭୟଙ୍କର ସଂଘର୍ଷମୟ ପରିସ୍ଥିତି ସୃଷ୍ଟି ହୁଏ। ବିଜ୍ଞାନ-ପ୍ରସୂତ ସମସ୍ତ ସୁଫଳ ପଶୁ ପ୍ରବୃତ୍ତିର କୁଟିଳ ଆବର୍ତ୍ତ ଭିତରେ ଆସି ପଡ଼େ। ଫଳରେ ଦ୍ୱନ୍ଦ୍ୱ ଦେଖାଯାଏ ଓ ଭୟଙ୍କର ଧ୍ୱଂସ ମଧ୍ୟ ଘଟିଥାଏ। ମନୁଷ୍ୟର ବ୍ୟକ୍ତିଗତ ସ୍ୱାର୍ଥ, ସଂକୀର୍ଣ୍ଣତା, ହିଂସା, ଦ୍ୱେଷ, ପରଶ୍ରୀକାତରତା ନିଜ ସୁଖଶାନ୍ତି ପାଇଁ ଅଦମ୍ୟ ଚେଷ୍ଟା ଓ ପ୍ରଭୂତ ସମ୍ପତ୍ତି ସଞ୍ଚୟ କରିବାର ବଳବତୀଇଚ୍ଛା ପ୍ରଭୃତି ଦୁର୍ବଳତା ଯେ ଭୟଙ୍କର କ୍ଷତିକାରକ, ଏଥିରେ ସନ୍ଦେହ ନାହିଁ। ତେଣୁ ମନୁଷ୍ୟର ଆଗେଇ ଚାଲିବାର ଅନ୍ତର୍ନିହିତ ଶକ୍ତି ଯେ ତା'ର ଦୁଃଖ ଯନ୍ତ୍ରଣାର ମୂଳରେ ଅଛି, ତା ନୁହେଁ। ତା'ର ଦୁର୍ବଳତା ସବୁ ସେହି ଶକ୍ତିପ୍ରସୂତ ଫଳାଫଳକୁ ଠିକ୍ ଦିଗରେ ବ୍ୟବହାର କରିବାରେ ବାଧା ସୃଷ୍ଟି କରେ; କିନ୍ତୁ ଚେଷ୍ଟା କଲେ ନିଶ୍ଚୟ ଉପରୋକ୍ତ ଦୁର୍ବଳତା ସବୁକୁ ଆୟତ୍ତାଧୀନ କରାଯାଇ ପାରିବ।

ବର୍ତ୍ତମାନ ପରିସ୍ଥିତିରେ ଆମେମାନେ ଯେତେ ଦ୍ରୁତଗତିରେ ଗୋଟିଏ ଦିଗରେ ଆଗେଇ ଚାଲିଛୁ, ସେତେ ଶୀଘ୍ର ଆମର ଦୁର୍ବଳତାଗୁଡ଼ିକୁ ନିୟନ୍ତ୍ରିତ କରିପାରି ନାହୁଁ। ସେଥିଯୋଗୁଁ ପରମାଣୁ ଶକ୍ତି ପରି ବିରାଟ ଦାନକୁ ମୁଷ୍ଟିମେୟ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ନିଜର ସୁବିଧା ଲାଗି ବ୍ୟବହାର କରିବାକୁ ଚେଷ୍ଟା କରୁଛନ୍ତି; କିନ୍ତୁ ମାନବସମାଜର ସଂଘବଦ୍ଧ ଚେଷ୍ଟା ଯେ ଏ ପ୍ରକାର ଉଦ୍ୟମକୁ ବିଫଳ କରି ଦେଇପାରିବ, ଏଥିରେ ସନ୍ଦେହ ନାହିଁ। ଅବଶ୍ୟ ଏହା ସମ୍ଭବ ହେବା ପୂର୍ବରୁ ଆମ୍ଭମାନଙ୍କୁ କେତେଗୁଡ଼ିଏ ବ୍ୟକ୍ତିଗତ ଓ ଜାତିଗତ ସଂକୀର୍ଣ୍ଣ ଦୁର୍ବଳତା ଛାଡ଼ି ଏ ଦିଗରେ ଅଗ୍ରସର ହେବାକୁ ହେବ। ତା' ନହେଲେ ପୃଥିବୀବ୍ୟାପୀ ଏ ପ୍ରକାର ସଂଘର୍ଷମୟ ପରିସ୍ଥିତିର ସମ୍ମୁଖୀନ ହେବା ଲାଗି ଆମର ଶକ୍ତି ଯଥେଷ୍ଟ ହେବନାହିଁ। ତେଣୁ ଆମର ଯେ ଏ ଦିଗରେ ସାମର୍ଥ୍ୟ ନାହିଁ ତା ନୁହେଁ; କିନ୍ତୁ ସେ ସାମର୍ଥ୍ୟକୁ କେନ୍ଦ୍ରୀଭୂତ କରି ଗୋଟିଏ ଦିଗରେ ପ୍ରୟୋଗ କରିବାର ଚେଷ୍ଟା ହେବା ଉଚିତ। ତା' ହେଲେ ବ୍ୟକ୍ତି ବିଶେଷ ବା ମୁଷ୍ଟିମେୟ ଲୋକଙ୍କର ଦୁର୍ବଳତା ସମଷ୍ଟିଗତ ଶକ୍ତିବଳରେ ନିଶ୍ଚୟ ସଂପୂର୍ଣ୍ଣ ରୂପେ ପରାସ୍ତ ହୋଇପାରିବ। ■□■

# ପରିବର୍ତ୍ତନ ଓ ବିଚାରଗତ ଦ୍ୱନ୍ଦ୍ୱ

ପାରିପାର୍ଶ୍ୱିକ ଅବସ୍ଥା ସହିତ ନିଜକୁ ମିଳାଇ ନେଇ ଚାଲିବା ହେଉଛି ଜୀବନୀ ଶକ୍ତିର ପ୍ରଧାନ ଧର୍ମ। ସାଧାରଣ ସମୟରେ ମନୁଷ୍ୟର ଚାଲିଚଳଣ, ହାବଭାବ, ଆଚାର ବିଚାର, ରୀତିନୀତିସବୁ ପରିସ୍ଥିତି ଉପଯୋଗୀ ହେବା ଉଚିତ। ତା' ହେଲେ ସେ କୃତକାର୍ଯ୍ୟତାର ସହିତ ଆଗେଇ ଚାଲିପାରିବ, ନଚେତ ପଛେଇଯିବ—ଜୀବନ ସଂଗ୍ରାମରେ ହାରିଯିବ। ଯେଉଁମାନେ ଏପରିଭାବରେ ତାଳ ପକାଇ ଅଗ୍ରସର ହେବେ ସେମାନେ ଆଗେଇଯିବେ। ଏ ପ୍ରକାର ଅଗ୍ରଗତିରେ ହିଁ ମନୁଷ୍ୟର ଉନ୍ନତି, ସଭ୍ୟତାର ପ୍ରଗତି, ସଂସ୍କୃତିର ପରାକାଷ୍ଠା ଓ ଜୀବନର ସରସତା। ପ୍ରାଗୈତିହାସିକ ଯୁଗରୁ ମାନବ ଜାତିର ଏ ପ୍ରକାର ପ୍ରବଳ ପ୍ରୟାସ ବଜାୟ ରହିଆସିଛି। ତେଣୁ ଏହା ମହାମାନବୀୟ ନୀତିଧର୍ମ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

ମନୁଷ୍ୟ ବଞ୍ଚିବା ପାଇଁ ପ୍ରକୃତିର ସାହାଯ୍ୟ ନିଏ। ପ୍ରକୃତିର ବିନା ସାହାଯ୍ୟରେ ତା'ର କୌଣସି ସୁବିଧା ହୋଇପାରିବ ନାହିଁ। ମନୁଷ୍ୟ ପ୍ରକୃତିଠାରୁ ଗୋଟିଏ ପୂରାପୂରି ଅଲଗାଜୀବ ନୁହେଁ; ବରଂ ସେ ହେଉଛି ପ୍ରକୃତିର ନିୟନ୍ତ୍ରିତ ଗୋଟିଏ କାର୍ଯ୍ୟକାରୀ କେନ୍ଦ୍ର ମାତ୍ର। ମନୁଷ୍ୟ ସଚେତ ଅବସ୍ଥାପ୍ରାପ୍ତ ହୋଇଥିବାରୁ ପ୍ରକୃତିର ବିଭିନ୍ନ ଶକ୍ତି ଭିତରୁ ନିଜର ସୁବିଧା ଲାଗି ବ୍ୟବହୃତ ହୋଇପାରୁଥିବା ଶକ୍ତିଗୁଡ଼ିକୁ ଆଦର କରେ। ନାନାରକମର କାମରେ ତାକୁ ଖଟାଇ ନିଜର ସୁବିଧା ହାସଲ କରିପାରେ ଏବଂ ଅନ୍ୟାନ୍ୟ କ୍ଷତିକାରକ ଶକ୍ତିଗୁଡ଼ିକୁ ଦୂରରେ ରଖିବାକୁ ଚେଷ୍ଟା କରେ। ନିଜର ସୁବିଧା ଅନୁସାରେ କାମରେ ଲଗାଇ ନ ପାରିବା ପର୍ଯ୍ୟନ୍ତ ସେଗୁଡ଼ିକୁ ଶତ୍ରୁ ବୋଲି ମଧ ମନେକରେ। ଯେଉଁ ପ୍ରାକୃତିକ ଶକ୍ତି ସମୂହକୁ ନିଜର ଉପକାରୀ ବନ୍ଧୁ ବୋଲି ସେ ମନେକରେ, ସେମାନଙ୍କୁ ଅନେକ ସମୟରେ ଦେବତା ବୋଲି ଗ୍ରହଣ କରିଥାଏ। ବିଶେଷତଃ ବହୁ ସହସ୍ର ବର୍ଷତଳେ ମନୁଷ୍ୟ ଜୀବନ ଯେତେବେଳେ ନିତାନ୍ତ ସରଳ ଥିଲା ଓ ପାରିପାର୍ଶ୍ୱିକ ପରିସ୍ଥିତି ମଧ ତା'ରି କାର୍ଯ୍ୟକଳାପ ଯୋଗୁଁ ଜଟିଳ ହୋଇପଡ଼ି ନ ଥିଲା, ସେତେବେଳେ ମନୁଷ୍ୟର ସରଳ ମନ ପ୍ରାକୃତିକ ଜଗତ ପ୍ରତି ସମ୍ମାନ ଦେଖାଉଥିଲା। ତାକୁ ଆଦରରେ ପୂଜା କରୁଥିଲା। ନିଜର ପ୍ରକୃତି ଅନୁସାରେ ସେ ସବୁକୁ ମାନବୋଚିତ ଦୟା, ସେବା, କ୍ଷମାଗୁଣରେ ବିଭୂଷିତ ନିଜର ପରମବନ୍ଧୁ ହିସାବରେ ଗ୍ରହଣ କରିପାରିଥିଲା। ଆର୍ଯ୍ୟମାନେ ସୂର୍ଯ୍ୟ, ଚନ୍ଦ୍ର, ବରୁଣ, ଇନ୍ଦ୍ର, କୁବେର ପ୍ରଭୃତିଙ୍କୁ ଯେଉଁ ସମ୍ମାନ ଓ ଭକ୍ତି ଦେଖାଉଥିଲେ, ତାହା ସେମାନଙ୍କର ଅତି ସରଳ ମନର ଯଥେଷ୍ଟ ଆଭାସ ଦିଏ। ସେ ଯୁଗର ସଙ୍ଗୀତର ପ୍ରାଣମତାଣିଆ ଉଲ୍ଲାସରେ ସେମାନଙ୍କର ପ୍ରାଣର ଅକପଟ ଆବେଦନ ଓ ବିଶ୍ୱାସ ଫୁଟି ଉଠେ। ସୃଷ୍ଟିକର୍ତ୍ତା ଭଗବାନ ଯେ ସେମାନଙ୍କର ସୁବିଧା ପାଇଁ ଚନ୍ଦ୍ର, ସୂର୍ଯ୍ୟ ସୃଷ୍ଟି କରିଛନ୍ତି—ଇନ୍ଦ୍ରଙ୍କୁ ବୃଷ୍ଟି କରିବା ପାଇଁ ନିୟୋଜିତ କରିଛନ୍ତି ଓ ଅନ୍ୟାନ୍ୟ ଯାବତୀୟ ଜଡ଼ବସ୍ତୁକୁ ଜୀବଜଗତ ବିଶେଷତଃ

ସର୍ବଶ୍ରେଷ୍ଠ ମାନବ ସମାଜର ସୁଖସ୍ୱାଚ୍ଛନ୍ଦ୍ୟ ଲାଗି ସୃଷ୍ଟି କରିଛନ୍ତି, ଏ ବିଷୟରେ ବୋଧହୁଏ କାହାରି ସନ୍ଦେହ ନ ଥିଲା ।

ମନୁଷ୍ୟ ମନୁଷ୍ୟର ତଥା ଅନ୍ୟାନ୍ୟ ଜୀବଜନ୍ତୁଙ୍କର ଉପକାର ସାଧନ କରିପାରେ, ଦୟା ଦେଖାଇ ଜଣେ ଜଣକୁ ଯନ୍ତ୍ରଣାଜ୍ୱାଳାରୁ ରକ୍ଷା କରିପାରେ କିମ୍ବା ଖାଇବାକୁ ଦେଇ ଆଜୀବନ ନିଜ ପାଖରେ ସମସ୍ତ ପ୍ରକାର ସୁବିଧା ସହ ବଞ୍ଚାଇ ରଖିପାରେ, ତା' ହେଲେ ସେ ତାହାର ତ୍ରାଣକର୍ତ୍ତା ବା ପାଳନକର୍ତ୍ତା ବୋଲି ବିବେଚିତ ହୋଇଥାଏ । ତେବେ ଏତେ ବଡ଼ ସୃଷ୍ଟିରେ ଏତେ ବେଶି ସୁବିଧା ଯେତେବେଳେ ମନୁଷ୍ୟ ପାଇଁ ସୃଷ୍ଟି ହୋଇଛି, ସେତେବେଳେ ନିଶ୍ଚୟ ଜଣେ ସୃଷ୍ଟିକର୍ତ୍ତା ମନୁଷ୍ୟର ସୁଖ ପାଇଁ ଏସବୁର ନିୟାମକ ହିସାବରେ ରହିଛନ୍ତି ଏବଂ ଏହି ନିୟାମକ ମନୁଷ୍ୟ ପରି ହେଲେ ସୁଦ୍ଧା ମନୁଷ୍ୟଠାରୁ ବହୁଗୁଣରେ ଶକ୍ତିଶାଳୀ । ସୃଷ୍ଟିର ଅସୀମତା ଦୃଷ୍ଟିରୁ ସେ ନିଶ୍ଚୟ ଅସୀମ । ସମସ୍ତ ପ୍ରକାର ଗୁଣରେ ଅପରିସୀମ । ଅଭିଜ୍ଞତାରେ ସର୍ବଜ୍ଞାତା ଓ ସମୟ ଦୃଷ୍ଟିରେ ଅବିନଶ୍ୱର ହୋଇଥିବେ । ଏହି ଦୃଢ଼ବିଶ୍ୱାସ ଯେଉଁମାନଙ୍କର ଥିଲା ସେହିମାନେ ହେଉଛନ୍ତି ସେ ଯୁଗର ସର୍ବଶ୍ରେଷ୍ଠ ମାନବ ଜାତି । ସେମାନଙ୍କର ଏହି ଦୃଢ଼ବିଶ୍ୱାସ ହିଁ ସେମାନଙ୍କୁ ପ୍ରଗତି ପଥରେ ଆଗେଇ ନେଇ ପାରିଥିଲା । ଦ୍ୱନ୍ଦହୀନ ଯୁକ୍ତିରହିତ ଅଖଣ୍ଡବିଶ୍ୱାସ ହିଁ ମନୁଷ୍ୟର ଉନ୍ନତି ପଥର ପ୍ରଧାନ ବନ୍ଧୁ । ଅବଶ୍ୟ ଏ ପ୍ରକାର ଅତି ଉଚ୍ଚଧରଣର ବିଶ୍ୱାସ ସେ ଯୁଗର ସବୁ ଶ୍ରେଣୀର ମାନବ ସମାଜରେ ନ ରହିବା ସ୍ୱାଭାବିକ । କେବଳ ବୁଦ୍ଧି ଓ ବିଚାରଯୁକ୍ତ ସାମାନ୍ୟ କେତେକ ଶ୍ରେଣୀର ଲୋକଙ୍କ ମନରେ ହିଁ ଏପରି ବିଶ୍ୱାସ ସମ୍ଭବ । କାୟିକ ପରିଶ୍ରମରେ ସାରାଦିନ ଲିପ୍ତ ଥିବା ଜନସାଧାରଣଙ୍କଠାରେ ଏ ପ୍ରକାର ବୁଦ୍ଧି, ବିଚାରଯୁକ୍ତ କଠିନ ଦାର୍ଶନିକ ବିଶ୍ୱାସ ଜନ୍ମିବା କଷ୍ଟକର । ତା' ଅର୍ଥ ସେମାନଙ୍କର ଯେ କିଛି ବିଶ୍ୱାସ ନ ଥିଲା, ତାହା ନୁହେଁ । ସେମାନଙ୍କର ବିଶ୍ୱାସ ସେମାନଙ୍କର ପରିସ୍ଥିତି ଅନୁଯାୟୀ ଅତି ସରଳ ତଥା ସ୍ଥୂଳ ଥିଲା । କାରଣ ମନରେ କୌଣସି ନା କୌଣସି ବିଶ୍ୱାସ ନ ରଖି କେହି ମନୁଷ୍ୟ ସୁରୁଖୁରୁରେ ଜୀବନଯାପନ କରିପାରେ ନା । ସକାଳୁ-ସନ୍ଧ୍ୟା ଓ ବୁଦ୍ଧିର ବିକାଶ ହେଲା ଦିନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ ମୁହୂର୍ତ୍ତରେ ବିଶ୍ୱାସ ହିଁ ମନୁଷ୍ୟକୁ ଚଳାଇଥାଏ । ସକାଳୁ ଉଠିଲାକ୍ଷଣି ସେ ପୂର୍ବ ଦିଗକୁ ଚାହେଁ, କାରଣ ତା'ର ବିଶ୍ୱାସ ଯେ ସୂର୍ଯ୍ୟ ପ୍ରତିଦିନ ସେହିପରି ସେହି ଗୋଟିଏ ଦିଗରେ ଦେଖାଦେବ । ଦିନଯାକ କାମ କଲା ପରେ ସେ ଅପେକ୍ଷା କରେ ରାତିକୁ ବିଶ୍ରାମ ପାଇଁ । ଗୋଟିଏ ସମୟରେ ସେ ଆଶା କରେ ବର୍ଷା ହେବ, ଆଉ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଶୀତ ବା ଗ୍ରୀଷ୍ମ ହେବ । ସେହି ଅନୁସାରେ ସେ ତା'ର ଦୈନନ୍ଦିନ ଜୀବନର କାର୍ଯ୍ୟାବଳୀ ନିୟନ୍ତ୍ରିତ କରେ । ଏହି ସବୁ ବିଶ୍ୱାସ ସହିତ କେତେକ ବାସ୍ତବ ଘଟଣାର ସାମଞ୍ଜସ୍ୟ ନ ଥାଇପାରେ । ମଝିରେ ମଝିରେ ସେଥିଲାଗି ତା'ର ଅସୁବିଧା ହୋଇପାରେ, ତଥାପି ନବ ଯୁଗର ବୈପ୍ଲବିକ ନୂତନ ବିଶ୍ୱାସ ପୁରାତନ ବିଶ୍ୱାସର ସ୍ଥାନ ଅଧିକାର ନ କଲାଯାଏ ମନୁଷ୍ୟ ପୂର୍ବ ବିଶ୍ୱାସକୁ ମିଥ୍ୟା ବୋଲି ବିସର୍ଜନ କରିଦେଇ ପାରେ ନା । ନିଜର ଭାଗ୍ୟ, ପ୍ରାକୃତିକ ଘଟଣା ପ୍ରଭୃତି ସାହାଯ୍ୟରେ ସିନା ସେ

ସବୁକୁ ବୁଝିବାକୁ ଚେଷ୍ଟା କରେ ତଥାପି ପୂର୍ବ ବିଶ୍ୱାସକୁ ସେ ଛାଡ଼ିପାରେ ନାହିଁ। ଫଳରେ ବିଶ୍ୱାସ କୁସଂସ୍କାରଯୁକ୍ତ ହୋଇପଡ଼େ ଓ କ୍ରମେ କ୍ରମେ ନୂତନ ଯୁଗର ନୂତନ ଆଲୋକରେ ମ୍ରିୟମାଣ ହୋଇଯାନ୍ତି। ଯେଉଁମାନେ ସେ ସବୁକୁ ସହଜରେ ଛାଡ଼ିପାରନ୍ତିନି, ସେମାନେ ପଛେଇ ଯାଆନ୍ତି। ନବ ଯୁଗର ନୂତନ ମଶାଲଧାରୀ ସୈନିକମାନେ ଏମାନଙ୍କୁ ପଛକୁ ହଟାଇ ଆଗକୁ ମାଡ଼ିଯାଆନ୍ତି। କ୍ରମେ ବିଶ୍ୱାସ ସବୁ ବଦଳିଯାଏ ; କିନ୍ତୁ ପୁରୁଣା ବିଶ୍ୱାସ ପରିବର୍ତ୍ତେ ନୂତନ ବିଶ୍ୱାସର ପ୍ରତିଷ୍ଠା ହେବା ଲାଗି ଅନେକ କ୍ଷେତ୍ରରେ ବହୁ ସମୟ ଲାଗେ। ମାନବ ସମାଜକୁ ବହୁ ଚେଷ୍ଟା କରିବାକୁ ହୁଏ, ଅନେକ ସମୟରେ ଯୁଦ୍ଧ ବିଗ୍ରହ, ରାଷ୍ଟ୍ରବିପ୍ଳବ ମଧ୍ୟ ଦେଖାଦେଇଥାଏ। ଏଥିରେ ସେ ସମୟାନୁଯାୟୀ କେତେକ ଉନ୍ନତ ଦେଶ ହୁଏତ ପୂରାପୂରି ଧ୍ୱଂସ ହୋଇଯାଏ ଏବଂ ଆଉ କେତେକ ଅପେକ୍ଷାକୃତ ଅବନତ ଦେଶ ଅତି ଦ୍ରୁତ ଗତିରେ ଉନ୍ନତିର ସୋପାନ ଶ୍ରେଣୀରେ ଉଠିଯାଆନ୍ତି।

ସାରା ମନୁଷ୍ୟ ଜାତିର କ୍ରମବିବର୍ତ୍ତନ ଇତିହାସର ଆଲୋଚନା କଲେ ଦେଖାଯାଏ ଯେ ନାନାପ୍ରକାର ବିଶ୍ୱାସ ଭିତରେ ଅବିରତ ଦ୍ୱନ୍ଦ୍ୱ ଲାଗିରହିଛି। ଇନ୍ଦ୍ର, ଚନ୍ଦ୍ର, ବରୁଣ, ସୂର୍ଯ୍ୟ ପ୍ରଭୃତି ମାନବ କଳ୍ପନା-ପ୍ରସୂତ ଦେବତାମାନଙ୍କର କ୍ଷମତା, ସେମାନଙ୍କର ମନୁଷ୍ୟମାନଙ୍କୁ ଯତ୍ନ ସହକାରେ ପାଳନ କରିବାର ଅଭିପ୍ରାୟ ପ୍ରଭୃତି ବିଷୟରେ ଯେଉଁ ଦୃଢ଼ବିଶ୍ୱାସ ତାହା ସବୁସମୟଧରି କାର୍ଯ୍ୟକାରୀ ହୋଇପାରେ ନାହିଁ। ପରିବର୍ତ୍ତିତ ଯୁଗର ପରିବର୍ଦ୍ଧିତ ଜ୍ଞାନର ସୀମା ବଢ଼ି ଚାଲିବା ସଙ୍ଗେ ସଙ୍ଗେ ଏ ପ୍ରକାର ସରଳବିଶ୍ୱାସ ଭିତରେ ଦ୍ୱନ୍ଦ୍ୱ ଦେଖାଯିବା ସ୍ୱାଭାବିକ। ବୁଦ୍ଧିମାନ ମନୁଷ୍ୟ ନିଜର ବିଚାରଶକ୍ତି ସାହାଯ୍ୟରେ ଦେଖିପାରିଲା ଯେ ବହୁତ ପୂଜା କଲେ ସୁଦ୍ଧା ଅସମୟରେ ଇନ୍ଦ୍ରଦେବଙ୍କୁ କେଉଁ ହେଲେ ସନ୍ତୁଷ୍ଟ କରି ପାରୁନି ; କିନ୍ତୁ କୌଣସି ପୂଜା ନ କଲେ ସୁଦ୍ଧା ଏବଂ କୌଣସି ଦରକାରରେ ଆସୁ ନ ଥିଲେ ସୁଦ୍ଧା ଅନବରତ ବୃଷ୍ଟିରେ ସେସବୁ ବୁଡ଼ିଯାଉଛି। ଅନବରତ ବୃଷ୍ଟିରେ ସବୁ ବୁଡ଼ିଯାଉଛି। ଦିନ ଦିନ ଧରି ପୂଜା କଲେ ସୁଦ୍ଧା ଜଣେ ଅନବରତ ଯନ୍ତ୍ରଣା ପାଉଛି ଓ ଆଉ ଜଣେ ପୂଜାପୂଜି ଦିଅଁ ଦେବତାଙ୍କର ନାମ ନ ନେଇ ସୁଦ୍ଧା ଆରାମରେ ରହିପାରୁଛି। ଜଣେ କୃତ୍ରିମ ଉପାୟରେ ବସନ୍ତ କିମ୍ବା ହଇଜାରୁ ରକ୍ଷା ପାଇପାରୁଛି ଓ ଆଉ ଜଣେ ଗଣ୍ଡା ଗଣ୍ଡା ଛେଳି କୁକୁଡ଼ା ଯାଚି ସୁଦ୍ଧା ସପରିବାରେ ମୃତ୍ୟୁ ମୁଖରେ ପଡୁଛି। ଏହି ବ୍ୟର୍ଥତା ପଛରୁ ଉଙ୍କିମାରିଛି ପୁରୁଣା ବିଶ୍ୱାସର ଚିତା। ଯାହା ଦିନେ ଦୃଢ଼ବିଶ୍ୱାସ ବୋଲି ଗୃହୀତ ହେଉଥାଏ, ତାହା କ୍ରମେ ଅବିଶ୍ୱାସରେ ପରିଣତ ହୁଏ। ପ୍ରଥମେ ଅତି ବୁଦ୍ଧିମାନ ଲୋକଙ୍କ ମନରେ ଏ ପ୍ରକାର ବିପ୍ଳବାତ୍ମକ ସନ୍ଦେହ ଦେଖାଯାଏ ; କିନ୍ତୁ କ୍ରମେ ଏହା ସମାଜର ସବୁ ଶ୍ରେଣୀର ମନୁଷ୍ୟମାନଙ୍କ ମନରେ ଆସି ଆସ୍ଥାନ ମାଡ଼ିବସେ।

ସଚେତନ ମନୁଷ୍ୟର ପ୍ରତିଚ୍ଛବି ଅନୁସାରେ ଅଚେତନ ପ୍ରାକୃତିକ ବସ୍ତୁ ଓ ଜଡ଼ ନିୟମଗୁଡ଼ିକୁ ଦେଖିବାରେ ଯେଉଁ ଭୁଲ୍ ବିଶ୍ୱାସ ମନୁଷ୍ୟ ମନକୁ ଆବୋରି ରହିଥିଲା, ସେସବୁ କ୍ରମେ କ୍ରମେ ଦୂରୀଭୂତ ହୋଇଯିବା ପରେ ଯେ ମନୁଷ୍ୟର ବିଶ୍ୱାସ ସବୁ ଯୁକ୍ତିଯୁକ୍ତ ଓ ମନୁଷ୍ୟର ଚିନ୍ତାଧାରା ବୈଜ୍ଞାନିକ ବିଶ୍ଳେଷଣରେ ପର୍ଯ୍ୟବସିତ ହେଲା, ତାହା ନୁହେଁ।

ମନୁଷ୍ୟ କେବେ ହେଲେ ଧ୍ରୁବନିଶ୍ଚିତ ତଥ୍ୟରେ ପହଞ୍ଚିପାରିବ ନାହିଁ। ଯାହା ଆଜି ସତ୍ୟ ବୋଲି ମନେ ହେଉଛି, ହୁଏତ ଜ୍ଞାନର ସୀମା ବଢ଼ିଯିବା ସଙ୍ଗେ ସଙ୍ଗେ କାଲି ତାହା ମିଥ୍ୟା ବୋଲି ପ୍ରମାଣିତ ହୋଇଯିବ। ଆଜିର ବିଶ୍ୱାସ କାଲିର କୁସଂସ୍କାରରେ ପରିଣତ ହୋଇଯିବ। ତେଣୁ ମନୁଷ୍ୟର ବିଶ୍ୱାସ ସେହି ଅନୁସାରେ ବଦଳିବା ଉଚିତ; କିନ୍ତୁ ଏପରି ବଦଳିବା ଯୁକ୍ତିଯୁକ୍ତ ବୋଲି ମନୁଷ୍ୟର ମନେ ହେଲେ ସୁଦ୍ଧା ଏବଂ କୌଣସି ଗୋଟିଏ କଥାକୁ ସେ ମିଥ୍ୟା ବୋଲି ଗ୍ରହଣ କଲେ ସୁଦ୍ଧା ତା'ର ପୁରାତନ ବିଶ୍ୱାସକୁ ସେ ସହଜରେ ଛାଡ଼ିପାରେନା। ସମାଜର ଅଧିକାଂଶ ଲୋକଙ୍କର ଜ୍ଞାନର ସୀମା ବଢ଼ିଥିଲେ ସୁଦ୍ଧା ସେମାନଙ୍କର ପୁରାତନ ବିଶ୍ୱାସକୁ ସେମାନେ ଖୁବ୍ ଶୀଘ୍ର ଛାଡ଼ିପାରନ୍ତି ନାହିଁ। ତା' ଅର୍ଥ ବୁଦ୍ଧି ଗୋଟିଏ କଥାକୁ ସତ୍ୟ ବୋଲି ସ୍ୱୀକାର କରୁ ନ ଥିଲେ ସୁଦ୍ଧା ମନର ଆଉ ଗୋଟିଏ କ୍ଷେତ୍ରରେ ତାହା ଆଦର୍ଶ ରୂପେ ଗୃହୀତ ହୋଇଥାଏ। ଯେତେବେଳେ ଜ୍ଞାନ ରାଜ୍ୟରେ ବିପ୍ଳବାତ୍ମକ ପରିବର୍ତ୍ତନ ଆସେ, ସେତେବେଳେ ମନୁଷ୍ୟ ମନରେ ଏ ପ୍ରକାର ଦ୍ୱନ୍ଦ୍ୱ ଦେଖାଯାଏ। ବୁଦ୍ଧି ମନୁଷ୍ୟ ଜୀବନର ସାମାନ୍ୟ ଗୋଟିଏ ଅଂଶକୁ ମାତ୍ର ପ୍ରଭାବିତ କରେ; କିନ୍ତୁ ବିଶ୍ୱାସ ତାର ସାରା ପ୍ରାଣକୁ ଆନ୍ଦୋଳିତ କରିଦେଇପାରେ। ସେଥିପାଇଁ ବୁଦ୍ଧିର ଆଦେଶରେ ବିଶ୍ୱାସ ହଠାତ୍ ବଦଳିଯାଏ ନାହିଁ। ଅବଶ୍ୟ କେତେକ ଯେ ବିଚାରଶକ୍ତି ଅନୁସାରେ ବିଶ୍ୱାସ ବଦଳାଇ ନ ପାରନ୍ତି, ତାହା ନୁହେଁ; କିନ୍ତୁ ସାଧାରଣଲୋକେ ଏହା ସହଜରେ କରିପାରନ୍ତି ନାହିଁ। ବୁଦ୍ଧି ବହୁତ ବହୁତ ଆଗକୁ ମାଡ଼ିଯାଉଥିବା ବେଳେ ବିଶ୍ୱାସ ପଛ ଦୁନିଆକୁ ଟାଣିଧରେ; କିନ୍ତୁ ଏ ଦୁଇ ଶକ୍ତି ଭିତରେ ଉପଯୁକ୍ତ ମିଳନ ନ ହେଲେ ମନୁଷ୍ୟର ମନ ବଡ଼ ଦୁର୍ବଳ ହୋଇପଡ଼େ। ଜୀବନୀଶକ୍ତି ବାଧାବିଘ୍ନ ଅତିକ୍ରମ କରି ଆଗକୁ ଅଗ୍ରସର ହୋଇପାରେ ନାହିଁ। ବ୍ୟକ୍ତିବିଶେଷଙ୍କ ଏ ପ୍ରକାର ଦ୍ୱନ୍ଦ୍ୱଯୁକ୍ତ ମନ ସାରା ସାମାଜିକ ଜୀବନକୁ ମଧ ଦୁର୍ବଳ ଓ କଳୁଷିତ କରିପକାଏ। ଯେଉଁ ଜାତି ଯେତେ ସଭ୍ୟ ଓ ଶକ୍ତିଶାଳୀ, ସେହି ଜାତିର ଅଧିକାଂଶ ଲୋକେ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱର ବାହାରେ। ମନୁଷ୍ୟର ବିଶ୍ୱାସ, ବୁଦ୍ଧି ଓ ବିଚାର ଶକ୍ତି ସହିତ ତାଳ ମିଳାଇ ଚାଲି ନ ପାରିଲେ କାମ କରିବା ପାଇଁ ଦୃଢ଼ତା ଆସିପାରେ ନାହିଁ।

ଆଧୁନିକ ଯୁଗରେ ପ୍ରତ୍ୟେକ ଦେଶରେ ବିଚାରଶକ୍ତି ପରିଚାଳିତ ବିଜ୍ଞାନ-ପ୍ରସୂତ ଫଳାଫଳ ସହିତ ମନୁଷ୍ୟର ବିଶ୍ୱାସ ଅନେକ ସମୟରେ ଖାପ ଖାଉନାହିଁ। ଏଥିଲାଗି ଯେଉଁ ବ୍ୟର୍ଥତା ଓ ମାନସିକ ଦ୍ୱନ୍ଦ୍ୱ ଦେଖାଯାଉଛି ତାହା ବହୁ କ୍ଷତି କରୁଛି। ବିଶେଷତଃ ଆମ ଦେଶରେ ଏହାର ସତ୍ୟତା ଭଲଭାବରେ ଉପଲବ୍ଧି କରିହୁଏ। ଆମ ଦେଶରେ ବିଜ୍ଞାନର ପ୍ରଭାବ ଯେଉଁମାନଙ୍କ ଉପରେ ପଡ଼ିଛି, ସେମାନେ ପ୍ରକୃତରେ ବିଜ୍ଞାନର ତଥ୍ୟାତଥ୍ୟ ଅନୁସାରେ ପରିଚାଳିତ ନୁହଁନ୍ତି। ସଭାସ୍ଥଳରେ ବିଜ୍ଞାନ ଓ ମନୁଷ୍ୟର ବିଚାର ଶକ୍ତିର ପ୍ରଶଂସା କରୁଥିଲାବେଳେ ଘରକୁ ଫେରିଲା ପରେ ହଜାର ହଜାର ବର୍ଷ ଧରି ଗଢ଼ି

ଆସୁଥିବା ନାନାପ୍ରକାର ସଂକୀର୍ଣ୍ଣ କୁସଂସ୍କାରରେ ଦୃଢ଼ ବିଶ୍ୱାସ ସହ କାମ କରନ୍ତି। ତେଣୁ ପୋଥି ବାଇଗଣ ଓ ବାରି ବାଇଗଣ ଭିତରେ ଯେଉଁ ପ୍ରଭେଦ, ତାହା ବହୁ କ୍ଷେତ୍ରରେ ଆମ୍ଭେମାନେ ଦେଖିବାକୁ ପାଉ। ଡାକ୍ତର ବିଜ୍ଞାନସମ୍ମତ ଜ୍ଞାନ ବିଷୟରେ ବକ୍ତୃତା କରୁଥିଲାବେଳେ ପୁଅର ଦେହ ଖରାପ ହେଲେ ମା' କାଳୀଙ୍କୁ କୁକୁଡ଼ା ଯାଚେ କିମ୍ବା ଶିବ ମୂର୍ତ୍ତି ପାଖରେ ବ୍ରାହ୍ମଣ ବସାଇ ଅଭିଷେକ କରେ। ସମାଜସେବୀ ନେତା ଶ୍ରେଣୀହୀନ, ଜାତିହୀନ, ବର୍ଣ୍ଣହୀନ ସମାଜ ପ୍ରତିଷ୍ଠା କରିବା ପାଇଁ ଯେଉଁମାନଙ୍କ ଆଗରେ ଜ୍ୱାଳାମୟୀ ବକ୍ତୃତା କରେ, ସେହିମାନଙ୍କୁ ପୁଅର ବ୍ରତଘର ପାଇଁ ମଧ୍ୟ ନିମନ୍ତ୍ରଣ କରେ। ଧର୍ମପରାୟଣ ଜନସେବୀ "ସର୍ବଦେହେ ନାରାୟଣ" ବୋଲି କହୁଥିଲାବେଳେ ହରିଜନମାନଙ୍କଠୁଁ ଜଳସ୍ପର୍ଶ କରେ ନାହିଁ ଓ ଜଗନ୍ନାଥ ମନ୍ଦିର ଉପରେ ପତିତପାବନ ବାନା ଉଡ଼ାଇଲା ପରେ ମଧ୍ୟ ହରିଜନ ପିଲାଟିଏ ମନ୍ଦିର ମଧ୍ୟରେ ପଶିଗଲାକ୍ଷଣି ପତିତପାବନଙ୍କର ଭୋଗକୁ ଅପବିତ୍ର ହେଲା ବୋଲି ପୋତିପକାଏ। ଏହିପରି ନାନାପ୍ରକାର ଦ୍ୱନ୍ଦ୍ୱ ଆମ୍ଭମାନଙ୍କ ମନରେ ରହିଛି। ତେଣୁ ଆମ ଲୋକଙ୍କ ଭିତରେ ଗୋଟିଏ ବଳିଷ୍ଠ ଆତ୍ମବିଶ୍ୱାସ ଦେଖାଯାଏ ନାହିଁ କି, କୌଣସି କାମରେ ମନର ଦୃଢ଼ତା ପ୍ରକାଶ ପାଏ ନାହିଁ। ଶିକ୍ଷିତ ସମ୍ପ୍ରଦାୟ ଭିତରେ ହିଁ ଏ ପ୍ରକାର ଦ୍ୱନ୍ଦ୍ୱ ବେଶି ଦେଖାଯାଏ। ଯେଉଁମାନେ ଆଧୁନିକ ଯୁଗର ସଂସ୍ପର୍ଶରେ ଆସି ନାହିଁ, ଯେଉଁମାନଙ୍କର ପୁରୁଣା ଆଦର୍ଶ ବିଜ୍ଞାନର ନୂତନ ସତ୍ୟ ଆଗରେ ମୁହାଁମୁହିଁ ଭେଟି ନାହାନ୍ତି, ସେମାନଙ୍କ ଭିତରେ ବରଂ ଏପ୍ରକାର ଦ୍ୱନ୍ଦ୍ୱ କମ୍ ଦେଖାଯାଏ ; କିନ୍ତୁ ବର୍ତ୍ତମାନ ଆମ ଦେଶରେ ଯେଉଁ ଅବସ୍ଥା, ସେଥିରେ ଶିକ୍ଷିତ ଲୋକେ ହିଁ ସମାଜର ଅସଲ କର୍ମକର୍ତ୍ତା। ତେଣୁ ଏମାନଙ୍କଠାରେ ଦ୍ୱନ୍ଦ୍ୱହୀନ ବଳିଷ୍ଠ ମନୋଭାବ ସୃଷ୍ଟି ନ ହେଲାଯାଏ ଆମ ସମାଜ କୌଣସିମତେ ଆଗେଇ ପାରିବ ନାହିଁ। ଯେଉଁ ଦେଶର ଅଧିକାଂଶ ନରନାରୀ ଅତୀତ ଯୁଗର ଆଦର୍ଶ ଛାଡ଼ି ଆଧୁନିକ ଯୁଗରେ ବିଜ୍ଞାନସମ୍ମତ ଚିନ୍ତାଧାରାଦ୍ୱାରା ଅନୁପ୍ରାଣିତ, ସେମାନେ ଆମ୍ଭମାନଙ୍କୁ ପାଦରେ ଦଳି ଆଗେଇ ଯିବେ ଏବଂ ଆମେ ଦୁର୍ବଳ ଓ ପରାଧୀନ ହୋଇ ପଡ଼ିରହିବା। ତା'ଛଡ଼ା ଆମେମାନେ ଦୁର୍ବଳ ମନା ହୋଇଯିବାରୁ ଆଗେଇ ଯିବାର ସାମର୍ଥ୍ୟ ଓ ଆତ୍ମ ବିଶ୍ୱାସ ଆମରି କମ ହେବ, ଆମର ଦ୍ୱନ୍ଦ୍ୱାତ୍ମକ ଦୁଶ୍ଚିନ୍ତା ବଢ଼ି ବଢ଼ି ଚାଲିବ। ତେଣୁ ପ୍ରତ୍ୟେକଙ୍କର ଏ ବିଷୟରେ ଗଭୀର ଚିନ୍ତା କରି ଦେଖିବା ଉଚିତ। ■□■

---

ଏ ପ୍ରବନ୍ଧଟିରେ ମନୁଷ୍ୟର ସମସ୍ତ ପ୍ରକାର ମାନସିକ ଦ୍ୱନ୍ଦ୍ୱ ବିଷୟରେ ଆଲୋଚିତ ହୋଇନାହିଁ। ଐତିହାସିକ ବିବର୍ତ୍ତନ ଦେଇ ସେ ଅଗ୍ରସର ହେଉଥିଲାବେଳେ ତା' ମନ ଭିତରେ ପ୍ରତ୍ୟେକ ଯୁଗର ଦେଖାଦେଇଥିବା ଦ୍ୱନ୍ଦ୍ୱର ସାମାନ୍ୟ ଆଭାଷ ଦେବାପାଇଁ ଚେଷ୍ଟା ହୋଇଛି।

# ବୈଜ୍ଞାନିକ ଦୃଷ୍ଟିକୋଣ ଓ ତା'ର ବିଷୟବସ୍ତୁ

ପୁରୁଣା ସମାଜରେ ପ୍ରଚଳିତ ବିଶ୍ୱାସ, ଚାଲିଚଳଣ ଆଚାର ବିଚାର କେତେକ ଧରାବନ୍ଧା ନିୟମ ଅନୁସାରେ ପରିଚାଳିତ ହୋଇଥାଏ। ଏହି ନିୟମ ସବୁ ଧର୍ମଗ୍ରନ୍ଥ। ଗୁରୁବଚନ ଓ ନାନାପ୍ରକାରର ପୌରାଣିକ ବ୍ୟାଖ୍ୟାନୁଯାୟୀ ଅନୁମୋଦିତ ବୋଲି ଜନସାଧାରଣ ଗ୍ରହଣ କରି ନେଉଥାଆନ୍ତି। ସେସବୁ ବିଷୟରେ ପ୍ରଶ୍ନ କରିବାକୁ, ତାକୁ ନୂଆ କରି ବିଶ୍ଳେଷଣ କରିବା ଅନ୍ୟାୟ ଓ ଅନୁଚିତ ବୋଲି ସାଧାରଣରେ କୁହାଯାଇଥାଏ। ସବୁ ଗୁରୁବାକ୍ୟକୁ ପ୍ରଶ୍ନ କରିବା ନିଷିଦ୍ଧ ବୋଲି ଧରାଯାଏ।

ବୈଜ୍ଞାନିକ ଯୁଗ ଆରମ୍ଭ ହେଲା। ପରେ ମନୁଷ୍ୟର ସବୁପ୍ରକାରର ଆଚାର ବିଚାର ବିଶ୍ୱାସ, ଅନ୍ଧବିଶ୍ୱାସ, ସଂସ୍କାର, କୁସ୍କାରକୁ ପ୍ରଶ୍ନ କରି ନୂତନ ବିଚାର ଧାରା ସୃଷ୍ଟି କରିବା ବାତାବରଣ ଦେଖାଦେଲା। ବୈଜ୍ଞାନିକ ଦୃଷ୍ଟିକୋଣ ହେଲା ପ୍ରତ୍ୟେକ ଘଟଣାକୁ ପ୍ରତ୍ୟେକ ବିଶ୍ୱାସକୁ ପ୍ରଶ୍ନ କରିବା, ତାକୁ ନାନା ଦିଗରୁ ବିଶ୍ଳେଷଣ କରି ତା'ର ସତ୍ୟାସତ୍ୟ ନିର୍ଦ୍ଧାରଣ କରିବା। ଏପ୍ରକାର ମନୋବୃତ୍ତି ପ୍ରକୃତରେ ମନୁଷ୍ୟର ସହଜାତ ଗୁଣ। ତେଣୁ ପିଲାମାନେ ସବୁବେଳେ ଜାଣିବାପାଇଁ ନାନା ପ୍ରକାରର ପ୍ରଶ୍ନ କରିଥାଆନ୍ତି। ସବୁ ବିଷୟରେ ସେମାନେ କାହିଁକି ଓ କିପରି ହେଲା ବୋଲି ଜାଣିବାକୁ ଚାହାଁନ୍ତି। ସେମାନଙ୍କର ପ୍ରଶ୍ନର ଉତ୍ତର ସାଧାରଣତଃ ବଡ଼ ମାନେ ଦେଇ ପାରନ୍ତି ନାହିଁ ବରଂ ସେମାନେ ବୋଲି ପଚାରିଲେ ବିରକ୍ତ ହୁଅନ୍ତି, ଆମ ସ୍କୁଲ, କଲେଜରେ ମଧ ଶିକ୍ଷକମାନେ ପିଲାମାନଙ୍କୁ ବହୁ ପ୍ରଶ୍ନ ପଚାରିବାର ସୁଯୋଗ ଦିଅନ୍ତି ନାହିଁ କି ପସନ୍ଦ ମଧ୍ୟ କରନ୍ତି ନାହିଁ; ଫଳରେ ସେମାନଙ୍କର କାର୍ଯ୍ୟ କାରଣ ସମ୍ପର୍କରେ ଥିବା ସହଜାତ ଗୁଣ ଦବି ଯାଏ। ସେମାନେ ଅନ୍ୟମାନେ ଯାହା କରନ୍ତି ବା କହନ୍ତି ତାକୁ ବିନା ପ୍ରଶ୍ନରେ, ଗ୍ରହଣ କରିବାକୁ ବାଧ କରାଯାଏ। ତେଣୁ ବହୁ ଅନ୍ଧ ବିଶ୍ୱାସକୁ ବିନା ଦ୍ୱିଧାରେ ସେମାନେ ଗ୍ରହଣ କରିନିଅନ୍ତି। ସେ ଗୋଟିଏ ସାମାଜିକ ଯନ୍ତ୍ରରେ ପରିଣତ ହୋଇଯାଏ। ଠିକ୍ ଏହି କାରଣରୁ ଆମ ସମାଜରେ। ବହୁ ଅନ୍ଧ ବିଶ୍ୱାସ ଓ ଯୁକ୍ତିଯୁକ୍ତହୀନ ଆ ାର ବିଚାର ଯୁଗଯୁଗ ଧରି ଚାଲି ଆସିଛି। ବହୁ ପୁରାତନ ସମାଜରେ ଏପ୍ରକାରର ୀତିନୀତି ଅପରିବର୍ତ୍ତିତ ଅବସ୍ଥାରେ ପ୍ରଚଳିତ ଥିବାର ଦେଖାଯାଏ।

ପ୍ରତ୍ୟେକ ସମାଜରେ ମଝି ମଝିରେ ଯୁଗ ପ୍ରବର୍ତ୍ତକମାନେ ସମାଜରେ ଗଢ଼ି ଉଠିଥିବା ଅନ୍ଧ ବିଶ୍ୱାସକୁ ବଦଳାଇ ନୂତନ ଚିନ୍ତାଧାରା ପ୍ରବର୍ତ୍ତନ କରି ଥାଆନ୍ତି। ସୁଦୂର ଅତୀତରେ ବୁଦ୍ଧଦେବ ଏବଂ ନିକଟ ଅତୀତରେ, ନାନକ, ରାଜାରାମମୋହନ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି ମହାନ୍ ବ୍ୟକ୍ତିମାନେ ପ୍ରଚଳିତ ସମାଜର କୁ-ସଂସ୍କାର ବିରୁଦ୍ଧରେ ଅଭିଯାନ କରି ସାମାଜିକ ପରିବର୍ତ୍ତନ ସୃଷ୍ଟି କରି ଯାଇଛନ୍ତି। ୟୁରୋପରେ ମଧ୍ୟ ଏପ୍ରକାର ଧାରାବାହିକ ଉଦ୍ୟମ ଯୋଗୁଁହିଁ ବୈଜ୍ଞାନିକ ଚିନ୍ତାଧାରା ସୃଷ୍ଟି ହୋଇପାରିଛି ଏବଂ ସାରା ପୃଥିବୀରେ ବୈଜ୍ଞାନିକ ଦୃଷ୍ଟିକୋଣ ପ୍ରସାରିତ ହୋଇଚାଲିଛି। ବର୍ତ୍ତମାନ ଯୁଗରେ ପରୀକ୍ଷା

ନିରୀକ୍ଷା ନ କରି, କାର୍ଯ୍ୟ କାରଣ ସଂପର୍କ ବିଷୟରେ ସ୍ପଷ୍ଟ ଧାରଣା ସୃଷ୍ଟି ନ ହେଲା ଯାଏ, କୌଣସି ଯୁକ୍ତି ବା ବିଶ୍ୱାସ ଆଉ ଗ୍ରହଣଯୋଗ୍ୟ ନୁହେଁ। ପ୍ରତ୍ୟେକ ବିଷୟର କାର୍ଯ୍ୟ କାରଣ ସଂପର୍କ ପ୍ରତିଷ୍ଠା କରିବା ହେଉଛି ବୈଜ୍ଞାନିକ ଦୃଷ୍ଟିକୋଣ। ସବୁ ପ୍ରଶ୍ନର ଯଥାଯଥ ଉତ୍ତର ଦେବା ହେଉଛି ଆଧୁନିକ ଯୁଗର ବିପ୍ଳବକାରୀ ଦୃଷ୍ଟିକୋଣ। ବର୍ଷା କାହିଁକି ହୁଏ, ବିଜୁଳି କାହିଁକି ମାରେ, ଦିନ ରାତି କିପରି ହୁଏ, ରୋଗ କାହିଁକି ହୁଏ ଇତ୍ୟାଦି ସବୁ ପ୍ରଶ୍ନ ପଛରେ କାର୍ଯ୍ୟ କାରଣ ସମ୍ପର୍କ ପ୍ରତିଷ୍ଠା କରିବା ଯେପରି ବୈଜ୍ଞାନିକ ଚିନ୍ତାଧାରା, ତୁମ ଗାଡ଼ି ଆଗରେ କଳା ବିରାଡ଼ି ଦୌଡ଼ିଗଲା ପରେ ଯଦି ଗାଡ଼ି ଦୁର୍ଘଟଣା ଘଟେ, ସେ ଦୁଇଟି ଘଟଣା କ'ଣ କାର୍ଯ୍ୟକାରଣ ସମ୍ପର୍କିତ ତଥ୍ୟ ? ଦିନ, ବାର, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ଗ୍ରହଣ ଅନୁସାରେ ମନୁଷ୍ୟଠାରେ ନାନାପ୍ରକାର ଫଳାଫଳ ଖାଦ୍ୟ ଦ୍ରବ୍ୟ ନିଷେଧ ଇତ୍ୟାଦି ବିଷୟରେ ମଧ ସେହିପରି କାର୍ଯ୍ୟକାରଣ ସଂପର୍କ ପ୍ରତିଷ୍ଠା କରିବାର ଯୌକ୍ତିକତା ରହିଛି।

କାର୍ଯ୍ୟକାରରେ ସଂପର୍କ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠା ହୋଇଗଲେ ଯେକୌଣସି ସମୟରେ ବା ସ୍ଥାନରେ ଯେକୌଣସି ଲୋକ ସଂପୃକ୍ତ କାରଣମାନଙ୍କର ଯୋଗାଯୋଗ କରି ସେହି କାର୍ଯ୍ୟକୁ ସୃଷ୍ଟି କରିପାରିବ। ଏହାର ପ୍ରକ୍ରିୟା ସବୁ ସ୍ଥାନରେ ଏକାପରି ହେବା ସ୍ୱାଭାବିକ। ତାହାହିଁ ଯଥାଯଥ ସତ୍ୟତା। ତେଣୁ ଏପରି ମନୋଭାବସଂପନ୍ନ ଲୋକ କୌଣସି ଅନିର୍ଦ୍ଦିଷ୍ଟ ଉଡ଼ନ୍ତା କିମ୍ବଦନ୍ତି ବା ପ୍ରଚଳିତ ଅନ୍ଧ ବିଶ୍ୱାସକୁ କଡ଼ା ପରୀକ୍ଷା ନିରୀକ୍ଷା କରି ଗ୍ରହଣ କରିପାରିବ ନାହିଁ। ତା'ଫଳରେ ସେ ଗୋଟିଏ ସତ୍ୟନିଷ୍ଠ ବାସ୍ତବ ଜଗତ ଭିତରେ ନିର୍ଦ୍ୱନ୍ଦରେ ରହିପାରିବ, କୁ-ସଂସ୍କାର ଓ ଅନ୍ଧବିଶ୍ୱାସ ଯୋଗୁ ଅନିର୍ଦ୍ଦିଷ୍ଟ ଭୟ ଓ ଆଶଙ୍କା ତାକୁ ଅଯଥା କଳେତ କରିପାରେ ନାହିଁ। କିନ୍ତୁ ଯେଉଁମାନଙ୍କଠାରେ ଏପ୍ରକାର ବୈଜ୍ଞାନିକ ଦୃଷ୍ଟିକୋଣ ନଥାଏ ସେମାନେ ଅଯଥା ଭୟ ଆଶଙ୍କା ଓ ଗଭୀର ଉଦ୍‌ବିଗ୍ନତା ସହ କାଳଯାପନ କରନ୍ତି। ଅନେକ ମଧ ଏପ୍ରକାର ଉଦ୍‌ବିଗ୍ନତା ଯୋଗୁ ମାନସିକ ତଥା ନାନାପ୍ରକାର ଶାରୀରିକ ରୋଗଗ୍ରସ୍ତ ହୋଇପଡ଼ନ୍ତି।

ବୈଜ୍ଞାନିକ ଦୃଷ୍ଟିକୋଣ ଥିବା ଲୋକ ବାସ୍ତବ ଜଗତକୁ ଯଥାଯଥ ଭାବରେ ଗ୍ରହଣ କରୁଥିବାରୁ ଯେକୌଣସି ଆଲୋଚନାବେଳେ ସେ ଅଯଥା ଅଯୌକ୍ତିକ ଭାବାବେଗର ବଶବର୍ତ୍ତୀ ହୁଏ ନାହିଁ। ତେଣୁ ବୈଜ୍ଞାନିକମାନଙ୍କର ଆଲୋଚନା ସଭାରେ ଅଯୌକ୍ତିକ ବା ଅତିରଞ୍ଜିତ ଭାବାବେଗ ଦେଖାଯାଏ ନାହିଁ। ଅଥଚ ଧର୍ମସଭାରେ ପ୍ରତ୍ୟେକ ବ୍ୟକ୍ତିର ମତ ନିଜ ନିଜର ବ୍ୟକ୍ତିଗତ ଅନୁଭୂତି ଓ ଅପ୍ରାଣିତ ତଥା ଅପ୍ରତିପାଦନୀୟ ତଥ୍ୟ ଉପରେ ଆଧାରିତ ହୋଇଥିବାରୁ ସେମାନଙ୍କର ସଭା ବହୁ ଅଯୌକ୍ତିକ କଥାବାର୍ତ୍ତାରେ ମୁଖରିତ ତଥା ଉଷ୍ମତା ହୋଇଥାଏ। ବହୁ ପୁରାତନ ଗ୍ରନ୍ଥର ବହୁ ଦ୍ୱନ୍ଦ୍ୱଯୁକ୍ତ ଉକ୍ତିମାନ କେବଳ ଉଦ୍ଧାର କରି ତାଙ୍କର ମତକୁ ସାବ୍ୟସ୍ତ କରିବାକୁ ସମସ୍ତେ ଉଦ୍ୟମ କରନ୍ତି। ଉଦାହରଣସ୍ୱରୂପ, ଅମୁକ ବ୍ୟକ୍ତି ସୂର୍ଯ୍ୟଙ୍କର ପୁତ୍ର ହୋଇଥିବାରୁ ତାଠାରେ ଏପରି ଗୁଣ ରହିବାକୁ ବାଧ କିମ୍ବା ନିଜେ ଈଶ୍ୱର ଆସି ଜନ୍ମ ନେବାକୁ ଇଚ୍ଛା କରିବ ଯେ ପିତାରେ ମାତା ଗର୍ଭରେ ଆସି ଜାତ ହେଲେ ଇତ୍ୟାଦି ବହୁ ଅବାସ୍ତବ ଅତିରଞ୍ଜିତ କଥା ଉପସ୍ଥାପନ ଏମାନଙ୍କର ଅଯୌକ୍ତିକ ଯୁକ୍ତି ଏପରି ବାଦିମୂଳ ବିଶ୍ୱାସରେ ପରିଣତ ହୋଇଥାଏ ଯେ

ଜଣେ ବିଖ୍ୟାତ ଜ୍ୟୋତିଷ ବହୁ ତର୍କ କରି ହସରେ ଉଡ଼ାଇଦେଲେ ଯେ ମନୁଷ୍ୟ ଚନ୍ଦ୍ର ପୃଷ୍ଠରେ ଅବତରଣ କରିପାରିଛି– ତାଙ୍କ ମତରେ ଏହା ସମ୍ପୂର୍ଣ୍ଣ ମିଥ୍ୟା କାରଣ ତାଙ୍କ ଶାସ୍ତ୍ରରେ ଅଛି ଯେ ଚନ୍ଦ୍ର କେବଳ ଗୋଟିଏ ପ୍ରେତ ଲୋକ। ସେଠାରେ ଜୀବନ୍ତ ମନୁଷ୍ୟ ପହଞ୍ଚି ପାରିବ ନାହିଁ।

ଯୁକ୍ତିଯୁକ୍ତ ଆଚାର ବିଚାର ଓ ବିଶ୍ୱାସରେ ଅଭ୍ୟସ୍ତ ଥିବା ଲୋକମାନେ କୁ-ସଂସ୍କାର ଗ୍ରସ୍ତ ମନଠାରୁ ବହୁ ପରିମାଣରେ ମୁକ୍ତଥିବାରୁ ତାଠରେ ଗୋଟିଏ ସନ୍ତୁଳିତ ମନୋଭାବ ସ୍ଥାୟୀ ଭାବରେ ରହିପାରେ। ଏପ୍ରକାରର ବୈଜ୍ଞାନିକ ଦୃଷ୍ଟିକୋଣ କ୍ରମେ ବହୁ ଦେଶରେ ଦେଖା ଦେଇଛି। ଫଳରେ ସାରା ପୃଥିବୀରେ ଧର୍ମ, ଜାତି, ବର୍ଣ୍ଣ ନିର୍ବିଶେଷରେ ମହାମାନବମୟ ଭାବ ଧାରା ସୃଷ୍ଟି ହୋଇପାରୁଛି। ଏହା ଆଧୁନିକ ବୈଜ୍ଞାନିକ ଯୁଗର ପ୍ରଧାନ ଅବଦାନ ବୋଲି ଅଭିହିତ ହେଉଛି। ତେଣୁ ଆମ ଶିକ୍ଷା ଓ ସାମାଜୀକରଣ ନୀତି ଏହି ବୈଜ୍ଞାନିକ ମନୋଭାବ ଉପରେ ପର୍ଯ୍ୟବେସିତ ହେବା ବାଞ୍ଛନୀୟ। ଯାହା ଫଳରେ ଆମ ପକ୍ଷରେ କୌଣସି ମତ ବା ବିଶ୍ୱାସ ବିନା ବିଚାରରେ ଗ୍ରହଣଯୋଗ୍ୟ ହେବ ନାହିଁ।

ବିଜ୍ଞାନ କହିଲେ ଅନେକେ କେବଳ କେତୋଟି ନିର୍ଦ୍ଧାରିତ ବିଷୟବସ୍ତୁକୁ ବୁଝନ୍ତି। ସ୍କୁଲ କଲେଜମାନଙ୍କରେ ସେହି କେତୋଟି ବିଷୟବସ୍ତୁକୁ ବିଜ୍ଞାନ ବିଭାଗରେ ରଖାଯାଏ ଏବଂ ଆଉ କେତେଗୁଡ଼ିଏ ବିଷୟ ଆର୍ଟସ୍ ବା କଳା ବିଭାଗରେ ପଢ଼ା ହୋଇଥାଏ। ଏହି ଦୁଇଟି ବିଭାଗ ଭିତରେ ଗୋଟିଏ ଶିକ୍ଷାଗତ ଓ ଆଦର୍ଶଗତ ଅଭେଦ୍ୟ ପାଚିରୀ ରହିଥାଏ। ଦୁଇଟି ବିଭାଗର ଶିକ୍ଷକ ଛାତ୍ରମାନଙ୍କ ଭିତରେ ଭୟଙ୍କର ବାଦ–ବିବାଦ, ଦ୍ୱେଷ–ବିଦ୍ୱେଷ ଲାଗି ରହିଥାଏ। କେତେକ ତଥାକଥିତ ବୈଜ୍ଞାନିକମାନଙ୍କଠାରେ କଳା ସମ୍ବନ୍ଧୀୟ ବିଷୟବସ୍ତୁ ପ୍ରତି ଏପରି କୁସଂସ୍କାର, ଦ୍ୱେଷ ଓ ଘୃଣା ରହିଛି ଯେ ଏସବୁ କ୍ଷେତ୍ରରେ ପଠନୋପଯୋଗୀ କୌଣସି ବିଷୟବସ୍ତୁ ଅଛି ବୋଲି ସେମାନଙ୍କର ବିଶ୍ୱାସ ନାହିଁ। ସଦାସର୍ବଦା ଏମାନଙ୍କର ବିରୁଦ୍ଧରେ ବିଷୋଦ୍‌ଗୀରଣ କରିକରି ନିଜର ଅବୈଜ୍ଞାନିକ ମନୋବୃତ୍ତିର ପରିଚୟ ଦିଅନ୍ତି; କିନ୍ତୁ ପ୍ରକୃତରେ ଯେ ବିଜ୍ଞାନପ୍ରେମୀ, ବିଜ୍ଞାନ ପ୍ରତି ଯାହାର ପ୍ରକୃତ ଶ୍ରଦ୍ଧା ରହିଛି, ବିଜ୍ଞାନର ଆଦର୍ଶରେ ଯେ ପ୍ରକୃତରେ ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ, ବିଜ୍ଞାନର ଏ ପ୍ରକାର ସୀମିତ ଅର୍ଥରେ ସେ ସନ୍ତୁଷ୍ଟ ନୁହେଁ। ବିଜ୍ଞାନର ମୂଳତତ୍ତ୍ୱ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଅନୁଯାୟୀ ସେ ବିଷୟବସ୍ତୁର ଶ୍ରେଣୀ ବିଭାଗ କରିଥାଏ। ବିଷୟବସ୍ତୁର ନାମ ଅନୁସାରେ ନୁହେଁ। କେତେକ ରସାୟନତତ୍ତ୍ୱ ଅବୈଜ୍ଞାନିକ କାରଣ ସମନ୍ୱିତ ହୋଇପାରେ, ଅଥଚ କେତେକ ଐତିହାସିକ ତଥ୍ୟ ପ୍ରକୃତ ବୈଜ୍ଞାନିକ ସିଦ୍ଧାନ୍ତ ହିସାବରେ ପରିଗଣିତ ହୋଇପାରେ।

ତା'ହେଲେ ବିଜ୍ଞାନର ଅସଲ ମାନଦଣ୍ଡ କ'ଣ ? କି ପ୍ରଣାଳୀ ଦ୍ୱାରା ସଂଗୃହୀତ ବିଷୟବସ୍ତୁକୁ ବିଜ୍ଞାନସିଦ୍ଧ ବୋଲି ଧରାଯାଇ ପାରେ ?

ଯେଉଁ ତଥ୍ୟକୁ ପରୀକ୍ଷାଗାରରେ କେତୋଟି ନିର୍ଦ୍ଦିଷ୍ଟ ଅଭିକ୍ରିୟା ଦ୍ୱାରା ସମସ୍ତଙ୍କ ଆଗରେ ପ୍ରତିପାଦିତ କରିହେବ, ତାକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ। ତେଣୁ ଅଭିକ୍ରିୟା ଏବଂ ପ୍ରୟୋଗ ହେଲା ବିଜ୍ଞାନର ପ୍ରଧାନ ଅସ୍ତ୍ର। କୃତ୍ରିମ ଉପାୟରେ ଏହା

ସାଧିତ ହୋଇପାରୁଥିବାରୁ ଏହାକୁ ବାରମ୍ବାର ସଂଘଟିତ କରାଯାଇପାରେ ଏବଂ ବହୁ ଲୋକେ ମଧ୍ଯ ଏହାକୁ ପ୍ରତିପାଦିତ କରିପାରନ୍ତି। ଏହା ହେଉଛି ବିଜ୍ଞାନର ଗୋଟିଏ ଶକ୍ତିଶାଳୀ ପ୍ରଣାଳୀ। ତା' ଫଳରେ ଅଳ୍ପ ସମୟ ଭିତରେ ବହୁ ଜଟିଳ ତଥ୍ୟ ଭିନ୍ନ ଭିନ୍ନ ଦେଶରେ ବିଭିନ୍ନ ଗବେଷକଙ୍କ ଦ୍ଵାରା ପ୍ରତିପାଦିତ ହୋଇପାରେ। ଏଥିଯୋଗୁଁ ହିଁ ବିଜ୍ଞାନର କଳ୍ପନାତୀତ ଅଗ୍ରଗତି।

ଏହାଛଡ଼ା ବିଜ୍ଞାନର ଆଉ ଗୋଟିଏ ପ୍ରଣାଳୀ ରହିଛି। ଯଦି କୌଣସି ବସ୍ତୁ ଗବେଷଣାଗାର ଭିତରେ କୃତ୍ରିମ ଉପାୟରେ ସଂଯୋଜିତ କରାଯାଇ ନ ପାରେ ତା'ହେଲେ ତା' କ'ଣ ବିଜ୍ଞାନର ବହିର୍ଭୂତ ହେବ? ଏହା ଯଦି ପୃଥିବୀର ବୈଜ୍ଞାନିକମାନଙ୍କର ମତ ହୋଇଥାଆନ୍ତା, ତା'ହେଲେ ଜୀବ ବିଜ୍ଞାନ, ଗ୍ରହ ନକ୍ଷତ୍ରାଦି ବିଜ୍ଞାନ, ନୃତତ୍ତ୍ଵ, ମନୋବିଜ୍ଞାନ ଓ ଅନ୍ୟାନ୍ୟ ସମାଜ ବିଜ୍ଞାନ ଅନ୍ଧାରରେ ପଡ଼ି ରହିଥାନ୍ତା। ଗତ ଶହେ ବର୍ଷ ଭିତରେ ଏ ସମସ୍ତ କ୍ଷେତ୍ରରେ ଆମର ଯେଉଁ ଜ୍ଞାନଲାଭ ହୋଇଛି ତାହା କୌଣସି ଗୁଣରେ ଜଡ଼ ବିଜ୍ଞାନର ତଥ୍ୟାବଳୀଠାରୁ ନିକୃଷ୍ଟ ନୁହେଁ। ଏସବୁ କ୍ଷେତ୍ରରେ ସବୁ ସମୟରେ ଜଡ଼ବସ୍ତୁ ନେଇ କୃତ୍ରିମ ଅଭିକ୍ରିୟା ସଂପାଦନ କଲାପରି ନିଜ ଇଚ୍ଛାନୁଯାୟୀ ଅଭିକ୍ରିୟା ସଂଯୋଜିତ କରାଯାଇ ପାରେ ନାହିଁ। ତେଣୁ ଅନ୍ୟ ପ୍ରକାର ବୈଜ୍ଞାନିକ ପ୍ରଣାଳୀ ଗ୍ରହଣ କରାଯାଏ। ପ୍ରଥମେ ଯେକୌଣସି ଗୋଟିଏ ବିଷୟରେ ଗୋଟିଏ ମୋଟାମୋଟି ଧାରଣା ବା ପ୍ରକଳ୍ପନା କରାଯାଏ ଏବଂ ଏପରି ଗୋଟିଏ ଧାରଣା ଯଦି ସତ ହୁଏ, ତା'ହେଲେ ସେହି କ୍ଷେତ୍ରରେ କି ପ୍ରକାର ଫଳାଫଳ ଦେଖାଦେବା ସ୍ଵାଭାବିକ, ସେ ବିଷୟରେ ଯୁକ୍ତିଯୁକ୍ତ ଅନୁମାନ କରାଯାଏ। ପ୍ରତ୍ୟେକ ଅନୁମାନ ଖୁବ୍ ସରଳ ହୋଇଥିବା ଦରକାର ଏବଂ ଗୋଟିଏ ନିର୍ଦ୍ଦିଷ୍ଟ କ୍ରିୟା ପ୍ରତି ଉଦ୍ଦିଷ୍ଟ ହୋଇଥିବା ଆବଶ୍ୟକ। ପ୍ରତ୍ୟେକ ଅନୁମାନର ବିପରୀତ କ୍ରିୟା କଳାପ ବିଷୟରେ ମଧ୍ଯ ସଠିକ୍ ଧାରଣା କରାଯାଏ। ଉଦାହରଣ ସ୍ଵରୂପ କୁହାଯାଇପାରେ ଯେ ଯଦି 'କ' ଧାରଣାଟି ଠିକ୍ ହୁଏ, ତା'ହେଲେ 'ପ', 'ଫ', 'ବ', 'ଭ', କାର୍ଯ୍ୟଗୁଡ଼ିକର ଘଟିବାରେ ସମ୍ଭାବନା ଏବଂ ମ, ଯ, ର, ଲ ଘଟଣା ନ ଘଟିବା ଅବଶ୍ୟମ୍ଭାବୀ। ଯଦି ସେହି ଧାରଣାନୁସାରେ 'ପ' 'ଫ' 'ବ' 'ଭ' କାର୍ଯ୍ୟଗୁଡ଼ିକ ଘଟେ ଏବଂ ଅନ୍ୟ କିଛି ଘଟେ ନାହିଁ, ତା'ହେଲେ ମୂଳଧାରଣାଟି ପ୍ରତିପାଦିତ ହେଲା ବୋଲି ଗ୍ରହଣ କରାଯାଇପାରେ। ଖାଲି ସେତିକି ନୁହେଁ, ଜଣେ ଦି'ଜଣ ଏହାକୁ ଗ୍ରହଣ କରିନେଲେ ଚଳିବ ନାହିଁ। ବହୁ ଗବେଷକ ବାରମ୍ବାର ଏହାକୁ ପ୍ରତିପାଦିତ କରିବା ଦରକାର। ପ୍ରଥମ ଓ ଦ୍ଵିତୀୟ ପ୍ରଣାଳୀ ଭିତରେ ଏତିକି ତଫାତ୍ ଯେ ପ୍ରଥମ ପ୍ରଣାଳୀ ପ୍ରୟୋଗ ଫଳରେ ଗବେଷଣାଗାରରେ ଏହାକୁ ବାରମ୍ବାର ଘଟାଇ ପ୍ରତିପାଦିତ କରାଯାଏ ; କିନ୍ତୁ ଦ୍ଵିତୀୟ ପ୍ରଣାଳୀ ଦ୍ଵାରା ସେହି ଘଟଣାଟିକୁ ନାନା ଦୃଷ୍ଟିରେ ବିଚାର କରି ତା'ର ବିଭିନ୍ନ ରୂପ ନାନା ଉପାୟରେ ଲକ୍ଷ୍ୟ କରି ମୂଳଧାରଣାକୁ ପ୍ରତିପାଦିତ କରାଯାଏ। ପ୍ରଥମ ପ୍ରଣାଳୀ ଅପେକ୍ଷା ଦ୍ଵିତୀୟ ପ୍ରଣାଳୀ ବହୁ ସମୟ ଓ ଅର୍ଥସାପେକ୍ଷ। ଅନେକ ସମୟରେ ବହୁ ବୈଜ୍ଞାନିକ ଗବେଷଣା ଏକ ସମୟରେ ଏହି ଦୁଇଟି ପ୍ରଣାଳୀ ଦ୍ଵାରା ମଧ୍ଯ ପରିଚାଳିତ ହୋଇଥାଏ।

ବୈଜ୍ଞାନିକ ଦୃଷ୍ଟିକୋଣର ଆଉ ଗୋଟିଏ ପ୍ରଧାନ ସତ୍ୟ ହେଲା ଯେ, କୌଣସି ବିଷୟକୁ ବିନା ବିଚାର ଓ ବିନା ପରୀକ୍ଷା ଓ ଯୁକ୍ତିଯୁକ୍ତ କାରଣ ନ ଥାଇ ଗ୍ରହଣ କରାଯାଇ ପାରିବ ନାହିଁ। କୌଣସି ଗୋଟିଏ ତଥ୍ୟ ବିଷୟରେ ଯେତେ ପ୍ରଶ୍ନ, ଯେତେ ସନ୍ଦେହ, ଯେତେ ବିରୁଦ୍ଧ ଯୁକ୍ତି ଆଗତ କରାଯାଇପାରେ ସେତେ ଭଲ। ସୁନା ଯେତେ ବେଶି ନିଆଁରେ ପରୀକ୍ଷିତ ହୁଏ, ସେତେ ବେଶି ତା'ର ଉଜ୍ଜ୍ୱଳତା ପ୍ରତିଫଳିତ ହୁଏ। ସେହି ଉପାୟରେ ଲୁହାର କଳଙ୍କି ମଧ୍ୟ ଦୂର ହୁଏ। ଏହି ଦୃଷ୍ଟିକୋଣ ଯାହାର ଯେତେ ବେଶି, ତା'ର ବୈଜ୍ଞାନିକ ଦୃଷ୍ଟିକୋଣର ମୂଲ୍ୟ ସେତେ ଅଧିକ।

ପ୍ରତ୍ୟେକ ବିଷୟବସ୍ତୁର ଆହରଣ ପ୍ରଣାଳୀ ଓ ତା'ର ମୂଳରେ ଥିବା ବୈଜ୍ଞାନିକ ଭିତ୍ତି ବା ଦୃଷ୍ଟିକୋଣକୁ ବିଚାର କରି ତାହା ବୈଜ୍ଞାନିକ ବିଷୟବସ୍ତୁ କି ନା ଠିକ୍ କରାଯିବା ଉଚିତ। ଏହି ମାନଦଣ୍ଡ ସାହାଯ୍ୟରେ ବିଚାର କଲେ ଇତିହାସ, ରାଜନୀତି, ଅର୍ଥନୀତି ଏପରିକି ସାହିତ୍ୟ ମଧ୍ୟ ବିଜ୍ଞାନ ପଦବାଚ୍ୟ ହୋଇପାରେ। ଇତିହାସକୁ କେବଳ ରାଜା ଓ ରାଜପୁତ୍ରମାନଙ୍କର ଜୀବନୀ ହିସାବରେ ପଢ଼ିଲେ ଏହା ବିଜ୍ଞାନ ପଦବାଚ୍ୟ ନୁହେଁ ; କିନ୍ତୁ ଟଏନ୍‌ବି ଏବଂ ମାର୍କସଙ୍କର ବିଶ୍ଳେଷଣ ଇତିହାସକୁ ନିଶ୍ଚୟ ବିଜ୍ଞାନ ଶ୍ରେଣୀଭୁକ୍ତ କରାଇ ପାରିଛି। ରାଜନୀତି ସହିତ ଅର୍ଥନୀତିର ଘନିଷ୍ଠ ସମ୍ପର୍କ ସ୍ଥାପନ କରି ଯେଉଁ ବୈଜ୍ଞାନିକ ବିଶ୍ଳେଷଣ ଓ ନୀତି ଉପସ୍ଥାପିତ କରାଯାଏ, ତାହା ନିଶ୍ଚୟ ବିଜ୍ଞାନସମ୍ମତ ଚିନ୍ତାଧାରା। ରାଜନୀତି ଓ ଅର୍ଥନୀତିଗତ ଗଣନାରେ ଜଡ଼ବସ୍ତୁର ନିଶ୍ଚିତ ଫଳାଫଳ ଅପେକ୍ଷା କେତେକ ବ୍ୟତିକ୍ରମ ଥାଇପାରେ ; କିନ୍ତୁ ପ୍ରଣାଳୀଗତ ଧାରା ନେଇ ଏମାନଙ୍କ ଭିତରେ ବିଶେଷ ତଫାତ୍ ଅଛି ବୋଲି କହିହେବ ନାହିଁ। ସାହିତ୍ୟକୁ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କରାଗଲେ ତାହା ବିଜ୍ଞାନ ଶ୍ରେଣୀଭୁକ୍ତ ହୁଏ ; କିନ୍ତୁ ଲେଖକର ଯେଉଁ ଆବେଗ ଓ ଭାବୋଚ୍ଛ୍ୱାସ ମନୁଷ୍ୟର ମନକୁ ସ୍ପର୍ଶ କରେ, ତା'ର ବୈଜ୍ଞାନିକ ବିଶ୍ଳେଷଣ ସହଜ ନୁହେଁ।

ମୋଟାମୋଟି ଭାବରେ ଦେଖିବାକୁ ଗଲେ ଅନେକଙ୍କର ବିଜ୍ଞାନ ଓ କଳା ବିଷୟରେ ଯେଉଁ ଉପରଠାଉରିଆ ମତାମତ ପ୍ରକାଶ ପାଏ, ତାହା ନିଶ୍ଚୟ ଅବୈଜ୍ଞାନିକ। ଶିକ୍ଷାକ୍ଷେତ୍ରରେ ଯେ ଏହା କେବଳ ମାରାତ୍ମକ ତା' ନୁହେଁ—ସାମାଜିକ ଓ ନିଜର ବ୍ୟକ୍ତିଗତ ଜୀବନରେ ମଧ୍ୟ ଏ ପ୍ରକାର ଅବୈଜ୍ଞାନିକ ଚିନ୍ତାଧାରା ବହୁ ଅପକାର କରେ। ଶିକ୍ଷାକ୍ଷେତ୍ରକୁ ଏ ପ୍ରକାର ସଂକୀର୍ଣ୍ଣ ମନୋଭାବ କଳୁଷିତ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତି ଭିତରେ ନାନାପ୍ରକାର ଦ୍ୱନ୍ଦ୍ୱ ସୃଷ୍ଟି କରେ। ବିଜ୍ଞାନୀର ଯଦି ପ୍ରକୃତ ବୈଜ୍ଞାନିକ ଦୃଷ୍ଟିକୋଣ ନ ରହେ ତା'ହେଲେ ତା'ର ବ୍ୟକ୍ତିତ୍ୱ ଭିତରେ ଦୁଇଟି ପରସ୍ପର ବିରୋଧୀ ମନୋଭାବ ତିକ୍ତ ମାନସିକ ସଂଘର୍ଷ ସୃଷ୍ଟି କରାଏ। ତା'ଫଳରେ ସେମାନେ ଯେ ନିଜେ ନିଜେ ଅସ୍ୱଭାବୀ ହୋଇପଡ଼ନ୍ତି ତା'ନୁହେଁ, ସେମାନଙ୍କର ସଂଘର୍ଷମୟ କାର୍ଯ୍ୟକଳାପ ଯୋଗୁଁ ସମାଜ ଭିତରେ ଅସାମାଜିକ କାର୍ଯ୍ୟ ମଧ୍ୟ ବହୁ ପରିମାଣରେ ବୃଦ୍ଧି ପାଏ। ଜ୍ଞାନ, ଅନୁଭୂତି ବା ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ବିଜ୍ଞାନ ଯଦି ସଂଘର୍ଷମୟ ଓ ଶ୍ରେଣୀବିଭାଗ ଦ୍ୱାରା ବିକଳିତ ହୁଏ, ତାହାହେଲେ ବ୍ୟକ୍ତିଗତ ଓ ସାମାଜିକ ଜୀବନ ନିଶ୍ଚୟ ଉଦ୍‌ବେଗମୟ ଓ ଦ୍ୱିଧାପୂର୍ଣ୍ଣ ହେବ—ଏଥିରେ ସନ୍ଦେହ ନାହିଁ। ■□■

# ଅଭିନୟର ମନସ୍ତାତ୍ତ୍ୱିକ ବୈଶିଷ୍ଟ୍ୟ

ପଠନୋପଯୋଗୀ କାବ୍ୟ, କବିତା, ଉପନ୍ୟାସ ପ୍ରଭୃତି ସାହିତ୍ୟିକ ଅଭିବ୍ୟକ୍ତି ଅପେକ୍ଷା ରଙ୍ଗମଞ୍ଚରେ ଅଭିନୀତ ନାଟକର ମନସ୍ତାତ୍ତ୍ୱିକ ପ୍ରଭାବ ମନୁଷ୍ୟକୁ ଗଭୀର ଭାବରେ ସ୍ପର୍ଶ କରେ। ସିନେମା ଛବି ଖୁବ୍ ବେଶି ବାସ୍ତବ, ଚିତ୍ତାକର୍ଷକ ଓ ଦୃଷ୍ଟିରୋଚକ ହେଲେ ହେଁ ଜୀବନ୍ତ ମନୁଷ୍ୟ ଦ୍ୱାରା ଅଭିନୀତ ଜୀବନ ବୃତ୍ତାନ୍ତ ମନୁଷ୍ୟକୁ ଗଭୀର ଭାବରେ ସ୍ପର୍ଶ କରେ। ନାଟକ ବା ସିନେମା ଉପଭୋଗ କରିବା ପାଇଁ ଯେଉଁ ଦୁଇଟି ମନସ୍ତାତ୍ତ୍ୱିକ ପ୍ରକ୍ରିୟା ଦର୍ଶକର ମନଭିତରେ ଉଜ୍ଜୀବିତ ହେବା ଯଥା, ସେ ଦୁଇଟି ହେଉଛି ସହାନୁଭୂତି (Sympathy) ଏବଂ ସମାନୁଭୂତି (Empathy)। ସହାନୁଭୂତି ଅପେକ୍ଷା ସମାନୁଭୂତି ଗଭୀରତର। ସହାନୁଭୂତି ହେଲେ ଜଣେ ଆଉ ଜଣଙ୍କର ଦୁଃଖ ଦୁର୍ଦ୍ଦଶା ବୁଝିପାରେ ଓ ତାକୁ ସାହାଯ୍ୟ କରିବାକୁ ଚେଷ୍ଟା କରେ ; କିନ୍ତୁ ନିଜେ ତା'ର ସହାନୁଭୂତିରେ ଅଭିଭୂତ ହୋଇପଡ଼େ ନାହିଁ। ସମାନୁଭୂତି ହେଲେ ଅନ୍ୟ ଜଣଙ୍କର ଅନୁଭୂତିକୁ ସଂପୂର୍ଣ୍ଣରୂପେ ନିଜ ଭିତରେ ଅନୁଭବ କରେ। ଏପରିକି ଅନ୍ତତଃ କିଛି ସମୟ ପାଇଁ ସେ ଏପରି ଭାବରେ ଆବେଗାଭିଭୂତ ହୋଇପଡ଼େ ଯେ ଦର୍ଶକ ଓ ଅନୁଭବୀ ଭିତରେ ଥିବା ପାର୍ଥକ୍ୟ କିଛି ସମୟ ପାଇଁ ଅନ୍ତତଃ ଦୂର ହୋଇଯାଏ। ଏହି ଅବସ୍ଥାରେ ହିଁ ଲୋକ ଅନ୍ୟ ଦୁଃଖରେ କାନ୍ଦେ ଏବଂ ଅନ୍ୟ ସୁଖରେ ହସେ। ତା' ଭିତରେ ଗଭୀର ଆବେଗାତ୍ମକ ଆଲୋଡ଼ନ ହୁଏ। ସିନେମା ବା ନାଟକକୁ ଉପଭୋଗ୍ୟ କରିବାକୁ ହେଲେ ଦର୍ଶକର ମନରେ ସହାନୁଭୂତି ଏବଂ ସମାନୁଭୂତି – ଏହି ଦୁଇଟି ମାନସିକ ପ୍ରକ୍ରିୟାର ଉଦ୍ରେକ ହେବା ଉଚିତ। ପ୍ରଥମେ ନାଟକର ଲେଖକ, ସଞ୍ଚାଳକ ଓ ଅଭିନେତା ଅଭିନେତ୍ରୀଙ୍କ ପ୍ରତି ସହାନୁଭୂତି ଥିବାରୁ ଦର୍ଶକ ରଙ୍ଗମଞ୍ଚରେ ଯାଇ ବସେ ଏବଂ ସେମାନଙ୍କର ଅଭିନୟ ଦେଖିବାପାଇଁ ଆଗ୍ରହ ପ୍ରକାଶ କରେ। ଏଥିରେ ତା'ର ପ୍ରଥମ ସହାନୁଭୂତି ପ୍ରକାଶ ପାଏ। ଭଲ ଅଭିନେତା ଓ ଅଭିନେତ୍ରୀ ବା ସ୍ୱନାମଧନ୍ୟ ଲେଖକ ବା ନିର୍ଦ୍ଦେଶକର ସୁଖ୍ୟାତି ଯୋଗୁଁ ସେ ସମସ୍ତ ସମୟ ଧରି ଅଭିନୟ ଦେଖିପାରେ ଏବଂ ଶେଷରେ ଅଭିନୟଟିକୁ ଭଲ ବୋଲି ପ୍ରଶଂସା କରି ତା'ର କର୍ତ୍ତବ୍ୟ ଶେଷ କରିପାରେ ; କିନ୍ତୁ ସମାନୁଭୂତି ଫଳରେ ସେ ଯେପରି ନାୟକର ଅନୁଭୂତିକୁ ନିଜର ସଂବେଦନଶୀଳ ମନଭିତରେ ଅନୁଭବ କରିପାରିଥାଆନ୍ତା, ତାହା ହୁଏତ ସମ୍ଭବ ହୁଏ ନାହିଁ।

ଦର୍ଶକମାନଙ୍କ ମନରେ ସମାନୁଭୂତି ରଙ୍ଗମଞ୍ଚ ଅଭିନୟ ଦ୍ୱାରା ଯେତେ ସହଜରେ ଓ ଯେତେ ଶୀଘ୍ର ସୃଷ୍ଟି କରିହୁଏ, ସିନେମାରେ ସେତିକି ପରିମାଣରେ ସମବେଦନା ସୃଷ୍ଟି କରିବା ପାଇଁ ବେଶି ପରିଶ୍ରମ କରିବାକୁ ପଡ଼ିବ। ଅନ୍ୟ ଦିଗରୁ ଦେଖିଲେ ରଙ୍ଗମଞ୍ଚ ଅଭିନୟରେ ମଧ ଏଥିପାଇଁ କମ୍ ପରିଶ୍ରମ କରିବାକୁ ପଡ଼େ ନାହିଁ। ଏଥିରେ ଖାଲି ଏତିକି ସୁବିଧା ଯେ ଦର୍ଶକ ଓ ଅଭିନେତା ଉଭୟେ ମୁହାଁମୁହିଁ ହୋଇ ରହିଥିବାରୁ ପରସ୍ପର ଭିତରେ ଶିଘ୍ର ସମାନୁଭୂତି ଦେଖାଦେବା ସମ୍ଭବ ହୁଏ। କିନ୍ତୁ ଦର୍ଶକଙ୍କୁ ନିଜ ଅନୁଭୂତିର ଅଭିନୟ ପ୍ରକ୍ରିୟା କ୍ଷେତ୍ର ଭିତରକୁ ଆସିବା ପାଇଁ ଅଭିନେତା ଅଭିନେତ୍ରୀଙ୍କୁ ଖୁବ୍ ସୂକ୍ଷ୍ମ ଅନ୍ତର୍ଦୃଷ୍ଟିର ପରିଚୟ ଦେବାକୁ ପଡ଼ିବ। ଅଭିନେତା ଦର୍ଶକ ପରି ଜୀବନ୍ତ ମନୁଷ୍ୟ ହୋଇଥିବା ଯୋଗୁଁ ରଙ୍ଗମଞ୍ଚରେ ଆସି ଠିଆ

ହୋଇଗଲେ ଦର୍ଶକଠାରେ ତା' ପ୍ରତି ଛାଏଁ ଛାଏଁ ସମାନୁଭୂତି ପ୍ରକାଶ ପାଇବ ତା ନୁହେଁ, ସେଥିପାଇଁ ଅଭିନେତାର ଅଭିନୟ ଶୈଳୀ ଦ୍ୱାରା ତା'ର ଭାବନା, ଚିନ୍ତା ଓ ଆବେଗ ଦର୍ଶକର ଦୈନିନ୍ଦିନ ଅନୁଭୂତିର ପରିସର ଭିତରକୁ ଆସିବା ଉଚିତ । ଅଭିନୟରେ ଅସ୍ୱାଭାବିକତା ବା ଅତିରଞ୍ଜିତ ଭାବଭଙ୍ଗୀ କିମ୍ବା କଥାବସ୍ତୁରେ କପୋଳକଳ୍ପିତ ଅବାସ୍ତବତା ଦେଖାଦେଲେ ଦର୍ଶକର ଅନୁଭୂତି କ୍ଷେତ୍ର ଅଭିନେତାର ଅଭିନୟ କ୍ଷେତ୍ରଠାରୁ ଅଲଗା ରହିଯାଏ । ତା'ହେଲେ ସମାନୁଭୂତିର ପ୍ରଶ୍ନ ଉଠିବ ନାହିଁ ଏବଂ ଅଭିନୟ ମଧ୍ୟ ଖୁବ୍ ଉଚ୍ଚଧରଣର ହେବା ସମ୍ଭବ ନୁହେଁ । ଦର୍ଶକ ଓ ଅଭିନୟର ଅନୁଭୂତି କ୍ଷେତ୍ର ସମାନ୍ତରାଳ ଭାବରେ ନ ଯାଇ ଏକାଙ୍ଗୀଭାବେ ପରିବର୍ଦ୍ଧିତ ହୋଇ ଚାଲିଲେ ଦର୍ଶକ ମନରେ ସର୍ବାଧିକ ପ୍ରଭାବ ପଡ଼େ ଏବଂ ଅଭିନୟର ଉଦ୍ଦେଶ୍ୟ ସଫଳ ହୁଏ ।

ତେଣୁ ଅଭିନୟ କିମ୍ବା କଥାବସ୍ତୁରେ ଅବାସ୍ତବତା ନାଟକର ଉଦ୍ଦେଶ୍ୟ ସାଧନ ପଥରେ ପ୍ରଧାନ ଅନ୍ତରାୟ ହୋଇ ଠିଆ ହୁଏ । ଏହି ମୌଳିକ ସତ୍ୟ ପ୍ରତି ଅନେକେ ଅବହେଳା ଦେଖାଇଥା'ନ୍ତି । ଅଭିନୟକୁ ଲୋକପ୍ରିୟ କରିବାପାଇଁ ନାନା ଅବାନ୍ତର କଥା ଓ ଅସ୍ୱାଭାବିକ ଅଭିନୟ ନାୟକ ଭିତରେ ଆଣି ପୂରାନ୍ତି ; ଦର୍ଶକମାନେ ହୋ ହୋ ହୋଇ ହସିଉଠିଲେ ଅଭିନୟ ଭଲହେଲା ବୋଲି ଭାବନ୍ତି ; କିନ୍ତୁ ଦର୍ଶକମାନଙ୍କର ଉପଭୋଗକୁ ବିଶ୍ଳେଷଣ କଲେ ଦେଖାଯିବ ଯେ ସେମାନେ ଖୁବ୍ ଗଭୀର ଭାବରେ ଅନୁଭବ ନ କରି ମଧ୍ୟ ସେମାନଙ୍କର ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି ଏବଂ କିଛି ସମୟ ପରେ ତାହା ସମ୍ପୂର୍ଣ୍ଣ ରୂପେ ଭୁଲିଯାଆନ୍ତି । ଏହା ଆମୋଦକର ଓ ମନଭୁଲାଣିଆ ଦୃଶ୍ୟ ହୋଇପାରେ ; କିନ୍ତୁ ଜୀବନ୍ତ କଳା ନୁହେଁ କି କଳାକାରର ଅନ୍ତରତମ ପ୍ରଦେଶରୁ ଉତ୍ସାରିତ ସାର୍ବଜନୀନ କଳା-ସୃଜନ ନୁହେଁ । ଉଦାହରଣ ସ୍ୱରୂପ ଆଧୁନିକ ଯୁଗର ଅଧିକାଂଶ କୋଳାହଳମୟ ଅତିରଞ୍ଜିତ ହିନ୍ଦୀ ସିନେମାରେ ଜୀବନ୍ତ କଳା ସୃଷ୍ଟିର କୌଣସି ଲକ୍ଷଣ ନାହିଁ ।

ରଙ୍ଗମଞ୍ଚରେ ଅଭିନୀତ ଜୀବନ୍ତ ଅଭିନୟର ଏହି ଗଭୀର ସମାନୁଭୂତି ଦିଗଟି ଯୋଗୁ ଏହାର ସାମାଜିକ ଦାୟିତ୍ୱ ବହୁତ ବେଶି । ଅଭିନେତା ଓ ଦର୍ଶକ ଭିତରେ ଅନୁଭୂତ ସମ୍ବନ୍ଧ ଓ ଅବ୍ୟବହିତ ମାନବିକ ଯୋଗାଯୋଗ ଯୋଗୁଁ ଅଭିନେତା ଯାହା କହେ ବା ଯାହା ଭାବେ ତାହା ଦର୍ଶକ ମନରେ ଗଭୀର ଛାୟାପାତ କରେ । ତେଣୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ କୌଣସି ଅଭିନୟ ଉଦ୍ଦେଶ୍ୟହୀନ କଳାସୃଷ୍ଟି ପାଇଁ ଉଦ୍ଦିଷ୍ଟ ହେବା ସମ୍ଭବ ନୁହେଁ । ବାସ୍ତବ ଜୀବନର ଗଭୀର ଓ ଅକପଟ ଅନୁଭୂତିର ପ୍ରତ୍ୟେକଟି ଉଚ୍ଚାରିତ ବାକ୍ୟ ଏବଂ ଅନୁଚ୍ଚାରିତ ତଥା ଅପ୍ରକାଶିତ ଭାବନା ବା ପ୍ରକାରାନ୍ତରେ ଅସ୍ଫୁଟ ଭାବରେ ସୂଚାଉଥିବା ଚିନ୍ତାଧାରା ଦର୍ଶକ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରିବା ଫଳରେ ଦର୍ଶକର ବଦ୍ଧମୂଳ ମନୋଭାବର ମୂଳଭିତ୍ତି ଦୋହଲିଯାଏ । ତେଣୁ ପ୍ରତ୍ୟେକ ଅଭିନୟର ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ରହିଛି ; ବରଂ ପ୍ରଚ୍ଛନ୍ନ ନିର୍ଦ୍ଦେଶ ଖୋଲାଖୋଲି ପ୍ରଚାର ଅପେକ୍ଷା ବେଶି ଫଳପ୍ରଦ । ଏହି ମନସ୍ତାତ୍ତ୍ୱିକ କାରଣ ଯୋଗୁଁ ନାଟକର ସାମାଜିକ ଦାୟିତ୍ୱ ଏତେ ବେଶି ।

ଦର୍ଶକର ଅନୁଭୂତି କ୍ଷେତ୍ର ସହିତ ଅଭିନେତା ଅଭିନୟ କ୍ଷେତ୍ରର ସମ୍ପୂର୍ଣ୍ଣ ଯୋଗାଯୋଗ ପାଇଁ କି ପ୍ରକାର ଅଭିନୟ କୌଶଳ ଦରକାର, ତାହା ଯୁଗୋପଯୋଗୀ ରୁଚି ଓ ସାମାଜିକ ଦୃଷ୍ଟିକୋଣ ଉପରେ ନିର୍ଭର କରେ । ସେହି କାରଣରୁ ଐତିହାସିକ ନାଟକର ଅଭିନୟ ଶୈଳୀ

ସାମାଜିକ ନାଟକଠାରୁ ସମ୍ପୂର୍ଣ୍ଣ ପୃଥକ୍। ବୈଷ୍ଣବ ପାଣି ନାଟକର ଅଭିନୟ ଅପେକ୍ଷା ଆଧୁନିକ ଅଭିନୟର ଆଭିମୁଖ୍ୟ ଏତେ ଭିନ୍ନ। ସୂଚନାତ୍ମକ ଅଭିବ୍ୟକ୍ତି ଅପେକ୍ଷା ପ୍ରତ୍ୟେକ ହାବଭାବର ସବିସ୍ତାର ଭାବନାଭିବ୍ୟକ୍ତିର ମୂଲ୍ୟ କେତେକଙ୍କ ପକ୍ଷରେ ଅନେକ ବେଶୀ ତେଣୁ ପ୍ରତ୍ୟେକ ଅଭିନେତା ଓ ନାଟକ ପରିଚାଳକଙ୍କ ପକ୍ଷରେ ପ୍ରଥମ ପ୍ରଶ୍ନ ଉଠିବା ଉଚିତ ଯେ କାହା ପାଇଁ ସେମାନେ ଅଭିନୟ ପରିବେଷଣ କରିବାକୁ ଯାଉଛନ୍ତି। ଏ ବିଷୟରେ ସ୍ପଷ୍ଟ ଧାରଣା ହେଲାପରେ ହିଁ ନାଟକର ଫଳପ୍ରଦ ପ୍ରଯୋଜନା ସମ୍ଭବ।

ରଙ୍ଗମଞ୍ଚ ଅଭିନୟରେ ଆଉ ଗୋଟିଏ ପ୍ରଧାନ କଥା ମନେ ରଖିବାକୁ ହେବ। ଅଭିନୟର ମୁଖ୍ୟ ଉଦ୍ଦେଶ୍ୟ ରହିବା ଉଚିତ ଯେ ଦର୍ଶକମାନଙ୍କ ମନରେ ସମାନୁଭୂତିମୂଳକ ମାନସିକ ପ୍ରକ୍ରିୟା କିପରି ସୃଷ୍ଟି କରାଯାଇ ପାରିବ। ଏଥିପାଇଁ ପ୍ରଥମରୁ ଦର୍ଶକର ସହାନୁଭୂତିଶୀଳ ମନରେ ଆସ୍ତେ ଆସ୍ତେ ସମାନୁଭୂତି ସୃଷ୍ଟି କରିବାକୁ ହେଲେ ଦର୍ଶକମଣ୍ଡଳୀକୁ ପ୍ରଥମରୁ ବେଶି ସମୟ ଯେପରି ଅପେକ୍ଷା କରିବାକୁ ନ ହୁଏ। ଅଭିନୟ ଆରମ୍ଭ ହେବାର ଅଳ୍ପ ସମୟ ପୂର୍ବରୁ ଦର୍ଶକମାନଙ୍କୁ ପ୍ରେକ୍ଷାଳୟ ଭିତରକୁ ଛାଡ଼ିବା ଦରକାର। ଅର୍ଥାତ୍ ନିଜ ନିଜ ଜାଗାକୁ ସୁବିଧାରେ ବସିବା ପାଇଁ ଦର୍ଶକମାନଙ୍କୁ ଯେତିକି ସମୟ ଲାଗିବ, ପ୍ରାୟ ସେତିକି ସମୟ ସେମାନଙ୍କୁ ଦେବା ଉଚିତ। ଯେଉଁ କାରଣରୁ ହେଉ ନା କାହିଁକି ଏପରିକି ଦର୍ଶକମାନେ ଯଦି ଆଗରୁ ଚାଲି ଆସିଥାଆନ୍ତି, ତଥାପି ସେମାନେ ଯଦି ଗୋଟିଏ ଜାଗାରେ ବହୁତ ସମୟ ବସନ୍ତି – ତା' ହେଲେ ସେମାନଙ୍କୁ ବିରକ୍ତି ଲାଗେ ଏବଂ ପ୍ରଥମରୁ ହିଁ ସେମାନଙ୍କର ଅଭିନୟ ପ୍ରତି ଯେଉଁ ସହାନୁଭୂତି ଥାଏ, ତାହା ବିରକ୍ତିରେ ପରିଣତ ହୁଏ। ତା'ପରେ ସେମାନଙ୍କର ଅଭିନୟ ପ୍ରତି ପ୍ରଥମରୁ ଏପରି ବିରୋଧାତ୍ମକ ମନୋଭାବ ଦେଖାଦିଏ ଯେ ତାକୁ ଦୂର କରି ସମାନୁଭୂତି ସୃଷ୍ଟି କରିବା କଷ୍ଟକର ହୁଏ। ତା'ପରେ ଅଭିନୟ ଆରମ୍ଭ ହେଲା ପରେ ଦୁଇଟି ଦୃଶ୍ୟ ବା ଅଙ୍କ ମଝିରେ ବିଶ୍ରାମ ପାଇଁ ଦର୍ଶକମଣ୍ଡଳୀକୁ ଆଦୌ ସମୟ ଦେବା ଉଚିତ ନୁହେଁ। କାରଣ ସେହି ସମୟ ଭିତରେ ସେମାନେ ଅଭିନୟର ସମାଲୋଚନା ଓ ବିଶ୍ଳେଷଣ କରିବାକୁ ସମୟ ପାଆନ୍ତି । ଫଳରେ କେତେ ସମୟ ଧରି ଯେଉଁ ଧାରାବାହିକ ସମାନୁଭୂତି ଅବିଶ୍ରାନ୍ତ ଭାବରେ ସୃଷ୍ଟି ହୋଇଥାଏ ତା'ର ଖିଅ ପୁଣି ଛିଣ୍ଡିଯାଏ। ମୋଟାମୋଟି ଭାବରେ କହିବାକୁ ଗଲେ ଅଭିନୟର ଆରମ୍ଭରୁ ଶେଷଯାଏଁ ଗୋଟିଏ ଅବିଶ୍ରାନ୍ତ ପାରସ୍ପରିକ ଅଭିକ୍ରିୟା ଚାଲୁ ରଖିବା ଉଚିତ। ତା'ହେଲେ ଅଭିନେତା, ଅଭିନେତ୍ରୀ ଓ ଦର୍ଶକମାନଙ୍କ ଭିତରେ ସୃଷ୍ଟି ହୋଇଥିବା ଅନୁଭୂତି କେନ୍ଦ୍ରର ନିରବଚ୍ଛିନ୍ନ ଯୋଗାଯୋଗ ସମ୍ଭବ ହୋଇପାରିବ। ଏହି ମନସ୍ତାତ୍ତ୍ୱିକ କାରଣ ଯୋଗୁଁ ଅନେକ ଇଂରେଜୀ ସିନେମା ଓ ନାଟକର ବିଶ୍ରାମ ସମୟ ଆଦୌ ନ ଥାଏ ଏବଂ ଏଗୁଡ଼ିକ ଦୁଇଘଣ୍ଟାରୁ ବେଶି ସମୟ ଧରି ଅଭିନୀତ ହୁଏ ନାହିଁ। ଏହି କାରଣରୁ ବର୍ତ୍ତମାନ ଦୂରଦର୍ଶନରେ ପ୍ରଚାରିତ ସିନେମା ଛବି ଭିତରେ ବାରମ୍ବାର ବିଜ୍ଞାପନ ଦେବା ଫଳରେ ଏହି ପ୍ରକ୍ରୀୟା ବାଧା ପ୍ରାପ୍ତ ହୁଏ।

କୃତ୍ରିମ ଉପାୟରେ ମନୁଷ୍ୟ ଜୀବନର ଅନୁଭୂତିର ପୁନରାବୃତ୍ତି କରି ଅନ୍ୟମାନଙ୍କ ଅନୁଭୂତି କେନ୍ଦ୍ର ଭିତରେ ତାହା ପ୍ରବେଶ କରାଇବା ବଡ଼ କଷ୍ଟସାଧ। ତେଣୁ ଦର୍ଶକ ମଣ୍ଡଳୀର ମନସ୍ତାତ୍ତ୍ୱିକ କ୍ରିୟା ପ୍ରତିକ୍ରିୟାର ସଂପୂର୍ଣ୍ଣ ବିଶ୍ଳେଷଣ ଅନୁସାରେ ଅଭିନୟର ପ୍ରଯୋଜନା ନିତାନ୍ତ ଆବଶ୍ୟକ। ■□■



# ଗଣତାନ୍ତ୍ରିକ ମନୋବୃତ୍ତି

ପ୍ରଚଳିତ ସାମାଜିକ ସଂସ୍ଥା, ରାଜନୈତିକ ପରିସ୍ଥିତି ଓ ସାଂସ୍କୃତିକ ପରିବେଶ ଅନୁସାରେ ବ୍ୟକ୍ତିବିଶେଷର ମନୋଭାବ ଏବଂ ସମଷ୍ଟିଗତ କ୍ରିୟା ପ୍ରକ୍ରିୟା ଦେଖାଦେଇଥାଏ । ଏହି ସାଧାରଣ ନିୟମ କେତେକ ବିଶିଷ୍ଟ ଲୋକଙ୍କଠାରେ ପ୍ରଯୁଜ୍ୟ ହୋଇ ନ ପାରେ। ସେମାନେ ପ୍ରଚଳିତ ପରିସ୍ଥିତି ଭିତରୁ ନିଜକୁ ମୁକ୍ତ କରି ସର୍ବସାଧାରଣଙ୍କଠାରୁ ବିଚ୍ଛିନ୍ନ ହୋଇ ଆଗାମୀ ଯୁଗର ନୂତନ ଆଦର୍ଶରେ ଅନୁପ୍ରାଣିତ ହୋଇ ଭିନ୍ନ ଭାବରେ ବ୍ୟବହାର କରିପାରନ୍ତି । ଭବିଷ୍ୟତର ଅନାଗତ ସାମାଜିକ ସଂସ୍ଥାର ଆଦର୍ଶ ଅନୁସାରେ ନିଜର କାର୍ଯ୍ୟକଳାପ ଓ ଚିନ୍ତାଧାରାକୁ ପରିବର୍ତ୍ତିତ କରି ଦେଇପାରନ୍ତି; କିନ୍ତୁ ଜନସାଧାରଣ ପରିସ୍ଥିତିର ଆବଶ୍ୟକତା ଅନୁସାରେ ଯନ୍ତ୍ରବତ୍ କାମ କରିଯାଆନ୍ତି । ତେଣୁ ସାମାଜିକ କ୍ରିୟାକଳାପ, ବ୍ୟକ୍ତି ଓ ସମଷ୍ଟି ଭିତରେ ପ୍ରଚଳିତ ପାରସ୍ପରିକ ସମ୍ପର୍କ ହଠାତ୍ ବଦଳିଯିବା ସମ୍ଭବ ନୁହେଁ, କିନ୍ତୁ ତା'ର ଅର୍ଥ ନୁହେଁ ଯେ କୌଣସି ଅଭୀଷ୍ଟ ସାମାଜିକ ପରିବର୍ତ୍ତନ ଲାଗି ଆମକୁ ଯୁଗ ଯୁଗ ଧରି ନିଃସହାୟ ଅବସ୍ଥାରେ ଅପେକ୍ଷା କରି ରହିବାକୁ ହେବ। ପ୍ରାଗୈତିହାସିକ ପ୍ରସ୍ତର ଯୁଗରେ ମନୁଷ୍ୟ ସମାଜରେ ଏ ପ୍ରକାର ନିଷ୍କ୍ରିୟତା ହୁଏତ ସମ୍ଭବ ହୋଇଥିଲା, ଆଧୁନିକ ଯୁଗରେ ନୁହେଁ। କାରଣ ଆଦିମ ମନୁଷ୍ୟର ସମାଜରେ ଦୈନନ୍ଦିନ ସମସ୍ୟାର ସମାଧାନ ହିଁ ପ୍ରଧାନ କର୍ତ୍ତବ୍ୟ ଥିଲା । ସେ ଯୁଗ ଥିଲା ଉପସ୍ଥିତ କର୍ତ୍ତବ୍ୟାଭିମୁଖୀ; କିନ୍ତୁ ବର୍ତ୍ତମାନ ଉପସ୍ଥିତ ବୁଦ୍ଧି ଅପେକ୍ଷା ଅଭିଜ୍ଞତାସିଦ୍ଧ ପ୍ରଜ୍ଞା ଆମର ବେଶି ଦରକାର। ଆମେ ଆଗାମୀକାଲି ପାଇଁ ଯେତେ କଳ୍ପନା କରୁ, ଆଜି ପାଇଁ ସେତେ ବ୍ୟସ୍ତ ନୋହୁଁ। ଆଧୁନିକ ଜଗତ ଏତେ ଦ୍ରୁତଗତିରେ ଆଗେଇ ଚାଲିଛି ଯେ ଆମକୁ ଭବିଷ୍ୟତକୁ ଚାହିଁ ଆଗେଇ ଯିବାକୁ ପଡ଼ିବ ; ବର୍ତ୍ତମାନ ଯୁଗରେ କେହି କେଉଁ ଗୋଟିଏ ସ୍ଥାନରେ ସ୍ଥାଣୁ ହୋଇ ରହିପାରିବ ନାହିଁ। ଜଣେ ଜେଟ୍ ଉଡ଼ାଜାହାଜରେ ଗତି କରୁଥିବାବେଳେ ଆଉ ଜଣେ ବଳଦ ଗାଡ଼ିରେ ଆଗକୁ ଯାଉଛି ବୋଲି ଭାବିଲେ ସୁଦ୍ଧା ପ୍ରକୃତରେ ସେ ପଛେଇଯାଏ ।

ଏହା ହେଲା ବର୍ତ୍ତମାନ ଯୁଗର ସାମାଜିକ ନିୟମ। ଏ ପ୍ରକାର କ୍ରମଗତିଶୀଳ ପରିବେଶ ଭିତରେ ଆମର ଗଣତାନ୍ତ୍ରିକ ସମାଜସଂସ୍ଥା ପ୍ରତିଷ୍ଠିତ ହୋଇଛି। ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଭବିଷ୍ୟତ ବିଶ୍ୱ-ସମାଜ ପ୍ରତି ଦୃଷ୍ଟି ରଖି ଆମେ ଗଣତାନ୍ତ୍ରିକ ସାମାଜିକ ସଂସ୍ଥାର ଶୁଭାରମ୍ଭ କରିଛେ। ଆମର ରାଜନୈତିକ ଚିନ୍ତାଧାରା ପ୍ରଚଳିତ ଗଣତାନ୍ତ୍ରିକ ସମ୍ବିଧାନରେ ପ୍ରତିଫଳିତ ହୋଇଛି। କାରଣ ଆମ ଦେଶରେ ଗଣତାନ୍ତ୍ରିକ ସଂସ୍ଥା ଆଗରୁ ନ ଥିଲା। ଗବେଷକମାନେ ପ୍ରାଚୀନ ଭାରତରେ ଏହାର ପ୍ରଚଳନ ନେଇ ଯେତେ ଉଦାହରଣ ଦେଲେ ସୁଦ୍ଧା ମୋଟାମୋଟିଭାବରେ ଆମର ସାମାଜିକ ସଂସ୍ଥା କେବେହେଲେ ଗଣତାନ୍ତ୍ରିକ ନ ଥିଲା । ଏହା ବ୍ୟକ୍ତିତାନ୍ତ୍ରିକ, ରାଜତାନ୍ତ୍ରିକ ଏବଂ ଗୋଷ୍ଠୀତାନ୍ତ୍ରିକ ଥିଲା। ରାଜା ଦେବତାରୂପରେ ରାଜତ୍ୱ କରୁଥିଲେ। ବ୍ରାହ୍ମଣ ବ୍ରହ୍ମାଙ୍କର ମୁଖରୁ ବାହାରିଲା ଦିନଠାରୁ, ଛତିଶ ପାଟକର ରାଜା ହୋଇ ଶାସନ

କରିଆସୁଛି। ବର୍ତ୍ତମାନ ସୁଦ୍ଧା ଗଣତାନ୍ତ୍ରିକ ସଂସ୍ଥାର କର୍ତ୍ତାମାନେ ପୁରୀ ବନାରସର ଅର୍ଦ୍ଧଶିକ୍ଷିତ ବ୍ରାହ୍ମଣଙ୍କର ପୂଜା କରୁଥିବାର ଦେଖାଯାଉଛି।

ରାଜା, ସାମନ୍ତ ଓ ବ୍ରାହ୍ମଣଙ୍କ ଭିତ୍ତରେ ପ୍ରାଚୀନ ଯୁଗରୁ ସମାଜର ଲୁଣ୍ଠିତ ସମ୍ପତ୍ତି ବଣ୍ଟନ ହୋଇ ଆସିଛି ଏବଂ ବର୍ତ୍ତମାନ ଏହିମାନଙ୍କ ଭିତରେ ବଣ୍ଟନ ନ ହେଲେ ସୁଦ୍ଧା, ମୁଷ୍ଟିମେୟ କେତେକଙ୍କ ଭିତରେ ଜନସାଧାରଣଙ୍କର ଝାଳବୁହା ଧନ ବଣ୍ଟନ ହେଉଛି। ଭାରତୀୟ ଶୂଦ୍ର ବା ଚାଣ୍ଡାଳ, ମିଶରୀୟ କ୍ରୀତଦାସଠାରୁ ଖୁବ୍ ବେଶି ଉଚ୍ଚାସନ ଲାଭ କରିପାରି ନାହିଁ। ବର୍ତ୍ତମାନ ସୁଦ୍ଧା ଏପରି ସଂସ୍ଥା ବଦଳି ନାହିଁ, କେବଳ ରୂପ ବଦଳି ଯାଇଛି। ଏହି ପରିବେଶ ଭିତରେ ଆମର ବିଂଶ ଶତାବ୍ଦୀୟ ଆଣବିକ ଯୁଗର ଗଣତାନ୍ତ୍ରିକ ଆଦର୍ଶ ହଠାତ୍ ଦେଖାଦେଇଛି। ରାଜନୀତିଜ୍ଞମାନଙ୍କ ଦ୍ୱାରା ଆମର ସଂବିଧାନ ନିଖୁଣ ଭାବରେ ଲିପିବଦ୍ଧ ହୋଇଛି। ଅନ୍ୟାନ୍ୟ ଗଣତାନ୍ତ୍ରିକ ଦେଶର ସଂବିଧାନ ଅପେକ୍ଷା ଆକାର, ପ୍ରକାର, କଳ୍ପନା ଓ ଆଦର୍ଶ ଭାବରେ ଏହା ଉତ୍କୃଷ୍ଟ ବୋଲି ବହୁ ପ୍ରଶଂସାପତ୍ର ମଧ୍ୟ ଆମକୁ ମିଳେ। କୋଣାର୍କ, ତାଜମହଲ ସାଙ୍ଗକୁ ଆମର ସମ୍ବିଧାନ ମଧ୍ୟ ଗୋଟିଏ ଗର୍ବ କରିବା ଭଳି ବସ୍ତୁରେ ପରିଗଣିତ ହେଲାଣି। ଭବିଷ୍ୟତାଭିମୁଖୀ ସମାଜର ଏ ପ୍ରକାର ବିରାଟ ଆଦର୍ଶାନୁପ୍ରାଣିତ ରାଜନୈତିକ ରୂପରେଖ ଫୁଟିଉଠିବା ସ୍ୱାଭାବିକ, କିନ୍ତୁ ଜନଶୂନ୍ୟ ସୁଦୂର ବେଳାଭୂମିରେ ସର୍ବଶ୍ରେଷ୍ଠ ଐତିହାସିକ କଳାର ପ୍ରତୀକ ରୂପେ କୋଣାର୍କ ଦୂରରୁ ସୁନ୍ଦର ଦେଖାଗଲା ପରି, ଏହା ଦିଲ୍ଲୀର ଶୀତତାପ-ନିୟନ୍ତ୍ରିତ ବାଦସାହୀ ରାଜପ୍ରାସାଦରେ ଶୋଭା ପାଇବ ନା ବଳିଷ୍ଠ ଜୀବନୀଶକ୍ତିରୂପେ ଏହାର ପ୍ରେରଣା ସାରା ସମାଜର ଶିରା ପ୍ରଶିରାରେ ସଂଚାଳିତ ହୋଇ ପାରିବ? ସର୍ବପ୍ରସାରୀ କାର୍ଯ୍ୟକାରୀ ଶକ୍ତି ଉପରେ ହିଁ ଏହାର ଭବିଷ୍ୟତ ମୂଲ୍ୟ ନିର୍ଭର କରୁଛି; କିନ୍ତୁ ସାମାଜିକ ଶିରା ପ୍ରଶିରାରେ ସତେଜ ରକ୍ତର ପ୍ରବାହ ପାଇଁ ସୁସ୍ଥ ଓ ସବଳ ଶରୀର ଦରକାର।

ଆମର ସମାଜ ସେହି ପରିମାଣରେ ସ୍ୱାସ୍ଥ୍ୟବାନ ହୋଇପାରିଛି କି? ଯଦିବା ଏହା ନିତାନ୍ତ ଭଗ୍ନ ସ୍ୱାସ୍ଥ୍ୟ ଅବସ୍ଥାରେ ଅଛି, ତା ପାଇଁ ଆମେ କି ପ୍ରକାର ଚିକିତ୍ସାର ଆୟୋଜନ କରୁଛେ? ଗୋଷ୍ଠୀଗତ ଚକ୍ରାନ୍ତ, ଜାତିଗତ ବିଦ୍ୱେଷ, ରକ୍ତଗତ ଆଭିଜାତ୍ୟ, ସମ୍ପତ୍ତିଗତ ଗର୍ବ, କ୍ଷମତାଗତ ପଦମର୍ଯ୍ୟାଦା ଓ ଶାସନ ବଡ଼ିମା, ଗଣତାନ୍ତ୍ରିକ ମନୋଭାବର ସମ୍ପୂର୍ଣ୍ଣ ବିପରୀତ। ସାମନ୍ତବାଦୀ ସାମାଜିକ ସଂସ୍ଥାରେ ଉପରୋକ୍ତ ମନୋଭାବର ପ୍ରାଚୁର୍ଯ୍ୟ ଦେଖାଯାଏ ଏବଂ ଗଣତାନ୍ତ୍ରିକ ମନୋଭାବର ବିକାଶ ସଙ୍ଗେ ସଙ୍ଗେ ଏ ପ୍ରକାର ମନୋବୃତ୍ତିର କ୍ରମାବସାନ ଘଟିବାର କଥା; କିନ୍ତୁ ଦୁର୍ଭାଗ୍ୟବଶତଃ ଆମ ଦେଶର ବହୁ ଯୁଗଧରି ଚେରମାଡ଼ି ରହିଥିବା ଅଗଣତାନ୍ତ୍ରିକ ମନୋଭାବ ଗୁଡ଼ିକର ଅବସାନ ଘଟିବା ଦୂରେ ଥାଉ, ତଥାକଥିତ ଗଣତାନ୍ତ୍ରିକ ପ୍ରତିଷ୍ଠାନ ଭିତର ଦେଇ ସେ ସବୁ ନୂତନ ରୂପରେ ଦେଖାଦେଉଛି। ଯେଉଁ ଶିକ୍ଷିତ ଗୋଷ୍ଠୀଙ୍କ ସାହାଯ୍ୟରେ ଏହାର ନିରାକରଣ ସମ୍ଭବ ହୋଇ ପାରନ୍ତା, ସେଇମାନେ ହିଁ ଏହାକୁ ନୂତନ ରୂପରେ ଆଣି ଠିଆ କରାଉଛନ୍ତି। ପାଞ୍ଚ ବର୍ଷରେ ଥରେ ଭୋଟ ଦେଲା ପରେ ଭୋଟଦାତାକୁ ପୁଣି ପାଞ୍ଚବର୍ଷ ପାଇଁ ଶୋଇଯିବାର ବନ୍ଦୋବସ୍ତ ହେଉଛି। ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କର ଲାଟ ଭବନର ଭଗ୍ନାବଶେଷ ଉପରେ ବହୁ ବ୍ୟୟସାପେକ୍ଷ ରାଜଭବନ ତିଆରି ଚାଲିଛି। ଶାସକଗୋଷ୍ଠୀଙ୍କର ଗୋଷ୍ଠୀଗତ

ଦର୍ପରେ ଜନସାଧାରଣ ଶଙ୍କିତ ତଥା ସଙ୍କୁଚିତ ହୋଇ ଚଳୁଛନ୍ତି । ଗଣତାନ୍ତ୍ରିକ ଆଲୋଚନା ସଭାରେ ସଭାପତିଙ୍କର ନିରଙ୍କୁଶ ଆଧିପତ୍ୟ ହିଁ ପ୍ରକାଶ ପାଉଛି । ଠିକ୍ ଆଗ ପରି ସର୍ବୋଚ୍ଚ କର୍ତ୍ତାଙ୍କର ଚାବୁକ ନିମ୍ନ କର୍ମଚାରୀ ଗୋଷ୍ଠୀଙ୍କ ନିମ୍ନଗାମୀ ସୋପାନ ଶ୍ରେଣୀ ଦେଇ ରାସ୍ତାର ମୂଲିଆ ମଜୁରିଆଙ୍କ ଉପରେ ଆସି ଛିଟୁଛି । କ୍ଷମତା ଓ ଧନ ଆଗରେ ଗଣତାନ୍ତ୍ରିକ ଶିକ୍ଷାପଦ୍ଧତି କୁର୍ଣ୍ଣିସ କରି କରି ପଛକୁ ହଟି ଚାଲିଛି । ଯେତେ ବଡ଼ ପଣ୍ଡିତ ହେଲେ ସୁଦ୍ଧା ଶାସକ ଶ୍ରେଣୀଭୁକ୍ତ ନ ହେଲେ ତା'ର ପଦୋନ୍ନତିର ସମ୍ଭାବନା ନାହିଁ; ନହେଲେ ଉପରସ୍ଥ ଜଣେ ହାକିମଙ୍କର ଏକ-ଶତାଂଶ ବୁଦ୍ଧି କିମ୍ବା କାର୍ଯ୍ୟପଟୁତା ଶତ ସହସ୍ର ଅଧସ୍ତନ କର୍ମଚାରୀଙ୍କଠାରେ ଦେଖାଯାଉ ନ ଥିବା କଥା ସାମାଜିକ ଆଇନ ଭିତରେ ଲିପିବଦ୍ଧ ହୋଇଗଲାଣି ।

ଆମର ପାରିବାରିକ ଜୀବନରେ ଗଣତାନ୍ତ୍ରିକ ପରମ୍ପରା ନାହିଁ କି ନିକଟ ଭବିଷ୍ୟରେ ହେବାର ସମ୍ଭାବନା ମଧ୍ୟ ନାହିଁ । କୃଷିଜୀବୀ ପାରିବାରିକ ସଂସ୍ଥାରେ ବାପର ପ୍ରତିପତ୍ତି ସବୁଠୁ ବେଶି ରହିବାର କଥା, କାରଣ ସମସ୍ତ ଅର୍ଥନୈତିକ କର୍ତ୍ତୃତ୍ୱ ଗୃହକର୍ତ୍ତାଠାରେ କେନ୍ଦ୍ରୀଭୂତ ରହିଥାଏ, କିନ୍ତୁ ଆଧୁନିକ ଗଣତାନ୍ତ୍ରିକ ସଂସ୍ଥାର ପାରିବାରିକ ସମ୍ପର୍କ ଅନ୍ୟ ରୂପ ଧାରଣ କରିବା କଥା । ପିଲାଦିନୁ ଗଣତାନ୍ତ୍ରିକ ପରିବେଶରେ ନ ବଢ଼ିଲେ ପରେ ଲୋକଙ୍କଠାରେ ଗଣତାନ୍ତ୍ରିକ ମନୋଭାବ ବିକଶିତ ହେବା ସହଜ ନୁହେଁ । ଆମ ପରିବାରରେ ବାପ ମା'ଙ୍କର କର୍ତ୍ତୃତ୍ୱ ଏତେ ବେଶି ଯେ ଘର ଭିତରେ ପିଲାମାନଙ୍କର ସ୍ୱାଧୀନତା ବହୁତ କମ୍ ଦେଖାଯାଏ । ଏ ପ୍ରକାର ବଦ୍ଧମୂଳ ଅଭ୍ୟାସ ସାମାଜିକ ଜୀବନରେ ନିଶ୍ଚୟ ପ୍ରତିଫଳିତ ହେବ, ଏଥିରେ ସନ୍ଦେହ ନାହିଁ ।

ଏ ପ୍ରକାର ପାରିବାରିକ ସାମାଜିକ ପରିବେଶ ଭିତରେ ଗଣତାନ୍ତ୍ରିକ ମନୋଭାବ ବିକାଶ ଲାଭ କରିବା ଅତ୍ୟନ୍ତ କଷ୍ଟସାଧ୍ୟ—ଯେଉଁ ଦେଶରେ ମନୁଷ୍ୟ ହିସାବରେ ମନୁଷ୍ୟର ମୌଳିକ ସମ୍ମାନ ନାହିଁ, ନିଜର ରାଜନୈତିକ କ୍ଷମତା ଛଡ଼ା ଅନ୍ୟର ବୁଦ୍ଧି ଓ ଦକ୍ଷତାରେ ବିଶ୍ୱାସ ନାହିଁ, ଧନ ଓ ଶାସନ କ୍ଷମତା ବ୍ୟତୀତ ଆଉ କୌଣସି ସାମାଜିକ ସମ୍ପର୍କର ମୂଲ୍ୟ ନାହିଁ, ସେ ଦେଶରେ ଶାସନ ଚାଲିପାରେ ; ଲୁହା, କୋଇଲା, ବିଦ୍ୟୁତ୍ ଶକ୍ତି ବହୁ ପରିମାଣରେ ଉତ୍ପାଦିତ ହୋଇପାରେ; ଗାଡ଼ି, ମଟର, ଜେଟ୍, ଉଡ଼ାଜାହାଜ ଦେଶରେ ବିଛେଇ ହୋଇଯାଇପାରେ; କିନ୍ତୁ ସେଠାରେ ଗଣତାନ୍ତ୍ରିକ ସାମାଜିକ ସଂସ୍ଥାକୁ ମାନବୀୟ ମୂଲ୍ୟ ଉପରେ ପ୍ରତିଷ୍ଠା କରିବା ସମ୍ଭବ ନୁହେଁ । ଏହି ଦୃଷ୍ଟିରୁ ଦେଖିଲେ ଆମ୍ଭମାନଙ୍କଠାରେ ଗଣତାନ୍ତ୍ରିକ ମନୋଭାବ କେତେ ପରିମାଣରେ ଦେଖାଦେଇଛି, ତାହା ସହଜରେ ବିଚାର କରି ହେବ । କୌଣସି ପୁରାତନ ସାମନ୍ତବାଦୀ ଓ ବ୍ୟକ୍ତିତାନ୍ତ୍ରିକ ଦେଶରେ ଗଣତାନ୍ତ୍ରିକ ମନୋଭାବ ଛାଏଁ ଛାଏଁ ଦେଖାଦିଏ ନାହିଁ । ସେ ଦେଶରେ ବହୁତ ଚେଷ୍ଟା ହେବା ଦରକାର—ତଦନୁଯାୟୀ ଶିକ୍ଷାପଦ୍ଧତି ପରିକଳ୍ପିତ ହେବା ଆବଶ୍ୟକ । ବିରାଟ ସାମାଜିକ ବିପ୍ଳବ ଭିତରଦେଇ ହିଁ ଏ ପ୍ରକାର ଉଦ୍ୟମକୁ ଆଗେଇନେବା ଆବଶ୍ୟକ । ତା' ନହେଲେ ଆଗାମୀ ଯୁଗର ଗଣତାନ୍ତ୍ରିକ ସଂସ୍ଥା ପରିବର୍ତ୍ତେ ମଧ୍ୟଯୁଗର ସାମନ୍ତବାଦୀ ପରିବେଶ ଭିତରକୁ ଅତି ଦ୍ରୁତ ଗତିରେ ଆମକୁ ପଛେଇ ଯିବାକୁ ହେବ । ■□■

# ନିରକ୍ଷରର ମାନସିକତା

ମନୁଷ୍ୟର ମାନସିକତା ତା'ର ପାରିପାର୍ଶ୍ୱିକ କ୍ରିୟା ପ୍ରକ୍ରିୟା ଜନିତ ଉଦ୍‌ବେଳନରୁ ଗଢ଼ିଉଠେ। ଇନ୍ଦ୍ରିୟାନୁଭୂତିକ ଅଭିଜ୍ଞତା ପ୍ରତ୍ୟେକ ମନୁଷ୍ୟଠାରେ ତା'ର ସାରା ଜୀବନକାଳ ଭିତରେ କ୍ରମବର୍ଦ୍ଧିଷ୍ଣୁ ପରିବର୍ତ୍ତନ ମାଧ୍ୟମରେ ପରିବର୍ତ୍ତିତ ହୋଇଚାଲିଥାଏ। ପରିସ୍ଥିତିର ବିଭିନ୍ନତା ଅନୁସାରେ ଏହି ବ୍ୟକ୍ତିଗତ ଓ ସାମାଜିକ ଅର୍ଜିତ ଅଭିଜ୍ଞତା ଭିନ୍ନ ଭିନ୍ନ ହୋଇଥାଏ। ତଥାପି ମନୁଷ୍ୟର ଅନ୍ତର୍ନିହିତ ବିଚାରବୁଦ୍ଧି ସାହାଯ୍ୟରେ ତାହା ସଂଘଟିତ ହୋଇ ଚାଲୁଥିବା ଯୋଗୁ ସବୁ ମନୁଷ୍ୟ ସମାଜରେ କେତେକ ସମାନ ଧରଣର ନୀତି ଓ ମତ ପ୍ରଚଳିତ ହେବାର ଦେଖାଯାଏ। ସାରା ପୃଥିବୀର ନିରକ୍ଷର ସମାଜର ଅଭିଜ୍ଞତା ପ୍ରସୂତ ଜ୍ଞାନ ସାମାଜିକ ବିଭିନ୍ନତା ଭିତରେ ମଧ୍ୟ ନୀତି ନିୟମର କେତେକ ସମତା ସୃଷ୍ଟି କରିଥାଏ। ତେଣୁ ଭିନ୍ନ ଭାଷାଭାଷୀ ନିରକ୍ଷର ଲୋକଙ୍କୁ ସମାଜର ଗତିବିଧି ଚାଲିଚଳଣ ବୁଝିବା ଲାଗି ଏ ପ୍ରକାର ବିଚାରଗତ ସାମ୍ୟ ବହୁତ ସାହାଯ୍ୟ କରିଥାଏ।

ଏହି ସାର୍ବଜନୀନ ମାନସିକ ପ୍ରବଣତା ସେ ସମାଜର ପାରିବାରିକ ଓ ସାମାଜିକ ପାରସ୍ପରିକ କ୍ରିୟା ପ୍ରକ୍ରିୟା ଫଳରେ ନାନାଭାବରେ ପ୍ରଭାବିତ ଓ ଶୃଙ୍ଖଳିତ ହୋଇଥାଏ। ଏହା ଫଳରେ ପାରସ୍ପରିକ ବୁଝାମଣା ଅତି ସହଜ ହୁଏ। ଏ ପ୍ରକାର ସାମାଜିକ ବାତାବରଣ ମଧ୍ୟ ମନୁଷ୍ୟର ଅଭିଜ୍ଞତା ପ୍ରସୂତ ଜ୍ଞାନ ଦ୍ୱାରା ପରିମାର୍ଜିତ ଓ ପରିବର୍ଦ୍ଧିତ ହୋଇ ଚାଲିଥାଏ। ଯେଉଁ ସମାଜ ଯେତେ ବେଶି ପୁରାତନ ଏବଂ ଯେଉଁ ସମାଜର ବିଚାର ବୁଦ୍ଧି ଯେତେ ପ୍ରଖର, ସେଠାକାର ବ୍ୟକ୍ତିବିଶେଷର ଜ୍ଞାନର ପରିପକ୍ୱତା ସେତେ ବେଶୀ ଫଳପ୍ରଦ ଓ ବାସ୍ତବଧର୍ମୀ ହୋଇଥାଏ। ସେହି ସମାଜର ନିରକ୍ଷରଠାରେ ନୂତନ ଯୁଗର ଜ୍ଞାନକୌଶଳ ପହଞ୍ଚି ପାରିନଥିଲେ ସୁଦ୍ଧା ସେମାନଙ୍କର ଅଭିଜ୍ଞତାସିଦ୍ଧ ବୁଦ୍ଧି ବିଚାର ଖୁବ୍ ଗଭୀର ଏବଂ ପ୍ରଜ୍ଞାଶୀଳ ବୋଲି ଜଣାଯାଏ।

ଭାରତର ନିରକ୍ଷରମାନେ ବର୍ତ୍ତମାନ ଦୁନିଆର ଜ୍ଞାନବିଜ୍ଞାନ ଠାରୁ ବହୁତ ଦୂରରେ ରହିଥିଲେ ସୁଦ୍ଧା ସେମାନଙ୍କର ବିଚାର ବୁଦ୍ଧି ଓ ଅନ୍ତର୍ଦୃଷ୍ଟି ବହୁତ ଗଭୀର। କିନ୍ତୁ ଆମର ଶିକ୍ଷିତ ସମାଜ କେତେକ ନୂତନ ଜ୍ଞାନକୌଶଳର ଅଧିକାରୀ ହୋଇ ନିରକ୍ଷରମାନଙ୍କୁ ବୁଦ୍ଧିହୀନ ଓ ବିଚାରଶୂନ୍ୟ ମୂର୍ଖ ବୋଲି ଧରିନିଅନ୍ତି। ସେହି ଅନୁସାରେ ସେମାନଙ୍କୁ ଶିକ୍ଷା ଦେବା ଲାଗି ଉଦ୍ୟମ କରନ୍ତି। ଫଳରେ ସେମାନେ ଏଥିରେ ସମ୍ପୂର୍ଣ୍ଣରୂପେ ଅକୃତକାର୍ଯ୍ୟ ହୋଇଯାଆନ୍ତି। ବିଦେଶୀ ସମାଜବିତ୍‌ମାନେ ମଧ୍ୟ ଏପ୍ରକାର ଭୁଲ୍ କରିଥାଆନ୍ତି। ଆଫ୍ରିକା, ଦକ୍ଷିଣ ଆମେରିକା ପରି ସମାଜରେ ଏ ବିଷୟରେ ଗବେଷଣା କରି ଭାରତରେ ମଧ୍ୟ ଏମାନେ ଏପରି ଧାରଣା ସୃଷ୍ଟି କରିଥାଆନ୍ତି। ଆମର ଶିକ୍ଷିତ ସମ୍ପ୍ରଦାୟ ସେମାନଙ୍କର ଧାରଣାକୁ ବିନା ଦ୍ୱିଧାରେ ଗ୍ରହଣ କରିନିଅନ୍ତି।

ଦୁର୍ଭାଗ୍ୟବଶତଃ ପାଶ୍ଚାତ୍ୟଦେଶର ବୁଦ୍ଧିଜୀବୀମାନଙ୍କର ସବୁକଥାକୁ ଆମ ଦେଶର ଶିକ୍ଷିତ ସମ୍ପ୍ରଦାୟ ବିନା ବିଚାରରେ ଗ୍ରହଣ କରିନିଅନ୍ତି। ବହୁ ବର୍ଷର ପାଶ୍ଚାତ୍ୟ ଦେଶର ଶାସନ ଓ ବର୍ତ୍ତମାନ ଯୁଗରେ ପାଶ୍ଚାତ୍ୟ ଜ୍ଞାନୀ ବିଜ୍ଞାନୀମାନଙ୍କର ଅସାଧାରଣ କୃତି ଯୋଗୁ ସେମାନଙ୍କର ସବୁ ପ୍ରକାରର ମତକୁ ଅନ୍ଧଭାବରେ ଗ୍ରହଣ କରିଦେବାର ଆମର ଅଭ୍ୟାସ ହୋଇଯାଇଛି।

କିଛି ବର୍ଷ ତଳେ ଆମେରିକାର ହାରଭର୍ଡ୍ ବିଶ୍ୱବିଦ୍ୟାଳୟର ସ୍ୱନାମଧନ୍ୟା ନୃତତ୍ତ୍ୱବିତ୍ ଶ୍ରୀମତୀ କୋରା ଡୁବେ ଭୁବନେଶ୍ୱରରେ ବହୁତ ଦିନ ଧରି ସମାଜ ବିଜ୍ଞାନ ବିଷୟରେ ଗବେଷଣା କରୁଥିଲେ। ତାଙ୍କ ଗବେଷଣାରେ ମଫସଲ ଅଞ୍ଚଳର ନବସାକ୍ଷରମାନେ ମୋ ଦ୍ୱାରା ଲିଖିତ ଗୋଟିଏ ବହି ପଢ଼ିଥିବା କଥା ବାରମ୍ବାର କହିଥିଲେ। ସେ ମୋ ସହିତ ଏହି ବହିର ବିଷୟବସ୍ତୁ ବିଷୟରେ ଜାଣିବା ପାଇଁ ସାକ୍ଷାତ କରିଥିଲେ। ସେ ପଚାରିଲେ : ''ଆପଣ କି ପ୍ରକାର ଗପ କହି ଲେଖିଛନ୍ତି ଯେ ନବସାକ୍ଷରମାନେ ସେ ଗପ ବହି ପଢୁଛନ୍ତି?'' ମୁଁ କହିଥିଲି ଯେ ମୁଁ ଗପ ବହି ଲେଖି ନାହିଁ। ବହିର ନାମରୁ ଜାଣିଲି ଯେ ମୋର କେତେଗୁଡ଼ିଏ ପ୍ରବନ୍ଧ ଥିବା ''ଆମର ଭୁଲ କେଉଁଠି'' ବହିଟି ସେମାନେ ପଢ଼ିଛନ୍ତି।

ମୁଁ ଯେତେବେଳେ ମୋ ବହିର ବିଷୟବସ୍ତୁ କିପରି ସମାଜର ଗୁରୁତ୍ୱପୂର୍ଣ୍ଣ ପ୍ରଚଳିତ ନୀତି ନିୟମ ବିଷୟରେ ଆଲୋଚନା କରାହୋଇଛି ବୋଲି କହିଲି, ସେ ଆଶ୍ଚର୍ଯ୍ୟ ହୋଇଥିଲେ ଯେ ଭାରତୀୟ ନବସାକ୍ଷରମାନେ ଏ ପ୍ରକାର ଗୁରୁତ୍ୱପୂର୍ଣ୍ଣ ବିଷୟରେ ଏତେ ଆଗ୍ରହୀ। ଉଚ୍ଚ ନ୍ୟାୟାଳୟମାନେ ଗରିବ ଲୋକଙ୍କୁ ନ୍ୟାୟ ଦେବାରେ ଅସମର୍ଥ, ଯୋଜନା କିପରି ଗ୍ରାମ ଲୋକଙ୍କ ପାଇଁ ନୁହେଁ ଇତ୍ୟାଦି ବହୁ ଜଟିଳ ବିଷୟରେ ଜାଣିବାଲାଗି ସେମାନେ ଆଗ୍ରହୀ ଥିବାର ଜଣାଗଲା। ମୋର ମଧ୍ୟ ଏ ବିଷୟରେ ନୂତନ ପ୍ରକାରର ଅନ୍ତର୍ଦୃଷ୍ଟି ହେଲା। ଆମ ଦେଶର ଲୋକେ ନିରକ୍ଷର ହୋଇପାରନ୍ତି, କିନ୍ତୁ ସେମାନଙ୍କଠାରେ ସାମାଜିକ ବିଜ୍ଞତାର ଅଭାବ ନାହିଁ। ପାଞ୍ଚ ହଜାର ବର୍ଷର ଅଭିଜ୍ଞତା ସେମାନଙ୍କ ମନ ଭିତରେ ବଳିଷ୍ଠ ବିଚାରବୁଦ୍ଧି ସୃଷ୍ଟି କରିବାରେ ସମର୍ଥ ହୋଇଛି। ଅଥଚ ପାଠ ପଢ଼ିପାରୁ ନଥିବାରୁ ନୂଆ ଦୁନିଆର ଜ୍ଞାନକୌଶଳ ସେମାନଙ୍କଠାରେ ନାହିଁ।

ତା'ପରେ ମୁଁ ଅଧ୍ୟାପିକାଙ୍କୁ କହିଥିଲି ଯେ ମୋର ବୁଢ଼ୀମା ନିରକ୍ଷରା ଥିଲେ, କିନ୍ତୁ ତାଙ୍କ ମୁହଁରୁ ମୁଁ ରାମାୟଣ ମହାଭାରତ ଶୁଣି ଶୁଣି ମନେରଖିଛି। ସେ ଅକ୍ଷର ଶିଖିଲେ ଗପବହି ପଢ଼ନ୍ତେ ନାହିଁ। ପଢ଼ନ୍ତେ ଭାଗବତ, ଗୀତା। ଭାରତୀୟ ନିରକ୍ଷରର ମାନସିକତା ଓ ଅନ୍ୟାନ୍ୟ ଦେଶର ଦୁର୍ବଳ ଐତିହ୍ୟହୀନ ମାନସିକତା ଭିତରେ ଏହା ହେଲା ମୌଳିକ ବୌଦ୍ଧିକ ବିଭିନ୍ନତା। ■□■

# ଆଦର୍ଶର ଗତିମୟ ଦିଗ

ଯେଉଁ ଦେଶ ବା ବ୍ୟକ୍ତି ପରିସ୍ଥିତିର ଆବଶ୍ୟକତା ଅନୁସାରେ ନିଜକୁ ଯେତେ ବେଶି ପ୍ରତିଯୋଜନ କରି ଚଳିପାରେ, ସମାଜରେ ସେ ସେତେ ବେଶି ଗତିଶୀଳ ଓ ତା'ର ଭାବନା ମଧ୍ୟ ସେହିପରି ଭାବରେ ଗତିମୟ। ଏପରି ବହୁତ ଲୋକ ଅଛନ୍ତି ଯେଉଁମାନେ ସମୟର ପ୍ରଚଳିତ ଭାବଧାରା ସହିତ ନିଜକୁ ଆଦୌ ପ୍ରତିଯୋଜନ କରି ଚଳାଇ ପାରନ୍ତି ନାହିଁ। ଜୀବନର ପ୍ରଖର ସ୍ରୋତର ଗତିହୀନ ପାର୍ଶ୍ୱ ଦେଶକୁ ଯେପରି ଠେଲି ହୋଇ ଯାଆନ୍ତି। ଯେଉଁ ସମୟରେ ସେମାନେ ଥାଆନ୍ତି, ତା'ର ବହୁବର୍ଷ ତଳ କଥା ଅନୁସାରେ ନିଜକୁ ଚଳାନ୍ତି। ଆଧୁନିକ ସମାଜରେ ଥାଇ ଅତୀତର ସମାଜକୁ କେବଳ ପ୍ରଶଂସା କରନ୍ତି। ବର୍ତ୍ତମାନ ବିରୁଦ୍ଧରେ ବକ୍ତୃତା କରନ୍ତି ଏବଂ ଇତିହାସର ଧାରାକୁ ଅଟକାଇ ଅନ୍ୟ ଦିଗରେ ପ୍ରବାହିତ କରାଇବା ପାଇଁ ପ୍ରବଳ ଉଦ୍ୟମ କରନ୍ତି। କିନ୍ତୁ ଏମାନଙ୍କର ଉଦ୍ୟମ ବ୍ୟର୍ଥ ହୁଏ। ଜୀବନର ବିଚିତ୍ର ପ୍ରବାହ ନାନା ରଙ୍ଗରେ ବିକଶିତ ହୋଇ ଆଗେଇ ଚାଲେ। ଅଗଣିତ ନରନାରୀ ସ୍ରୋତମୁଖରେ ଅତି ଦ୍ରୁତ ଗତିରେ ଆଗେଇ ଚାଲନ୍ତି। ପଶ୍ଚାତ୍‌ମୁଖୀ ଲୋକଙ୍କର ପରାଜୟ ହୁଏ। ବିରାଟ ଜନତାର ଅଗ୍ରଗାମୀ ଫେନାୟିତ ଜୀବନଧାରାର ଦ୍ରୁତ ଅଗ୍ରଗତିକୁ ରୋକିବା ଏମାନଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ। ଐତିହାସିକ ରାଜପଥର ଦୁଇ ପାର୍ଶ୍ୱରେ ଏମାନଙ୍କ ପରି ବହୁ ରକ୍ଷଣଶୀଳ ବ୍ୟକ୍ତି ଓ ଜାତିର ଅସ୍ପଷ୍ଟ ପାଦଚିହ୍ନ ମାତ୍ର ଦେଖାଯାଏ। ଏହା ସୃଜନଶୀଳ ମାନବ ଜାତିର ବଳିଷ୍ଠ ଚିନ୍ତାଧାରା ବା କାର୍ଯ୍ୟାବଳୀର ଗଭୀର ସ୍ୱାକ୍ଷର ନୁହେଁ।

ଗତିଶୀଳ ମାନବୀୟ ଜୟଯାତ୍ରାର ଏହା ହେଲା ପ୍ରଧାନ ଦିଗ ଏବଂ ଏହି ଦିଗରେ ଯେ ଯେତେ ବେଶି ବେଗରେ ଗତିକରି ପାରିଛି ସେ ସେତେ ବେଶୀ ପ୍ରଗତିଶୀଳ ଏବଂ ତା'ର ଚିନ୍ତାଧାରା ସେତେ ବେଶି ବଳିଷ୍ଠ ଓ ପ୍ରଖର। ସାମାଜିକ ଗତି ଚିନ୍ତାଧାରାର ରୂପ ବଦଳାଇ ଦିଏ ଏବଂ ଚିନ୍ତାଧାରା ମଧ୍ୟ ଏହି ଅଗ୍ରଗତିକୁ ତ୍ୱରାନ୍ୱିତ ବା ମନ୍ଥର କରିଦେଇପାରେ।

ସ୍ୱାଧୀନତା ପରେ ଭାରତବର୍ଷରେ ଯେଉଁ ନୂତନ ଯୁଗ ଦେଖାଦେଇଛି, ସେହି ଯୁଗର ଆବଶ୍ୟକତା ଅନୁସାରେ ଆମର ଚିନ୍ତାଧାରାରେ ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି ଏବଂ ସେହି ଚିନ୍ତାଧାରା ଆମର ଜୀବନର ଧାରାକୁ ନିୟନ୍ତ୍ରଣ କରୁଛି। ସ୍ୱାଧୀନତା ପରଠାରୁ ଭାରତରେ ଗୋଟିଏ ନୂତନ ଯୁଗର ସୂତ୍ରପାତ ହୋଇଛି ବୋଲି ଧରାଯାଇ ପାରେ। ସ୍ୱାଧୀନତା ପୂର୍ବ ଯୁଗର ସାମନ୍ତବାଦୀ ଚିନ୍ତାଧାରାରେ

ଯେପରି ଭାବରେ ବୈପ୍ଳବିକ ପରିବର୍ତ୍ତନ ଆଜି ଦେଖାଦେଇଛି ତାହା କଳ୍ପନାତୀତ। ଶତାବ୍ଦୀ ଶତାବ୍ଦୀ ଧରି ଯେଉଁ ଭାରତୀୟ ସମାଜ ବିଶ୍ୱ ଅଗ୍ରଗତି ଓ ଚିନ୍ତାଧାରାରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲା, ତାହା ସହିତ ପାଦ ମିଳାଇ ଚାଲିବାରେ ନିଶ୍ଚୟ ଅସୁବିଧା ହେବାର କଥା; କିନ୍ତୁ ଶତ ଅସୁବିଧା ସତ୍ତ୍ୱେ ଭାରତୀୟ ଚିନ୍ତାଧାରା ବିଶ୍ୱଭାବନା ସ୍ରୋତ ସାଙ୍ଗରେ ନିଜକୁ ମିଳାଇ ଚାଲିବା ପାଇଁ ଉଦ୍ୟମ କରୁଛି।

ହଜାର ହଜାର ବର୍ଷତଳେ ଭାରତର ମୁନି ଋଷିମାନେ 'ସର୍ବେ ସୁଖୀନଃ ଭବନ୍ତୁ' ବୋଲି ଯେଉଁ ମାନବୀୟ ବାଣୀ ପ୍ରଚାର କରିଥିଲେ, ତାହା ରୂପାୟିତ ହୋଇଛି ଭାରତର ସମାଜବାଦୀ ଚିନ୍ତାଧାରାରେ। ଏହି ବିଂଶ ଶତାବ୍ଦୀରେ ପୃଥିବୀର ଅଧିକାଂଶ ଦେଶ ସାମ୍ୟବାଦୀ ଭାବଧାରାରେ ଅନୁପ୍ରାଣିତ ହୋଇ ଉଠିଛି। ତେଣୁ ଏହି ସାମ୍ୟବାଦୀ ସମାଜନୀତି ଏହି ଯୁଗର ଶ୍ରେଷ୍ଠ ତାତ୍ତ୍ୱିକ ତଥା ସକ୍ରିୟ ଅବଦାନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଭାରତ ପରି ବହୁ ପରାଧୀନ ରାଜ୍ୟ ଦାସତ୍ୱର ଶୃଙ୍ଖଳରୁ ମୁକ୍ତିଲାଭ କରି ଜୀବନର ଏହି ମହାମାନବୀୟ ଦର୍ଶନରେ ଉଦ୍‌ବୁଦ୍ଧ ହୋଇଛନ୍ତି ଏବଂ ଆଫ୍ରିକା ଓ ଏସିଆର ବହୁ ଦେଶର ରାଜନୈତିକ ଓ ସାମାଜିକ ଚିନ୍ତାଧାରାକୁ ଭାରତର ଆଧୁନିକ ଚିନ୍ତାଧାରା କେତେକାଂଶରେ ପ୍ରଭାବିତ ତଥା ଉଦ୍‌ବୁଦ୍ଧ କରିପାରିଛି।

ଅନେକ ବ୍ୟକ୍ତି ବା ସମାଜ ନିଜ ନିଜର ଆଦର୍ଶ ଅନୁସାରେ ସବୁ କାମ କରି ନ ପାରେ, କିନ୍ତୁ ତା'ବୋଲି ଆଦର୍ଶର ମୂଲ୍ୟ କିଛି କମ୍ ନୁହେଁ। ଚିନ୍ତାଧାରାର ନିର୍ଦ୍ଦିଷ୍ଟ ଦିଗ ଥିଲେ କାର୍ଯ୍ୟକ୍ଷେତ୍ରରେ ତ୍ରୁଟି ହେଲେ ସୁଦ୍ଧା ସେ ଆଗେଇ ଚାଲେ। ସେହି ଦୃଷ୍ଟିରୁ ଭାରତୀୟ ଚିନ୍ତାଧାରାର ବିଚାର କରିବା ଉଚିତ। ଖାଲି ସେତିକି ନୁହେଁ, ସ୍ୱାଧୀନତାର ମାତ୍ର କେତେଟା ବର୍ଷ ପରେ ଭାରତୀୟ ଚିନ୍ତାରାଜ୍ୟରେ ସମାଜବାଦୀ ଚିନ୍ତାଧାରା ଅସ୍ପଷ୍ଟ ଭାବରେ ଆସି ଦେଖାଦେଇଥିଲା ଏବଂ ବର୍ତ୍ତମାନ ତାହା ଗୋଟିଏ ବଳିଷ୍ଠ ଆଦର୍ଶରେ ପରିଣତ ହେବାକୁ ବସିଲାଣି।

ଭାରତରେ ସମାଜବାଦୀ ଆଦର୍ଶ କେବଳ ଗୋଟିଏ ରଙ୍ଗିନ ସ୍ୱପ୍ନ ନୁହେଁ, କି ଏହା ଗୋଟିଏ ଭାବାନୁପ୍ରାଣିତ କ୍ଷଣସ୍ଥାୟୀ ଉଚ୍ଛ୍ୱାସ ନୁହେଁ। ସମାଜବାଦୀ ଚିନ୍ତାଧାରା ବିଜ୍ଞାନ ଓ ଶିଳ୍ପ ବିପ୍ଳବ ଚିନ୍ତା ସହିତ ଓତପ୍ରୋତ ଭାବରେ ଜଡ଼ିତ ହେବାକୁ ବାଧ୍ୟ। ସେଥିଯୋଗୁଁ ଆଧୁନିକ ବିଜ୍ଞାନ ଓ ଶିଳ୍ପ ଯୁଗରେ ହିଁ ସମାଜବାଦର ସ୍ୱପ୍ନ ସଫଳ ହେବାକୁ ଯାଉଛି।

ବିଜ୍ଞାନ ବଳରେ ଆମ୍ଭେମାନେ ବହୁତ ଦୂର ଆଗେଇ ଯାଇ ପାରିନାହୁଁ କି ବିଜ୍ଞାନସମ୍ମତ ଜ୍ଞାନ ଉପରେ ଆମର ଶିକ୍ଷା ସଂସ୍କୃତି ଓ ସାମାଜିକ ରୀତିନୀତି

ବଳିଷ୍ଠ ଭାବରେ ପ୍ରତିଷ୍ଠିତ କରିପାରିନାହିଁ ସତ, ତଥାପି ଆମର ଚିନ୍ତାଧାରା ବିଜ୍ଞାନାଭିମୁଖୀ। ଆମର ସାମାଜିକ ଜୀବନ ଆଦିମଯୁଗର କୁସଂସ୍କାର ଦ୍ୱାରା ବେଶି ପରିମାଣରେ ନିୟନ୍ତ୍ରିତ ହେଲେ ସୁଦ୍ଧା ବିଜ୍ଞାନ ଆଗରେ ଏହା ସଙ୍କୁଚିତ। ଆମର ରକ୍ଷଣଶୀଳ ଚିନ୍ତାଧାରା ଆଧୁନିକ ଯୁଗର ବିଜ୍ଞାନସମ୍ମତ ଅନୁସନ୍ଧାନ ଆଗରେ ବହୁତ ଦୁର୍ବଳ। ଏହି କ୍ଷେତ୍ରରେ ମଧ୍ୟ ଭାରତୀୟ ଚିନ୍ତାଧାରାର ଗତିହୀନ ଜମାଟବନ୍ଧା ନିବନ୍ଧ ଅପେକ୍ଷା ଏହାର ଗତିମୟ ଆଭିମୁଖ୍ୟର ଗୁରୁତ୍ୱ ବେଶି। କାରଣ ଏହା ଆଗାମୀ ଯୁଗର ଜ୍ୱଳନ୍ତ ଆଲୋକବର୍ତ୍ତିକା; ଅତୀତର ଅର୍ଦ୍ଧଦଗ୍ଧ କାଷ୍ଠ ଅପେକ୍ଷା ଏହାର ମୂଲ୍ୟ ନିଶ୍ଚୟ ବେଶି।

ସମାଜବାଦୀ ସାମାଜିକ ଦର୍ଶନ ସହିତ ବିଜ୍ଞାନବାଦୀ ଚିନ୍ତାଧାରାର ନିବିଡ଼ ସହଯୋଗ ହେଲେ ମନୁଷ୍ୟର ବିଚାର ରାଜ୍ୟରେ ବିରାଟ ବିପ୍ଳବ ଦେଖାଦେବା ସ୍ୱାଭାବିକ। ତୀକ୍ଷ୍ଣ ସୂର୍ଯ୍ୟାଲୋକରେ ରାତ୍ରୀର ଅନ୍ଧକାରରେ ବିଲୀନ ହୋଇ ରହିଥିବା ବହୁ ପଦାର୍ଥର ଅସଲରୂପ ବିକଶିତ ହେଲାପରି ଶିକ୍ଷା, ସଂସ୍କୃତି, ସାମାଜିକ ସଂପର୍କ ପ୍ରଭୃତିର ରୂପ ବିଜ୍ଞାନ ଯୁଗରେ ଜାଏଁ ଜାଏଁ ବଦଳିଯିବାକୁ ବାଧ୍ୟ। ମାତ୍ର କେତେବର୍ଷ ତଳେ ଅଳ୍ପବୟସ୍କା ଝିଅମାନଙ୍କର ବିବାହ ନିଷେଧ ପାଇଁ ଆଇନ କରାହୋଇ ଥିଲା। ବର୍ତ୍ତମାନ ବାଲ୍ୟବିବାହ କଥା ଲୋକେ ଭୁଲିଗଲେଣି କହିଲେ ଚଳେ। ଅବଶ୍ୟ ଏ କ୍ଷେତ୍ରରେ ଯେ କେତେକ ପଶ୍ଚାତମୁଖୀ ଭୀରୁ ନ ଥିବେ, ତାହା ନୁହେଁ। ନରହତ୍ୟା ଗୋଟିଏ ଅସାମାଜିକ ଅପରାଧ ରୂପେ ପରିଗଣିତ ହେଉଥିଲେ ସୁଦ୍ଧା କେତେକ ତ ନରହତ୍ୟା କରନ୍ତି; କିନ୍ତୁ ନରହତ୍ୟା କରିବା ସାମାଜିକ ନିୟମ ନୁହେଁ।

ଶିକ୍ଷା ଓ ସାମାଜିକ କ୍ଷେତ୍ରରେ ଯେପରି ଭାବରେ ଆମର ଚିନ୍ତାଧାରା ବଦଳିଯାଇଛି, ତାହାର ପ୍ରଭାବ ଆମର ଜୀବନକୁ ସଂପୂର୍ଣ୍ଣରୂପେ ବଦଳାଇ ଦେବାକୁ ଯାଉଛି। ସମାଜବାଦୀ ଆଦର୍ଶ ଅନୁସାରେ ଓ ବୈଜ୍ଞାନିକ ପ୍ରଣାଳୀରେ ଯଦି ସମସ୍ତେ ଶିକ୍ଷା ପାଇବେ, ତା'ହେଲେ ଜାତି ବର୍ଣ୍ଣ ଓ ଧର୍ମଗତ ତଥା ସାମାଜିକ ବିଭେଦ ଖୁବ୍ ଶୀଘ୍ର ଲୋପ ପାଇଯିବ। ତାହାର ନିର୍ଭୁଲ ନିଦର୍ଶନ ଚାରିଆଡ଼େ ଦେଖାଦେଲାଣି। ପ୍ରଥମ ଅବସ୍ଥାରେ ଚିନ୍ତାଧାରାର ପ୍ରଖରତା ଅନୁସାରେ ପ୍ରକୃତ ପରିବର୍ତ୍ତନର ଗତି ଦ୍ରୁତତର ନ ହେଲେ ସୁଦ୍ଧା ସାମାନ୍ୟ ପରିବର୍ତ୍ତନ ଫଳରେ ଚିନ୍ତାଧାରା ବହୁତ ପରିମାଣରେ ପ୍ରଖର ଓ ଗତିଶୀଳ ହୋଇଉଠେ। ସେହି ଦୃଷ୍ଟିରୁ ବର୍ତ୍ତମାନ ଭାରତୀୟ ଚିନ୍ତାଧାରାର ଦିଗ ଅତି ନିର୍ଦ୍ଦିଷ୍ଟ ଓ ଗତିମୟ ବୋଲି ଜଣାଯାଏ।

■□■

# କ୍ରିୟା ଓ ଉଦ୍ଦେଶ୍ୟ

ଜଡ଼ ଜଗତର ସୃଷ୍ଟି, ସ୍ଥିତି ଓ ପରିବର୍ତ୍ତନ ବିଷୟରେ ସଂପୂର୍ଣ୍ଣ ଜ୍ଞାନ ଅର୍ଜନ କରିବା ପାଇଁ ଯୁଗଯୁଗ ଧରି ମନୁଷ୍ୟ ଯେପରି ଭାବରେ ଅକ୍ଳାନ୍ତ ପରିଶ୍ରମ କରିଆସିଛି, ନିଜର ମାନସିକ ରାଜ୍ୟର ଚିନ୍ତାଧାରାର ଚରିତ୍ର, ଜୀବଜଗତର କ୍ରିୟାକଳାପ ପ୍ରଭୃତି ଅତି ଜଟିଳ ରହସ୍ୟମୟ ଘଟଣାବଳୀ ବିଷୟରେ ଜାଣିବା ପାଇଁ ମଧ୍ୟ ସେହିପରି ବହୁ ପରିଶ୍ରମ କରିଆସିଛି। ପ୍ରକୃତରେ ଦେଖିବାକୁ ଗଲେ ଜୀବନ ଓ ମନ ସମ୍ବନ୍ଧୀୟ ରହସ୍ୟାବୃତ କ୍ରିୟାପ୍ରକ୍ରିୟା ମନୁଷ୍ୟକୁ ସବୁଠୁ ବେଶି ଆଶ୍ଚର୍ଯ୍ୟାନ୍ୱିତ କରିଛି। ତେଣୁ ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ଦେଶରେ ଏ ବିଷୟରେ ନାନାପ୍ରକାର ଅଦ୍ଭୁତ ତଥ୍ୟାତଥ୍ୟ ପ୍ରକାଶ ପାଇଛି। ଆଦିମ ଯୁଗ ମନୁଷ୍ୟର ଯେତେବେଳେ ଚେତନା ଶକ୍ତିର ଉନ୍ନତି ହେଲା–ଭାବିବାର ଶକ୍ତି ହେଲା, ସେତେବେଳେ ସେ ଏହି ଅଦ୍ଭୁତ ମାନସିକ ଶକ୍ତି ବିଷୟରେ ନାନାପ୍ରକାରର କଳ୍ପନାଜଳ୍ପନା କରିବସିଲା। ସେ ଦୁଇଟି ମନୁଷ୍ୟର କଳ୍ପନା କଲା। ଗୋଟିଏ ଦେହଧାରୀ ସ୍ଥୂଳ ମଣିଷ, ଯାହାକୁ ଆଖିରେ ଦେଖିହୁଏ; ଯାହା ସହିତ ମିଳିମିଶି କାମ କରିହୁଏ–ଅନ୍ୟାନ୍ୟ ସ୍ଥୂଳ ବସ୍ତୁ ପରି ଏ ବ୍ୟବହାର କରିପାରେ, କିନ୍ତୁ କୌଣସି କାରଣରୁ ତାହାର ବ୍ୟବହାର, କାର୍ଯ୍ୟକଳାପ ହଠାତ୍ ବନ୍ଦ ହୋଇଯାଇପାରେ। ସେ ଜଡ଼ବସ୍ତୁ ପରି ଅଚଳ ହୋଇ ପଡ଼ି ଯାଇପାରେ। ତା'ର କାରଣ, ତା' ଭିତରେ ଥିବା ସୂକ୍ଷ୍ମ ଶରୀରଟି ପବନ ପରି ଦେହ ଭିତରୁ ବାହାରକୁ ଚାଲିଯାଏ। ଏହି ସୂକ୍ଷ୍ମ ଶରୀରଟି ଯୋଗୁଁ ମନୁଷ୍ୟ ବଞ୍ଚିଥିବା ସମୟରେ ଚଲାବୁଲା, କଥାବାର୍ତ୍ତା, ଖିଆପିଆ କରିପାରେ। ମଲା ପରେ ସୂକ୍ଷ୍ମ ଶରୀରଟି ପବନ ପରି ସେହି ଆଖପାଖରେ ବିଚରଣ କରୁଥାଏ; ଭୂତ ପ୍ରେତ ରୂପେ ଜୀବିତଥିବା ବନ୍ଧୁବାନ୍ଧବଙ୍କୁ ସାହାଯ୍ୟ କରେ କିମ୍ବା ଭୟ ଭୀତ କରାଏ। ଏ ପ୍ରକାର କଳ୍ପନା କରିବା ଆଦିମ ମନୁଷ୍ୟ ପକ୍ଷରେ ସ୍ୱାଭାବିକ। ବର୍ତ୍ତମାନ ସୁଦ୍ଧା ଅନେକ ଆଦିବାସୀଲୋକେ ସେମାନଙ୍କର ବେଶି ଦେହ ଖରାପ ହେଲେ ପାଟି ଓ ନାକପୁଡ଼ା ବନ୍ଦ କରି ରଖିବାକୁ ଚେଷ୍ଟା କରନ୍ତି। କାରଣ ସେମାନେ ଭୟ କରନ୍ତି ଯେ କାଳେ ନାକପୁଡ଼ା ଦେଇ ଅଶରୀରୀ ଜୀବନଟି ବାହାରକୁ ଚାଲିଯିବ। ସେହିପରି ବର୍ତ୍ତମାନ ସୁଦ୍ଧା ଆମ ଦେଶରେ ଅନେକେ ଡାହାଣୀ ଭୂତରେ ବିଶ୍ୱାସ କରନ୍ତି।

ତେବେ ଏ ପ୍ରକାର ସରଳବିଶ୍ୱାସ ବେଶିଦିନ ରହିବା ସମ୍ଭବ ନୁହେଁ। କ୍ରମେ କ୍ରମେ ଏହାର ନାନାପ୍ରକାରର ବୈଜ୍ଞାନିକ ବ୍ୟାଖ୍ୟା ହେବାର ଚେଷ୍ଟା ହେଲା। ଅନ୍ୟାନ୍ୟ କ୍ଷେତ୍ରରେ ବହୁ ବୈଜ୍ଞାନିକ ଆବିଷ୍କାର ହେବା ସାଙ୍ଗେ ସାଙ୍ଗେ ମନୋବିଜ୍ଞାନ ସମ୍ବନ୍ଧରେ ମଧ୍ୟ ବହୁ ନୂତନ ତଥ୍ୟ ଦେଖାଦେଲା। ମନୁଷ୍ୟର ମାନସିକ କ୍ରିୟାକଳାପରେ ଯୁକ୍ତିଯୁକ୍ତ

ତଥ୍ୟ ନିର୍ଣ୍ଣୟ କରିବା ଲାଗି ବହୁ ପ୍ରକାର ଗବେଷଣା ଚାଲିଲା । ଜଡ଼ ପଦାର୍ଥର ଭିନ୍ନଭିନ୍ନ ବିଶ୍ଳେଷଣ ଲାଗି ଯେ ପ୍ରକାର ବାସ୍ତବ ଗବେଷଣା ପଦ୍ଧତି ପ୍ରୟୋଗ କରାହେଲା, ଏ କ୍ଷେତ୍ରରେ ମଧ୍ୟ ସେ ପ୍ରକାର ବୈଜ୍ଞାନିକ ଗବେଷଣା ଓ କୃତ୍ରିମ ଅଭିକ୍ରିୟା ସାହାଯ୍ୟରେ ଶାରୀରିକ ଓ ମାନସିକ କ୍ରିୟାକଳାପ ସବୁ ପରୀକ୍ଷା କରାହେଲା । ତା'ଫଳରେ ବହୁ ନୂତନ ତଥ୍ୟ ଦେଖାଦେଲା ; ଯାହା ରହସ୍ୟାବୃତ ବୋଲି ମନେହେଉଥିଲା, ସେ ସବୁ କ୍ରମେ କ୍ରମେ ସରଳ ହୋଇ ପଡ଼ିଲା । ଅବଶ୍ୟ ତା'ଅର୍ଥ ନୁହେଁ ଯେ ସବୁ ମନସ୍ତତ୍ତ୍ୱବିତ୍‌ମାନେ ସେହି ଏକ ସିଦ୍ଧାନ୍ତରେ ପହଞ୍ଚିଲେ । ବସ୍ତୁ ଜଗତରେ କାମ କରୁଥିବା ବୈଜ୍ଞାନିକମାନେ ଯେପରି ଅଧିକାଂଶ ଗବେଷଣା ସିଦ୍ଧାନ୍ତ ଫଳାଫଳରେ ଏକମତ ହୋଇପାରନ୍ତି, ବର୍ତ୍ତମାନ ପର୍ଯ୍ୟନ୍ତ ମନସ୍ତତ୍ତ୍ୱବିତ୍‌ମାନେ ସେପରି ଭାବରେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହାନ୍ତି । ଏ କ୍ଷେତ୍ରରେ ନାନାପ୍ରକାର ପରସ୍ପର ବିରୁଦ୍ଧାତ୍ମକ ମତାମତ ଥିବାର ମଧ୍ୟ ଦେଖାଯାଏ ।

ଦଳେ ମନସ୍ତତ୍ତ୍ୱବିତ୍ ଭୌତିକ ଦ୍ରବ୍ୟ ସାହାଯ୍ୟରେ ତିଆରି ହୋଇଥିବା ଯନ୍ତ୍ର ସହିତ ମନୁଷ୍ୟକୁ ତୁଳନା କରି କହନ୍ତି ଯେ ମଣିଷ ଜଡ଼ ଯନ୍ତ୍ରଠାରୁ ବହୁତ ତଫାତ୍ ଓ ଜଟିଳ ହେଲେ ସୁଦ୍ଧା ଉଭୟେ ସେହି ଗୋଟିଏ ରୀତିରେ ପରିଚାଳିତ । ମନୁଷ୍ୟର ଆଚାର ବ୍ୟବହାର, ଚାଲିଚଳଣ, ସଂସ୍କୃତି, ସଭ୍ୟତା, ଆଦର୍ଶ ପ୍ରଭୃତି ସବୁ ଭୌତିକ କ୍ରିୟାକଳାପ ପରି ଅତି ସହଜରେ ବୁଝାଇ ହେବ ; କିନ୍ତୁ ଆଉ ଦଳେ ମନସ୍ତତ୍ତ୍ୱବିତ୍ ଏ ପ୍ରକାର ବିଶ୍ଳେଷଣରେ ସନ୍ତୁଷ୍ଟ ହୋଇପାରନ୍ତି ନାହିଁ । ଏମାନଙ୍କ ମତରେ ମନୁଷ୍ୟର ସମସ୍ତ ପ୍ରକାର ବ୍ୟବହାର ଓ ମାନସିକ କ୍ରିୟାକଳାପ ଏପରି ଭାବରେ ବ୍ୟାଖ୍ୟା କରିବା ଅସମ୍ଭବ । ଗୋଟିଏ ଜୀବ ଭୌତିକ ଯନ୍ତ୍ରଠାରୁ ପୂରାପୂରି ଅଲଗା । ଜୀବନୀ ଶକ୍ତିର କାର୍ଯ୍ୟକଳାପ ଭୌତିକ ଶକ୍ତିର କ୍ରିୟା-ପ୍ରତିକ୍ରିୟାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଗୋଟିଏ ବସ୍ତୁ ବାହାର ଶକ୍ତି ସଂଘାତରେ ନଷ୍ଟ ହୋଇଯାଇପାରେ । ଥରେ ଭାଙ୍ଗିଗଲେ ଛାଏଁ ଛାଏଁ ଯୋଡ଼ି ହେବାର କ୍ଷମତା ଏହାର ନାହିଁ ; କିନ୍ତୁ ଗୋଟିଏ ଜନ୍ତୁ ବା ମନୁଷ୍ୟର ଏ ଶକ୍ତି ଅଛି । ଗୋଟିଏ ଅଂଶ ନଷ୍ଟ ହୋଇଗଲା ପରେ ନିଜର ଅନ୍ତର୍ନିହିତ ଶକ୍ତି ବଳରେ ଏହା ଛାଏଁ ଛାଏଁ ତିଆରି ହୋଇଯାଏ । ନିଜ ପରି ଆଉ ଗୋଟିଏ ଜୀବ ଏହା ସୃଷ୍ଟି କରିପାରେ । ନିଜକୁ ବଞ୍ଚାଇ ରଖିବା ଲାଗି ଭିନ୍ନ ଭିନ୍ନ ପରିସ୍ଥିତି ଅନୁସାରେ କାମ କରିପାରେ । ନିମ୍ନସ୍ତରର ଜୀବଜନ୍ତୁମାନେ ଏସବୁ କାମ ସେମାନଙ୍କର ଜନ୍ମଗତ ଓ ଅନ୍ତର୍ନିହିତ ସହଜ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ କାମ କରିଥା'ନ୍ତି । ଜୀବୀର ଉଦ୍ଦେଶ୍ୟ ଓ ଜୀବନର ସାର୍ଥକତା ଲାଗି ଜନ୍ମହେଲା ସମୟଠାରୁ ସେମାନଙ୍କଠାରେ କେତେଗୁଡ଼ିଏ ପ୍ରବୃତ୍ତି ଦେଖାଦେଇଥାଏ । ସେହି ଜନ୍ମଗତ ପ୍ରବୃତ୍ତି ବଳରେ ସେମାନେ ଜୀବନର ଅତ୍ୟାବଶ୍ୟକୀୟ କାର୍ଯ୍ୟ କରି ଯାଆନ୍ତି । ମନୁଷ୍ୟ ମଧ୍ୟ ତା'ର ପୂର୍ବବଂଶୀୟ ଅନ୍ୟାନ୍ୟ ଜୀବଜନ୍ତୁଙ୍କ ପରି କେତେଗୁଡ଼ିଏ ଜନ୍ମଗତ ପ୍ରବୃତ୍ତି ହାସଲ କରିଥାଏ ; କିନ୍ତୁ ମନୁଷ୍ୟର ଅତି ଉନ୍ନତ ଧୀଶକ୍ତି ଯୋଗୁଁ ସେହି ଜନ୍ମଗତ ସହଜ ପ୍ରବୃତ୍ତିଗୁଡ଼ିକ ଭିନ୍ନ ଭିନ୍ନ ଭୌତିକ ଓ ସାମାଜିକ ପରିସ୍ଥିତି ଅନୁସାରେ ବିଭିନ୍ନ

ଭାବରେ ଦେଖାଦେଇଥାଏ। ଅର୍ଥାତ୍ ଅନ୍ୟାନ୍ୟ ଜୀବଜନ୍ତୁ ଯେପରି ଅନେକ ସମୟରେ ଯନ୍ତ୍ରବତ୍ ପରିଚାଳିତ ହୁଅନ୍ତି, ମନୁଷ୍ୟ ସେହିପରି ନିୟନ୍ତ୍ରିତ ଓ ପରିଚାଳିତ ହୁଏ ନାହିଁ। ତେଣୁ ମନୁଷ୍ୟର ବାହ୍ୟ ବ୍ୟବହାର ଓ ଅନ୍ୟାନ୍ୟ କାର୍ଯ୍ୟକଳାପ ବିଷୟରେ ଜାଣିବାକୁ ହେଲେ ତା'ର ଜାନ୍ତବ ପ୍ରବୃତ୍ତି ଛଡ଼ା ଅନ୍ୟାନ୍ୟ ଅଭିପ୍ରାୟ ଓ ଉଦ୍ଦେଶ୍ୟଗୁଡ଼ିକ ଭଲଭାବେ ବିଶ୍ଳେଷଣ କରି ଦେଖିବା ଉଚିତ।

ଯେଉଁ ମନସ୍ତତ୍ତ୍ୱବିତ୍‌ମାନେ ମନୁଷ୍ୟର କ୍ରିୟା କଳାପକୁ ଅଭିପ୍ରାୟ ଓ ଉଦ୍ଦେଶ୍ୟ ଦୃଷ୍ଟିରୁ ବିଶ୍ଳେଷଣ କରିବା ପାଇଁ କହନ୍ତି, ସେମାନଙ୍କ ମତରେ କି ମନୁଷ୍ୟ କି ପଶୁ ସମସ୍ତେ କୌଣସି ନା କୌଣସି ଗୋଟିଏ ଉଦ୍ଦେଶ୍ୟ ଆଗରେ ରଖି କାମ କରନ୍ତି। ଅଭିପ୍ରାୟ ବିନା କେହି ଜୀବ କୌଣସି କାମ କରେନାହିଁ। ଏହି ଉଦ୍ଦେଶ୍ୟ ସିଦ୍ଧି ଲାଗି ପ୍ରତ୍ୟେକ ଜନ୍ତୁ ଓ ମନୁଷ୍ୟର ଦେହ ଏବଂ ଅନ୍ୟାନ୍ୟ ଅବୟବ ସେହିପରି ଭାବରେ ଗଠିତ ହୋଇଅଛି। ମାଙ୍କଡ଼ର ହାତଗୋଡ଼ ଗଛ ଚଢ଼ିବା ଲାଗି ଯେପରି ଗଢ଼ା, ମନୁଷ୍ୟର ହାତ ନାନାକ୍ଷେତ୍ରରେ ଦକ୍ଷତା ଅର୍ଜନ କରିବା ଲାଗି ସେହିପରି ଗଠିତ ହୋଇଅଛି। ତେଣୁ ପ୍ରତ୍ୟେକ କାର୍ଯ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଉପାୟରେ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ଲାଗି ଉଦ୍ଦିଷ୍ଟ। ମନୁଷ୍ୟ ଶିଶୁ ଜନ୍ମ ହେଲାକ୍ଷଣି ନିଜକୁ ବଞ୍ଚାଇ ରଖିବା ଲାଗି ଯାହା ପାଟି ପାଖରେ ପାଏ, ତା' ଚୂଚୁମିବାକୁ ଆରମ୍ଭ କରେ। ପେଟ ଭିତରକୁ କିଛି ତରଳ ପଦାର୍ଥ ପହଞ୍ଚିଲାକ୍ଷଣି ପେଟ ଭିତରେ ମନ୍ଥନ କାର୍ଯ୍ୟ ଆରମ୍ଭ ହୁଏ। ଖାଦ୍ୟପଦାର୍ଥ ସହିତ ରକ୍ତ ସଞ୍ଚାଳନ ଏପରି ଭାବରେ ହୁଏ ଯେ ଜୀର୍ଣ୍ଣ କରିବା କାମ ସହଜରେ ସମ୍ପାଦନ କରିହୁଏ। ଜୀବଜନ୍ତୁମାନଙ୍କ ଭିତରେ ମଧ୍ୟ ଏ ପ୍ରକାର ଜନ୍ମଗତ ସହଜ କ୍ରିୟା ଦେଖାଯାଏ ଏବଂ ଏ ପ୍ରକାର କ୍ରିୟାର ପ୍ରଧାନ ଉଦ୍ଦେଶ୍ୟ ହେଲା ନିଜକୁ ବଞ୍ଚାଇ ରଖିବା। ଏହା ପ୍ରତ୍ୟେକ ଜୀବର ଗୋଟିଏ ପ୍ରଧାନ ଜନ୍ମଗତ, ପ୍ରବୃତ୍ତିଗତ ଆଚରଣ।

ଗୋଟିଏ ଜୀବ କେବଳ ଖିଆପିଆ କରି ନିଜର କଳେବର ବୃଦ୍ଧି କଲେ, ଜୀବନର ଅଭିପ୍ରାୟ ସାଧିତ ହେଲାନାହିଁ। କାରଣ ତା'ର ମୃତ୍ୟୁ ପରେ ତା'ର ବଂଶ ଲୋପ ପାଇଯିବ। ତେଣୁ ପ୍ରତ୍ୟେକ ଜୀବଜନ୍ତୁ ଓ ମନୁଷ୍ୟର ଉଦ୍ଦେଶ୍ୟ ହେଲା ନିଜପରି ଆଉ ଗୋଟିଏ ଜୀବନ ସୃଷ୍ଟି କରିବା। ଯୌନ ପ୍ରବୃତ୍ତିର ମୂଳରେ ଏହି ବିରାଟ ଅଭିପ୍ରାୟ ରହିଛି। ଖାଲି ସେତିକି ନୁହେଁ, ନିଜକୁ ଓ ନିଜର ଛୁଆପିଲାଙ୍କୁ ଶତ୍ରୁ ହାତରୁ ବଞ୍ଚାଇବା ଉଦ୍ଦେଶ୍ୟରେ ତାକୁ ଅନ୍ୟ ସହିତ ଯୁଦ୍ଧ କରିବାକୁ ପଡ଼େ ଏବଂ ସମୟ ସମୟରେ ସେମାନଙ୍କୁ ଭୟ ମଧ୍ୟ କରିବାକୁ ହୁଏ। ଭୟ, ରାଗ, କ୍ରୋଧ, ବିରକ୍ତି, ଦ୍ୱେଷ ଓ ଯୁଦ୍ଧ କରିବା ପ୍ରବୃତ୍ତିଗୁଡ଼ିକ ଏହି ଉଦ୍ଦେଶ୍ୟରେ ଆମମାନଙ୍କଠାରେ ରହିଛି। ରାଗିବା ଶକ୍ତି ଯାହାର ନାହିଁ, ଯେ ଘୃଣା କରିପାରିବ ନାହିଁ, ସେ ଯୁଦ୍ଧ କରିପାରିବ ନାହିଁ। ନିଜକୁ ଶତ୍ରୁ ହାତରୁ ରକ୍ଷା କରିପାରିବ ନାହିଁ। ଅର୍ଥାତ୍ ଯେଉଁମାନେ ନିଜକୁ ବଞ୍ଚାଇ ରଖିପାରିଛନ୍ତି ଓ ବିବର୍ତ୍ତନ ସୋପାନ ଶ୍ରେଣୀର ଏତେ ଉଚ୍ଚକୁ ଉଠିପାରିଛନ୍ତି, ସେହିମାନଙ୍କଠାରେ ଏସବୁ ପ୍ରବୃତ୍ତି ଥିବାରୁ ସେମାନେ ଏପରି ଭାବରେ ଆଗେଇ ପାରିଛନ୍ତି ଓ ବର୍ତ୍ତମାନ ମଧ୍ୟ

ପାରୁଛନ୍ତି । ଏସବୁ ନ ଥିଲେ ଆଜି ସେମାନେ ବଞ୍ଚିରହି ନଥା'ନ୍ତେ କି ଏପରି ଭାବରେ ନିଜ ବଂଶ ବୃଦ୍ଧି କରିପାରି ନଥା'ନ୍ତେ। ତା'ଛଡ଼ା ନାନାପ୍ରକାର ଶତ୍ରୁ ସହିତ ଏକା ଏକା ଯୁଦ୍ଧ କରିବା ଅନେକ ସମୟରେ ସମ୍ଭବ ନୁହେଁ। ତେଣୁ ପରସ୍ପର ପ୍ରତି ମମତା ଓ ଏକାଠି ରହିବା ଲାଗି ଜନ୍ମଗତ ଆକର୍ଷଣ ଏହି ଉଦ୍ଦେଶ୍ୟ ସାଧନା ଲାଗି ସାହାଯ୍ୟ କରେ। ଏହିପରି ଭାବରେ କେତୋଟି ଜନ୍ମଗତ ସହଜ ପ୍ରବୃତ୍ତି ମନୁଷ୍ୟଠାରେ ଦେଖାଯାଏ ଓ ନାନାଭାବରେ ଏସବୁ ମନୁଷ୍ୟର ଉଦ୍ଦେଶ୍ୟ ସାଧନ କରେ।

ତା'ହେଲେ କ'ଣ ଆମକୁ ବୁଝିବାକୁ ହେବ ଯେ ମନୁଷ୍ୟ ଏହି କେତୋଟି ଜନ୍ମଗତ ପ୍ରବୃତ୍ତି ଦ୍ୱାରା ଯନ୍ତ୍ରବତ୍ ପରିଚାଳିତ ହେଉଛି ଏବଂ ଏହି କେତୋଟି ପ୍ରବୃତ୍ତି ଜନିତ କ୍ରିୟାକଳାପର କୌଣସି ପରିବର୍ତ୍ତନ ସମ୍ଭବ ନୁହେଁ? ଅନ୍ୟ ଜୀବଜନ୍ତୁଙ୍କ ପକ୍ଷରେ ଏହା ସତ୍ୟ, କିନ୍ତୁ ମନୁଷ୍ୟମାନଙ୍କ ପକ୍ଷରେ ଏହା ଠିକ୍ ନୁହେଁ। ମନୁଷ୍ୟଠାରେ କାମ କରୁଥିବା ସହଜ ପ୍ରବୃତ୍ତିଗୁଡ଼ିକ ମଧ୍ୟ ସାମାଜିକ ଓ ଅନ୍ୟାନ୍ୟ ପରିସ୍ଥିତି ଅନୁସାରେ ପରିବର୍ତ୍ତିତ ହୋଇପାରେ। ପଶୁ ନିଜକୁ ରକ୍ଷାକରିବା ଲାଗି ବା ନିଜର ଖାଦ୍ୟ ସଂଗ୍ରହ ଲାଗି ଅନ୍ୟ ସହିତ ଯୁଦ୍ଧ କରିବାକୁ ବାଧ୍ୟ; କିନ୍ତୁ ମନୁଷ୍ୟ ପକ୍ଷରେ ଖାଦ୍ୟ ଲାଗି ଯୁଦ୍ଧ କରିବା ଏକାବେଳକେ ଦରକାର ହୋଇ ନପାରେ; ଅନ୍ୟାନ୍ୟ ଉପାୟରେ ଏହା ସାଧିତ ହୋଇପାରେ। ଜୀବନ ଧାରଣ ଲାଗି ଭୋଜନ କରିବା ଆମର ପ୍ରବୃତ୍ତି; କିନ୍ତୁ ଟେବୁଲ ଚୌକିରେ ବସି, ପ୍ଲେଟ୍‌ରେ ରଖି, କଣ୍ଟା ଚାମୁଚରେ ଖାଇବା କି ତଳେ ଆସନ ଉପରେ ବସି ହାତରେ ଖାଇବା, ଏହାର ବିଚାର ମନୁଷ୍ୟ ନିଜ ସାମାଜିକ, ପାରିବାରିକ ପରିସ୍ଥିତି ଓ ନିଜର ରୁଚି ଅନୁସାରେ କରିଥାଏ। ତେଣୁ ଖାଇବା ରୀତି ସହିତ ପ୍ରବୃତ୍ତିର କୌଣସି ସଂପର୍କ ନାହିଁ। ଅର୍ଥାତ୍ ଖାଇବା ରୀତି ପଛରେ ଯେ ଉଦ୍ଦେଶ୍ୟ ରହିଛି ତାହା ଜୀବନଧାରଣ ଉଦ୍ଦେଶ୍ୟଠାରୁ ଅଲଗା। ତେଣୁ ଜନ୍ମଗତ ପ୍ରବୃତ୍ତି ଛଡ଼ା ମନୁଷ୍ୟ ମନରେ ଆହୁରି କେତେଗୁଡ଼ିଏ ସ୍ଥାୟୀଭାବ ରହିଥାଏ, ଯାହାକି ତା'ର ଦୈନନ୍ଦିନ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରେ। ମାନବ ସମାଜର ସଂସ୍କୃତି, ସଭ୍ୟତା, ସଙ୍ଗୀତ, କଳା, ସାହିତ୍ୟ ଦର୍ଶନ ପ୍ରଭୃତି ଏ ପ୍ରକାର ସ୍ଥାୟୀଭାବ ଜନିତ ଅଭିପ୍ରାୟର ସୁସଙ୍ଗଠିତ ଫଳାଫଳ ଏସବୁ ସ୍ଥାୟୀଭାବଗୁଡ଼ିକ ମନୁଷ୍ୟର ସାମାଜିକ, ଅର୍ଥନୈତିକ, ଭୌତିକ ପରିସ୍ଥିତି ଓ ସାମାଜିକ ଶିକ୍ଷା ଅନୁସାରେ କାଳକ୍ରମେ ତାହାର ଅଭିଜ୍ଞତା ଭିତର ଦେଇ ଗଢ଼ି ଉଠିଥାଏ। ଏସବୁ ଜନ୍ମଗତ ନୁହେଁ। ତେଣୁ ଏହା ଦେଶ, କାଳ, ବ୍ୟକ୍ତିବିଶେଷରେ ଭିନ୍ନଭିନ୍ନ ରୂପଧାରଣ କରିଥାଏ। କିନ୍ତୁ ଜନ୍ମଗତ ସହଜ ପ୍ରବୃତ୍ତିଗୁଡ଼ିକ ସମସ୍ତଙ୍କଠାରେ ଦେଖାଯାଏ। ମନୁଷ୍ୟର ଦୈନନ୍ଦିନ ଭୌତିକ ଅଭାବ-ଅନଟନ ତୁଳନାରେ ଏସବୁ ଯେତେ ଗୌଣ ଓ ଅବାସ୍ତବ ବୋଲି ମନେହେଲେ ସୁଦ୍ଧା ଜୀବନଯାପନ ଲାଗି ଏହାର ଦାନ କମ୍ ନୁହେଁ। ତେଣୁ ଜୀବନଯାପନ ପ୍ରଣାଳୀ ଓ ବ୍ୟାବହାରିକ ରୀତି ଦୃଷ୍ଟିରୁ ଏ ସବୁ ଉଦ୍ଦେଶ୍ୟ କୌଣସି ଅଂଶରେ କମ୍ ନୁହେଁ। ସବୁ ଜୈବିକ ଓ ମାନସିକ କ୍ରିୟା-ପ୍ରକ୍ରିୟାର ଗୋଟିଏ ଅନ୍ତର୍ନିହିତ ଜ୍ଞାତ ବା ଅଜ୍ଞାତ ଅଭିପ୍ରାୟ ଅଛି ଏହାକୁ ଗୋଟିଏ ସର୍ବବ୍ୟାପୀ ନିୟମ ବୋଲି ଧରାଯାଇ ପାରେ।

■□■




# ମନର ମୂଳେ ଏ ଜଗତ

ମନ ଓ ଜଗତ ଭିତରେ ପାରସ୍ପରିକ କ୍ରିୟାପ୍ରକ୍ରିୟାଗତ ସମ୍ପର୍କ ଅତି ନିବିଡ଼। ଜଗତର ରୂପରେଖ, କାର୍ଯ୍ୟକଳାପ ଏବଂ ଏହାର ବିଚିତ୍ର ଜାଗତିକ ତଥା ସାମାଜିକ ପରିବେଶକୁ ମନ ଉପଲବ୍ଧି କରିବା ସହିତ ଏହାକୁ ନାନାଭାବରେ ପରିକଳ୍ପିତ, ପରିମାର୍ଜିତ ତଥା ପରିବର୍ଦ୍ଧିତ କରିଥାଏ। ଜଗତ ଅନୁସାରେ ମନ ଗଢ଼ିଉଠିଥାଏ। ଏହି ଗଠନ ପ୍ରକ୍ରିୟା ଭିତର ଦେଇ ଜଗତର ରୂପ ନୂଆ ନୂଆ ଭାବରେ ମନୁଷ୍ୟ ମନ ଭିତରେ ବଦଳି ବଦଳି ଚାଲିଥାଏ। ଶିଶୁ ଜନ୍ମ ହେଲା ପରେ ଯାହା ଦେଖେ, ତାହା ଅତି ଦ୍ରୁତଗତିରେ ବଦଳିଯାଏ। ସେ କ୍ରମେ ତା'ର ନୂଆ ନୂଆ ପ୍ରତ୍ୟକ୍ଷାନୁଭୂତିକ ଅଭିଜ୍ଞତା ଦ୍ୱାରା ଜଗତକୁ ଚିହ୍ନିବାକୁ ଚେଷ୍ଟା କରେ। ଏହି ଉଦ୍ୟମକୁ ସଫଳୀଭୂତ କରେ ତାର ଜାଗତିକ ଓ ସାମାଜିକ ପରିବେଶ। ପାରିବାରିକ ରୁଚି-ଅରୁଚି, ନୀତି-ଅନୀତି, ଭଲ-ମନ୍ଦ, ବିଚାର ପ୍ରଭୃତି ମୂଲ୍ୟବୋଧ ଅନୁଯାୟୀ ତା'ର ଭାବଧାରା ଓ ମନୋବୃତ୍ତି ବଦଳି ବଦଳି ଚାଲିଥାଏ। କ୍ରମେ ମାନବ ସମାଜର ବୃହତ୍ତର ମାନବୀୟ ପରିବେଶ ଭିତରେ ତା'ର ପୂର୍ଣ୍ଣ ବ୍ୟକ୍ତିତ୍ୱ ବିକଶିତ ହୁଏ। ଏହି ପ୍ରକ୍ରିୟାଗତ କ୍ରିୟା-ଅନୁକ୍ରିୟା ଭିତରେ ବହୁଲୋକ ଜଗତକୁ କେତେକ କ୍ଷେତ୍ରରେ ଏକାପରି ଦେଖୁଥିଲାବେଳେ ଆଉ କେତେକ ଘଟଣାବଳୀକୁ ନିଜ ବ୍ୟକ୍ତିକେନ୍ଦ୍ରିକ ଦୃଷ୍ଟିକୋଣରୁ ଦେଖିବାକୁ ଭଲ ପାଆନ୍ତି। ବିଭିନ୍ନ ଲୋକ ଭିତରେ ଅତୀତ ଅଭିଜ୍ଞତା ତଥା ଭବିଷ୍ୟତ ଆଶା ଆକାଙ୍କ୍ଷାରେ ଯେପରି ବିଭିନ୍ନତା ଦେଖାଦେବା ସ୍ୱାଭାବିକ, ସେମାନଙ୍କର ଜଗତ ବିଷୟରେ କଳ୍ପନା ଜଳ୍ପନା ଭିତରେ ବହୁ ପାର୍ଥକ୍ୟ ରହିଯିବା ମଧ୍ୟ ସ୍ୱାଭାବିକ। ଯେପରି ଜଣେ ଜ୍ୟୋତିଷ ବିଶାରଦ ଚନ୍ଦ୍ର ପୃଷ୍ଠରୁ ମନୁଷ୍ୟ ସଂଗ୍ରହ କରି ଆଣିଥିବା ବସ୍ତୁର ବିଶ୍ଳେଷଣରେ ନିୟୋଜିତ ଥିଲାବେଳେ ଅନ୍ୟ ଜଣେ ଜ୍ୟୋତିଷୀ ବିଦ୍ୟାବିତ୍ ଚନ୍ଦ୍ରକୁ ପ୍ରେତଲୋକ ହିସାବରେ ଚନ୍ଦ୍ରରିଷ୍ଟ ଖଣ୍ଡନ ପାଇଁ ନାନା ବିଷୟରେ ମନୋନିବେଶ କରୁଥାଏ।

ଗୋଟିଏ ପାରିବାରିକ ପରିସ୍ଥିତିରେ ସମାନ ଧରଣର ଚାଲିଚଳଣ ତଥା ଅଭିଜ୍ଞତା ହେବାର ସମ୍ଭାବନା ଥିଲେ ମଧ୍ୟ ପରିବାରର ପ୍ରତ୍ୟେକ ବ୍ୟକ୍ତିର ଜାଗତିକ ଓ ସାମାଜିକ ଦୃଷ୍ଟିକୋଣ ସମାନ ନ ଥାଇ ପାରେ। ଆଖି, କାନ, ନାକ, ସ୍ପର୍ଶ, ସ୍ୱାଦ ପ୍ରଭୃତି ଇନ୍ଦ୍ରିୟ ସାହାଯ୍ୟରେ ଆମେ ଗୋଟିଏ ପରିସ୍ଥିତିରେ ପ୍ରତ୍ୟକ୍ଷ ଅନୁଭୂତି ହାସଲ କରୁଥିଲେ ସୁଦ୍ଧା ଆମର ଅତୀତର ଜ୍ଞାନ ଓ ବର୍ତ୍ତମାନର ବିଶ୍ୱାସ ଅନୁସାରେ ସେହି ଗୋଟିଏ ଜିନିଷ ବିଭିନ୍ନ ରୂପରେ ଆମ ମନରେ ଛାପ ପକାଇଥାଏ। ଗୋଟିଏ ଗୀତ ଜଣକୁ ଭଲଲାଗେ ତ ଆଉଜଣକୁ ତାହା ବିରକ୍ତିକର ମନେହୋଇପାରେ। ସେହିପରି ଗୋଟିଏ ଦୃଶ୍ୟ ବା ବସ୍ତୁକୁ ସମସ୍ତେ ସମାନ ଭାବରେ ଉପଭୋଗ କରିପାରନ୍ତି ନାହିଁ। ଜଣେ ସ୍ୱପ୍ନବିଭୋର କବି, ଜଣେ ଦାର୍ଶନିକ ତ ଆଉ ଜଣେ ବାସ୍ତବବାଦୀ ହିସାବରେ ସେହି ଗୋଟିଏ ଘଟଣାକୁ

ବିଭିନ୍ନ ଭାବରେ ଅନୁଭବ କରିପାରନ୍ତି । ତେଣୁ ସମସ୍ତଙ୍କୁ ଏହି ଜଗତ ଅଲଗା ଅଲଗା ଦେଖାଯିବା ସ୍ୱାଭାବିକ ।

ନାନା ଭାବରେ ନାନା ପରିସ୍ଥିତିର ସମ୍ମୁଖୀନ ହୋଇ ବିଭିନ୍ନ ବ୍ୟକ୍ତିତ୍ୱ ଗଢ଼ିଉଠେ ଏବଂ ବ୍ୟକ୍ତିତ୍ୱର ଦୃଷ୍ଟିକୋଣ ଓ ମୂଲ୍ୟବୋଧର ତାଞ୍ଚା ଅନୁସାରେ ଏହି ଜଗତ ପରିଦୃଷ୍ଟ ହୋଇଥାଏ । ଜଣକର ଅତି ଆବଶ୍ୟକୀୟ ଇଚ୍ଛା ଓ ନିକଟ ଭବିଷ୍ୟର ଅଭିଳାଷ ଅନୁସାରେ ଗୋଟିଏ ବସ୍ତୁ ବା କ୍ରିୟା ଆକର୍ଷଣୀୟ ବୋଲି ମନେ ହେଲାବେଳେ ଆଉ ଜଣଙ୍କ ପକ୍ଷରେ ତାହା ମୂଲ୍ୟହୀନ ବୋଲି ଜଣାଯାଏ । ଜଣେ ଗରିବ କ୍ଷୁଧାର୍ତ୍ତ ଲୋକଙ୍କୁ ଖାଦ୍ୟ ପଦାର୍ଥ ଯେପରି ମୂଲ୍ୟବାନ ଓ ଆକର୍ଷଣୀୟ, ଜଣେ ଭୂରିଭୋଜନରେ ଅଭ୍ୟସ୍ତ ଧନୀ ଲୋକଙ୍କୁ ତାହା ସେହିପରି ଦେଖାଯିବ ନାହିଁ । ତେଣୁ ମନୋବିଜ୍ଞାନରେ ଗୋଟିଏ ମତ ରହିଛି ଯେ ଆମେ ଯାହା ଦେଖୁ ଏବଂ ଯେପରି ଭାବରେ ଦେଖୁ, ତାହା ଆମ ଆଗରେ ଥିବା ବସ୍ତୁର ପ୍ରକୃତି ଉପରେ ନିର୍ଭର କରେ ନାହିଁ— କରେ ଆମର ଅତୀତ ଅନୁଭୂତି ତଥା ବର୍ତ୍ତମାନର ରୁଚି ଅରୁଚି, ଅତ୍ୟାବଶ୍ୟକୀୟ ଅଭାବ ଓ ଆମର ସାମଗ୍ରିକ ଦୃଷ୍ଟିକୋଣ ଉପରେ ।

ପ୍ରତ୍ୟକ୍ଷୀଭୂତ ଅନୁଭୂତି ଛଡ଼ା ମନୁଷ୍ୟର ଆଉ ଗୋଟିଏ ବୃହତ୍ତର ପରିସର ରହିଛି । ଏହି ସୀମାହୀନ ମାନସିକ କ୍ଷେତ୍ରକୁ ପ୍ରତ୍ୟେକ ବ୍ୟକ୍ତି ତା'ର କଳ୍ପନା ଜଳ୍ପନା, ଅତୀତର ସଫଳତା ଓ ବିଫଳତାର ରୋମନ୍ଥନ ତଥା ଭବିଷ୍ୟତର ସ୍ୱପ୍ନ ଅନୁସାରେ ସୃଷ୍ଟି କରି ଚାଲିଛି । ଏହାର ଅବାସ୍ତବ ରଙ୍ଗିନ ସ୍ୱପ୍ନ ଭିତରେହିଁ ଭବିଷ୍ୟ ଜୀବନର ସାଫଲ୍ୟ ଲୁଚାୟିତ ହୋଇ ରହିଥାଏ । ଏହାର ଚରିତ୍ର ଭିନ୍ନ ଭିନ୍ନ ହୋଇଥିବାରୁ ଜଗତର ରୂପରେଖ ମଧ୍ୟ ବିଭିନ୍ନ ଲୋକଙ୍କଠାରେ ଭିନ୍ନ ଭିନ୍ନ ଦେଖାଦେଇଥାଏ । କାହାର ବ୍ୟର୍ଥ ଜୀବନର ତିକ୍ତ ଅନୁଭୂତି ଯୋଗୁଁ ଜଗତ ଦୁଃଖମୟ ବୋଲି ଅନୁଭୂତ ହେଉଥାଏ ତ ଆଉ କାହା ପକ୍ଷରେ ଜଗତ ଅତ୍ୟନ୍ତ ସୁନ୍ଦର, ଆକର୍ଷଣୀୟ ତଥା ପରମ ଉପଭୋଗ୍ୟ ବୋଲି ମନେହୁଏ । ଆକାଂକ୍ଷା ନିରାକାଂକ୍ଷା ରଞ୍ଜିତ ଜଗତ ନିଶ୍ଚୟ ପୃଥକ ପୃଥକ ଭାବରେ ଦେଖାଦେବ । ଜଗତରେ ସବୁରହିଛି— ସବୁ ଧରଣର ଉପଭୋଗ୍ୟ ବସ୍ତୁରେ ଏହା ପରିପୂର୍ଣ୍ଣ । କିଏ ଏହା ଭିତରୁ କଅଣ ସଂଗ୍ରହ କରିପାରୁଛି— ସେହି ଅନୁସାରେ ତା'ର ଜଗତର ରୂପରେଖ ତା ମନରେ ଚିତ୍ରିତ ହେଉଛି । ଫଳରେ ଏହି ଜଗତର ପ୍ରକୃତି ବିଷୟରେ ନାନାପ୍ରକାର ବାଦ ବିସମ୍ବାଦ, ବିପରୀତାର୍ଥକ ବ୍ୟାଖ୍ୟା, ଦ୍ୱନ୍ଦ୍ୱମୂଳକ ଜୀବନ ଦର୍ଶନ ତଥା ସ୍ୱାର୍ଥ ସଂଘର୍ଷମୂଳକ ଯୁଦ୍ଧ ବିଗ୍ରହ ଦେଖାଦେଇ ଆସିଛି ।

ମନୁଷ୍ୟର ମନ ଅନୁସାରେ ଏ ଜଗତ ପ୍ରତୀକ୍ଷୀଭୂତ ହେଉଛି ଏବଂ ତା ସହିତ ମନୁଷ୍ୟ ବାସ୍ତବ ଜଗତର ରୂପକୁ ମଧ୍ୟ ନାନା ଭାବରେ ପରିବର୍ତ୍ତିତ କରିଚାଲିଛି । ଆଦିମ ଯୁଗର ମନୁଷ୍ୟ ଆଗରେ ଏ ଜଗତର ବାସ୍ତବ ତଥା ମାନସିକ ରୂପ ଯେପରି ଥିଲା, ତାହା ପରିବର୍ତ୍ତନଶୀଳ ସମୟ ଭିତରେ ନାନାଭାବରେ ବଦଳି ବଦଳି ଯାଇଛି । ମନୁଷ୍ୟର ଚିନ୍ତନ କ୍ରିୟା ତଥା କୁଶଳୀ କାର୍ଯ୍ୟ କଳାପର କ୍ରମ ବିକାଶ ଅନୁସାରେ ପୃଥିବୀର ରୂପ ମଧ୍ୟ ବଦଳିଯାଇଛି । ଏହା କ୍ରମେ ସରଳାବସ୍ଥାରୁ ଜଟିଳ ଅବସ୍ଥାରେ ପହଞ୍ଚିଛି— ମନୁଷ୍ୟର

ମାନସିକ ପ୍ରକ୍ରିୟା ତଥା ତା'ର ଦୃଷ୍ଟିକୋଣର ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି। ଆମେ ବର୍ତ୍ତମାନ ଏପରି ଅବସ୍ଥାରେ ଆସି ପହଞ୍ଚିଛୁ ଯେ ଆମେ ଏହି ପୃଥିବୀର ଜୀବଜଗତକୁ ଆମର ବୁଦ୍ଧି ବଳରେ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିଦେବାର ଶକ୍ତି ହାସଲ କରିପାରିଛୁ। କିମ୍ବା ଏହି ଶକ୍ତିକୁ ଅନ୍ୟଭାବରେ ପ୍ରୟୋଗ କରି ଆମେ ଏହି ଜଗତକୁ ଆହୁରି ବେଶି ସୁନ୍ଦର ଆକର୍ଷଣୀୟ ଏବଂ ସମସ୍ତ ମନୁଷ୍ୟ ଜାତିର ଉପଭୋଗ୍ୟ ପରିବେଶରେ ପରିଣତ କରିପାରିବା ସାମର୍ଥ୍ୟ ଆମର ହୋଇଛି।

ଯେକୌଣସି ଜିନିଷ କିମ୍ବା ସାମାଜିକ ପରିବେଶ ଆମେ ସୃଷ୍ଟି କରିବାକୁ ଚାହିଁଲେ ପ୍ରଥମେ ଆମ ମନ ଭିତରେ ତାହା ସଂଘଟିତ ହୋଇଥାଏ – ତା'ର ବାସ୍ତବିକ ରୂପରେଖ ଆମର ଚିନ୍ତନ ରାଜ୍ୟରେ ପ୍ରଥମେ କଳ୍ପିତ ହୁଏ। ତାହା କ୍ରମେ ବାସ୍ତବରେ ପରିଣତ ହୁଏ– ଆମର ଇଚ୍ଛା ଶକ୍ତି, ଆଗ୍ରହ ଓ କୁଶଳୀ କାର୍ଯ୍ୟସଂପାଦନା ମାଧମରେ। ସେହିପରି ଏହାକୁ ନଷ୍ଟ କରିବାକୁ ହେଲେ ମଧ ଆମେ ତା'ର ଧ୍ୱଂସର ଯୋଜନା ତିଆରି କରୁ। ପ୍ରତ୍ୟେକ ଯୁଦ୍ଧ ଓ ଦେଶ ଆକ୍ରମଣ ପଛରେ ଏପ୍ରକାର ମାନସିକ ତଥା ବସ୍ତୁନିଷ୍ଠ ଯୋଜନା ତିଆରି କରାଯାଏ। ତେଣୁ ମନୁଷ୍ୟ ଦ୍ୱାରାହିଁ ସମସ୍ତ ଜାଗତିକ ଓ ସାମାଜିକ ପରିବେଶ ସୃଷ୍ଟ ଓ ପରିଚାଳିତ। ତେଣୁ ତା'ର ସୁଖ ଦୁଃଖ, ବ୍ୟର୍ଥତା ବା ସାଫଲ୍ୟ, ସ୍ୱାର୍ଥଗତ ସଂକୀର୍ଣ୍ଣ ପରିବେଶ ପ୍ରଭୃତି ଯାବତୀୟ ବାସ୍ତବିକ ପ୍ରତିଫଳନ ମନୁଷ୍ୟର ମନକୁ ପରିବର୍ତ୍ତିତ କରିଚାଲିଛି। ଏହାଛଡ଼ା ପ୍ରତ୍ୟେକ ମନୁଷ୍ୟଠାରେ ଆଉ ଗୋଟିଏ ନିଜସ୍ୱ ଦୁନିଆ ରହିଛି। ଏହା ହେଉଛି ତା'ର ସୀମାହୀନ ମାନସିକ ପରିବେଶ। ଏହି ପରିବେଶ ବାହାର ପରିସ୍ଥିତି ଉପରେ ନିର୍ଭର କଲେ ମଧ ଏଥିରେ ପ୍ରତ୍ୟେକ ବ୍ୟକ୍ତିର ନିଜସ୍ୱ ଅବଦାନ ରହିଛି ଯାହା ସବୁବେଳେ ବାସ୍ତବିକ ପରିସ୍ଥିତି ଉପରେ ନିର୍ଭର କରେନାହିଁ। ଏହି ମାନସିକ ରାଜ୍ୟ ଉପରେ ହିଁ ତା'ର ସୁଖ ଦୁଃଖ, ସାଫଲ୍ୟ ଓ ବ୍ୟର୍ଥତାଗତ ଅନୁଭୂତି ବହୁତ ବେଶି ନିର୍ଭର କରିଥାଏ।

ସମସ୍ତଙ୍କ ପାଇଁ ଜାଗତିକ ସ୍ଥିତି ସମାନ ହେଲେ ମଧ ପ୍ରତ୍ୟେକ ବ୍ୟକ୍ତି ତା'ର ମାନସ ରାଜ୍ୟରେ ଏପରି ଭାବଧାରା ସୃଷ୍ଟି କରିପାରେ ଯେ ଅନ୍ୟମାନେ ସେହି ପରିସ୍ଥିତିରେ ମ୍ରିୟମାଣ ହୋଇ ଯାଉଥିବାବେଳେ ସେ ଆନନ୍ଦରେ କାଳାତିପାତ କରିପାରେ; ଅନ୍ୟକୁ ଯାହା ଦୁଃଖମୟ ଏବଂ ଯାହା ତା' ମନକୁ ସଦାସର୍ବଦା ବିପନ୍ନ କରି ରଖିଥାଏ, ସେହି ଏକା ପରିସ୍ଥିତିରେ ଆଉ ଜଣେ ନିଜ ପାଇଁ ଆନନ୍ଦ ସୃଷ୍ଟି କରିପାରେ ଯାହା ଦୁଃଖ ବୋଲି ଜଣକୁ ଦେଖାଯାଏ ତାହା ଭିନ୍ନ ଭାବରେ ଆଉ ଜଣକୁ ଦେଖାଯାଏ। ସେଥିରେ ସେ କଦାପି ବିବ୍ରତ ହୁଏ ନାହିଁ। ତେଣୁ ମନ ଉପରେ ଯେତେବେଳେ ଏ ଜଗତ ପ୍ରତିଷ୍ଠିତ ଏହି ପ୍ରତିଷ୍ଠିତ ଜଗତକୁ ନାନା ରଙ୍ଗରେ ରଞ୍ଜିତ କରିବାର ଶକ୍ତି ମଧ ଏ ମନର। ଭାରତୀୟ ମୁନି ଋଷିମାନେ ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ଉପରେ ବେଶି ନଜର ଦେଇଛନ୍ତି; କାରଣ ସବୁ ସୁଖଦୁଃଖ, ଶାନ୍ତି ଅଶାନ୍ତିର ମୂଳ ସ୍ରଷ୍ଟା ତଥା ବିଚାରକ ହେଉଛି ମନୁଷ୍ୟର ମନ। ଜୀବନ ଭିତରେ ଏହି ମନ ହିଁ ବ୍ୟକ୍ତି ପାଇଁ ସ୍ୱର୍ଗସୁଖ ଓ ନାରକୀୟ ଯନ୍ତ୍ରଣା ସୃଷ୍ଟି କରୁଛି। ଏହି ମନ ଉପରେ ହିଁ ଅତିମାନସିକତାର ପରମ ସାର୍ଥକତା ସମ୍ଭବ। ■□■

# ବିବର୍ତ୍ତନ

ଧର୍ମଶାସ୍ତ୍ର ଓ ପୁରାଣରୁ ଆମେ ପଢୁ ଯେ ଏହି ପୃଥିବୀ ତଥା ଜୀବଜନ୍ତୁ ମନୁଷ୍ୟ ପ୍ରଭୃତି ପ୍ରାଣୀଜଗତକୁ ଭଗବାନ ସୃଷ୍ଟି କରିଛନ୍ତି। ସୃଷ୍ଟିର ତାତ୍ପର୍ଯ୍ୟ ହେଉଛି ଯେ ଏସବୁର ଆବିର୍ଭାବ ହେବା ପୂର୍ବରୁ ତା'ର କୌଣସି ପ୍ରକାର ଅସ୍ତିତ୍ୱ ନ ଥିଲା ; କିନ୍ତୁ ଭଗବାନଙ୍କର ଇଚ୍ଛାନୁସାରେ ସମୟର ଅବିଚ୍ଛିନ୍ନ ସ୍ରୋତର ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଏସବୁର ଉତ୍ପତ୍ତି। ଭଗବାନ ଅନ୍ଧକାର ଭିତରେ ହଠାତ୍ ଚାହିଁଲେ ଆଲୋକ ଏବଂ ତତ୍‌କ୍ଷଣାତ୍ ସାରାଜଗତ ଆଲୋକରେ ଉଦ୍ଭାସିତ ହୋଇଉଠିଲା। ଭଗବାନ ଚାହିଁଲେ ଜୀବଜଗତର ସୃଷ୍ଟି, ତା'ପରେ ସୃଷ୍ଟି ହେଲା ଜୀବଜନ୍ତୁ, ମନୁଷ୍ୟ ପ୍ରଭୃତି ସମସ୍ତ ପ୍ରକାର ପ୍ରାଣୀ ଜଗତ। ଥରେ ଏପରିଭାବରେ ସୃଷ୍ଟି ହେଲା ପରେ ଐଶ୍ୱରିକ ନିୟମ ଅନୁସାରେ ସେସବୁ ଚାଲିଲେ ନିଜ ନିଜ ଗନ୍ତବ୍ୟ ପଥରେ।

ଉପରୋକ୍ତ ମତବାଦ ଆଜିକାଲି ଆଉ ଗ୍ରହଣୀୟ ନୁହେଁ। ଏହା ପ୍ରାଚୀନ ଯୁଗର ଭାବୁକମାନଙ୍କର କଳ୍ପନାପ୍ରସୂତ ମତବାଦ ମାତ୍ର। ସେତେବେଳକାର ଅଭିଜ୍ଞତାର ଅପରିପକ୍ୱତା ଓ ଜ୍ଞାନର ସ୍ତର ଦୃଷ୍ଟିରୁ ଏପ୍ରକାର କଳ୍ପନାପ୍ରସୂତ ଦର୍ଶନ ଛଡ଼ା ବାସ୍ତବ ଗବେଷଣା ପ୍ରସୂତ ଓ ସୁପ୍ରତିଷ୍ଠିତ ବୈଜ୍ଞାନିକ ତଥ୍ୟାତଥ୍ୟ ସମ୍ଭବ ନ ଥିଲା। କେତେକ କ୍ଷେତ୍ରରେ ଦାର୍ଶନିକମାନେ ଅନେକ ଉପାଦେୟ ଓ ବହୁ ଚିନ୍ତାପୂର୍ଣ୍ଣ ତଥ୍ୟ ଉପସ୍ଥାପିତ କରିପାରିଥିଲେ ସୁଦ୍ଧା ଓ ସେସବୁ ଆଜିଯାଏଁ ଗ୍ରହଣୀୟ ହୋଇ ଆସୁଥିଲେ ସୁଦ୍ଧା ଆଧୁନିକ ଯୁଗର ବୈଜ୍ଞାନିକ ଗବେଷଣା ପ୍ରଣାଳୀ ଓ ବିଭିନ୍ନ ସୂକ୍ଷ୍ମ ଯନ୍ତ୍ର ସାହାଯ୍ୟରେ ଯେପରିଭାବରେ ଜ୍ଞାନର ସୀମା ଅତି ଦ୍ରୁତଗତିରେ ବିସ୍ତାରିତ ହେବାରେ ଲାଗିଛି ଏବଂ ପ୍ରକୃତିର ଅତି ଅଦ୍ଭୁତ ଓ ନିଗୂଢ଼ ରହସ୍ୟ ସବୁ କ୍ରମେ କ୍ରମେ ଉଦ୍‌ଘାଟିତ ହେବାରେ ଲାଗିଛି ତାହା ସେତେବେଳେ ସମ୍ଭବ ହୋଇପାରି ନ ଥିଲା। ମନୁଷ୍ୟର ପାରିପାର୍ଶ୍ୱିକ ଅବସ୍ଥା ଓ ପ୍ରାକୃତିକ ଶକ୍ତି ସମୂହକୁ ନିଜ ଇଚ୍ଛା ଅନୁସାରେ ନିୟନ୍ତ୍ରଣ କରିବାର ଦକ୍ଷତା ବଢ଼ିବା ସଙ୍ଗେ ସଙ୍ଗେ କୃତ୍ରିମ ଯନ୍ତ୍ରପାତି ତିଆରି କରି ନିଜର ଅତି ସୀମାବଦ୍ଧ ବିଭିନ୍ନ ଇନ୍ଦ୍ରିୟର କାର୍ଯ୍ୟକାରୀ ଶକ୍ତିକୁ ବହୁପରିମାଣରେ ବୃଦ୍ଧି କରିବାରେ ସମର୍ଥ ହୋଇପାରିଥିବାରୁ ତା'ପକ୍ଷରେ ଏ ପ୍ରକାର ଜ୍ଞାନ ସମ୍ଭବ ହୋଇପାରିଛି। ତେଣୁ ବିଜ୍ଞାନର ରହସ୍ୟ ଭେଦକାରୀ ସୂକ୍ଷ୍ମ ଜ୍ଞାନଚକ୍ଷୁରେ ଆମ୍ଭେମାନେ ପୃଥିବୀ ଓ ଜୀବଜଗତର ଉତ୍ପତ୍ତି, ସାମାଜିକ ଜୀବନର କ୍ରମବିକାଶ, ମନୁଷ୍ୟର ସଂସ୍କୃତି ଓ ସଭ୍ୟତାର କ୍ରମୋନ୍ନତି, ଧର୍ମନୀତି, ରାଜନୀତି ଓ ଇତିହାସର କ୍ରମାଭିବ୍ୟକ୍ତି ପ୍ରଭୃତି ବହୁ ଜଟିଳ ସମସ୍ୟାକୁ ବିଭିନ୍ନ ଦୃଷ୍ଟିକୋଣରୁ ସମାଧାନ କରିବା ପାଇଁ ଚେଷ୍ଟା କରୁଛୁ।

ବୈଜ୍ଞାନିକଙ୍କ ମତରେ ମନୁଷ୍ୟ ଓ ସମସ୍ତ ଜୀବଜଗତ—ଆମର ଏ ପୃଥିବୀ ତଥା ସାରା ବିଶ୍ୱବ୍ରହ୍ମାଣ୍ଡ—ବର୍ତ୍ତମାନ ଯେ ଅବସ୍ଥାରେ ଅଛି ଦିନେ ଏପରି ନ ଥିଲା। କଳ୍ପନାତୀତ ଅତୀତ ଯୁଗର ସମଗ୍ର ଭୌତିକ, ଜୈବିକ ତଥା ମାନସିକ ଅବସ୍ଥିତି ଅତି ସରଳ ଅବସ୍ଥାରୁ ଜଟିଳ, ଜଟିଳତର, ଜଟିଳତମ ଅବସ୍ଥା ଓ ଆକାର ଭିତର ଦେଇ ବର୍ତ୍ତମାନ ଅବସ୍ଥାରେ ଆସି ପହଞ୍ଚିଛି। ପ୍ରତ୍ୟେକ ବସ୍ତୁର ପରିବର୍ତ୍ତନ ପ୍ରତିମୁହୂର୍ତ୍ତରେ ଲାଗିରହିଛି ଏବଂ ଏ ପ୍ରକାର କ୍ରମବିବର୍ତ୍ତନ ଲକ୍ଷ କୋଟି ଯୁଗଧରି ସମୟର ଫେନାୟିତ ସ୍ରୋତ ବକ୍ଷରେ ବିକଶିତ ହୋଇ

ଆସୁଅଛି । ଏହି ସରଳ କିମ୍ବା ଜଟିଳ ଅବସ୍ଥା ଯେଉଁ ମୁହୂର୍ତ୍ତରେ ଯେପରି ଆକାରରେ ଥାଉନା କାହିଁକି ସେହି ଏକ ଆଦିମ ଜଡ଼ବସ୍ତୁର ରୂପାନ୍ତର ମାତ୍ର । ଦେଶ ଓ କାଳ ନେଇ ମୌଳିକ ବସ୍ତୁରେ ବିଭିନ୍ନ ରୂପ ପ୍ରକାଶ ପାଇଲେ ସୁଦ୍ଧା ତା'ର ମୂଳ ଉପାଦାନ ହେଉଛି ସେହି ଏକ ଆଦିମ ଅଚେତନ ଜଡ଼ବସ୍ତୁ ।

ଦିନ ଥିଲା ଯେତେବେଳେ ଆମର ସୂର୍ଯ୍ୟ ଏହି ଅବସ୍ଥାରେ ନ ଥିଲା, ତା'ପରେ କ୍ରମେ ସୂର୍ଯ୍ୟର ନିର୍ଦ୍ଦିଷ୍ଟ ରୂପ ପ୍ରକାଶ ପାଇଲା—ତା'ପରେ ନିର୍ଦ୍ଦିଷ୍ଟ ଭୌତିକ ନିୟମ ଅନୁଯାୟୀ ଆମର ଏହି ପୃଥିବୀ ଓ ଅନ୍ୟାନ୍ୟ ଗ୍ରହସବୁ ସୂର୍ଯ୍ୟ ଦେହରୁ ବିକ୍ଷିପ୍ତ ହୋଇ ବସ୍ତୁର ମାଧ୍ୟାକର୍ଷଣ ଶକ୍ତି ବଳରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବୁଲିବାକୁ ଆରମ୍ଭ କଲେ । ପୃଥିବୀ ପ୍ରଭୃତି ସୂର୍ଯ୍ୟର ଅତି ଉତ୍ତପ୍ତ ତରଳ ପଦାର୍ଥର ଅଂଶବିଶେଷ ହୋଇଥିବାରୁ ଲକ୍ଷ ଲକ୍ଷ ବର୍ଷ ଲାଗିଗଲା ଥଣ୍ଡା ହୋଇ ଘନତ୍ୱ ପ୍ରାପ୍ତ ହେବାପାଇଁ– ବର୍ତ୍ତମାନ ସୁଦ୍ଧା ଆଉ କେତେକ ଗ୍ରହ ସୂର୍ଯ୍ୟଠାରୁ ଦୂରତ୍ୱ ଓ ନିଜର ଆକାର ଯୋଗୁଁ ସେହିପରି ଉତ୍ତପ୍ତ ଅବସ୍ଥାରେ ରହିଛି—ଆଉ କେତେକ ଗ୍ରହ ଓ ଉପଗ୍ରହ ଖୁବ୍ ଛୋଟ ହୋଇଥିବାରୁ ଓ କେତେକ ସୂର୍ଯ୍ୟଠାରୁ ବହୁତ ଦୂରରେ ରହିଥିବାରୁ ଅନେକ ଦିନରୁ ଥଣ୍ଡା ହୋଇ ସାରିଲେଣି । ଆମ ପୃଥିବୀ ମଧ୍ୟ କ୍ରମେ କ୍ରମେ ଅଧିକ ଶୀତଳ ହୋଇଯାଉଛି ଏବଂ ଅନେକ କୋଟି ବର୍ଷ ପରେ ଏପରି ସମୟ ଆସିବ ଯେତେବେଳେ କି ଏହା ମଧ୍ୟ ଚନ୍ଦ୍ରପରି ତୁଷାରାବୃତ ହୋଇଯିବ ଏବଂ ସେତେବେଳେ କୌଣସି ଜୀବଜନ୍ତୁଙ୍କର ଉପସ୍ଥିତି ଆଉ ସମ୍ଭବ ହୋଇପାରିବ ନାହିଁ ।

ଆମ ପୃଥିବୀର ଇତିହାସରୁ ଜଣାଯାଏ ଯେ ପ୍ରଥମେ ଏଠାରେ ଜଳୀୟ ଅଂଶ କମ୍ ଥିବାରୁ କୌଣସି ପ୍ରକାର ଜୀବଜନ୍ତୁଙ୍କର ଆବିର୍ଭାବ ସମ୍ଭବପର ହୋଇ ନଥିଲା । କାଳକ୍ରମେ ବର୍ଷା ହୋଇ ପୃଥିବୀ ଶୀତଳ ହେଲା ପରେ ଓ ନଦୀ ନାଳ ସମୁଦ୍ର ଦେଖାଦେଲା ପରେ ପାଣିରେ ଜଡ଼ବସ୍ତୁର ମୂଳ ଉପାଦାନ ବିଭିନ୍ନ ଆଣବିକ ଓ ପାରମାଣବିକ ସମ୍ମିଳନରେ ଆଦିଜୀବନ ଅତି ସରଳଭାବରେ ବିକଶିତ ହେଲା । ଏହି ଜୀବକୋଷର ଉତ୍ପତ୍ତି ପୃଥିବୀ ଇତିହାସରେ କେଉଁ ନିର୍ଦ୍ଦିଷ୍ଟ ପୃଷ୍ଠାରେ ଦେଖିବାକୁ ମିଳିବ ତା କହିବା ସହଜ ନୁହେଁ । ଏହି ସରଳ ଜୀବକୋଷକୁ କୃତ୍ରିମ ଉପାୟରେ ଗବେଷଣାଗାରରେ ଆଜିଯାଏଁ ପ୍ରସ୍ତୁତ ନ କରି ପାରିଲେ ସୁଦ୍ଧା ଏହାର ରାସାୟନିକ ଉପାଦାନ ଓ କ୍ରିୟା ପ୍ରକ୍ରିୟା ବିଷୟରେ ଖୁବ୍ ଗୋଟିଏ ରହସ୍ୟମୟ ଜଟିଳତା ଅଛି ବୋଲି ମନେ ହୁଏନା । କେତେଗୁଡ଼ିଏ ଆଣବିକ ଓ ପାରମାଣବିକ ଉପାଦାନର ରାସାୟନିକ ସଂସ୍ଥିତି ଫଳରେ ଗୋଟିଏ ନୂତନ ପ୍ରକାର ଶକ୍ତିର ଉଦ୍ଭବ ହୋଇଥିଲା ଏବଂ ଏହି ଶକ୍ତିବିଶେଷର କେତେଗୁଡ଼ିଏ ନୂତନ ଧରଣର କ୍ରିୟା ପ୍ରକ୍ରିୟା ଦେଖାଦେଲା ଯାହାକି ପୃଥିବୀଭୂତ ବିଭିନ୍ନ ଉପାଦାନମାନଙ୍କଠାରେ ନାହିଁ । ନିଜର ଅସ୍ତିତ୍ୱ ବଜାୟ ରଖିବାପାଇଁ ଏହା ବାହ୍ୟଜଗତରୁ ଉପାଦାନ ସଂଗ୍ରହକରି ନିଜଦ୍ୱାରେ ପରିଣତ କରିପାରେ ଏବଂ ନିଜ ଶରୀରକୁ ଭାଗ ଭାଗ କରି କାଳକ୍ରମେ ତା'ର ସଂଖ୍ୟା ବହୁପରିମାଣରେ ବଢାଇ ଦେଇପାରେ । କ୍ରମେ କ୍ରମେ ଏହି ଅତି ସରଳ ଆଦିମ ଜୀବକୋଷ ପାରିପାର୍ଶ୍ୱିକ ଅବସ୍ଥାନୁଯାୟୀ ନିଜକୁ ଗଢିବାରେ ଲାଗିଲା ଏବଂ ଏକକୋଷବିଶିଷ୍ଟ ଜୀବ ବହୁକୋଷ ବିଶିଷ୍ଟ ଜଟିଳ ଜୀବରେ ପରିଣତ ହେଲା । ଫଳରେ ଇତିହାସ ପୃଷ୍ଠା କୋଟି କୋଟି ନୂତନ ଧରଣର ଜୀବଜନ୍ତୁଙ୍କର ପାଦଚିହ୍ନରେ ପୂରି ଉଠିଲା । ଜଳଭାଗ ଏପରିଭାବରେ ନାନା

ଜୀବରେ ପରିପୂର୍ଣ୍ଣ ହୋଇ ଉଠିଲା ଏବଂ କ୍ରମେ ଏଥିମଧ୍ୟରୁ କେତେକ ସ୍ଥଳଭାଗ ଆବିଷ୍କାରରେ ବାହାରି ପଡ଼ିଲେ ଓ ସ୍ଥଳଭାଗର ପାରିପାର୍ଶ୍ୱିକ ଅବସ୍ଥିତି ସହିତ ନିଜକୁ ପ୍ରୟୋଜନାନୁରୂପ ପରିବର୍ତ୍ତିତ କରି ପ୍ରଥମେ ପ୍ରଥମେ ଉଭୟଚର ଏବଂ କାଳକ୍ରମେ ସ୍ଥଳଚର ଜୀବ ପୃଥିବୀ ପୃଷ୍ଠରେ ବିଜୟୀ ସେନାନୀରୂପେ ବିଚରଣ କଲେ। ବିଭିନ୍ନ ଭୌଗୋଳିକ ପରିସ୍ଥିତି ଓ ଜଳବାୟୁ ସହିତ ଖାପଖୁଆଇ ନାନାପ୍ରକାର ବୃକ୍ଷଲତା ଓ ଜୀବଜନ୍ତୁ ଜଟିଳରୁ ଜଟିଳତର ରୂପରେ ଦେଖାଦେଲେ। ବିଭିନ୍ନ ସମୟର ଭିନ୍ନ ଭିନ୍ନ ପ୍ରାଣୀର କଙ୍କାଳ ଓ ପ୍ରସ୍ତରୀଭୂତ ଜୀବାଶ୍ମ (fossil) ମୃତ୍ତିକାର ସ୍ତରେ ସ୍ତରେ ଦେଖିବାକୁ ମିଳେ। ଆଧୁନିକ ବୈଜ୍ଞାନିକ ଗବେଷଣା ଓ ସୂକ୍ଷ୍ମଯନ୍ତ୍ର ସାହାଯ୍ୟରେ ଏ ସବୁର ଗଠନ ସମୟ, ଧାରାବାହିକ ଇତିହାସ ଓ ପାରସ୍ପରିକ ସଂପର୍କ ପ୍ରଭୃତି ବିଷୟରେ ବହୁ ନୂତନ ତଥ୍ୟ କ୍ରମେ କ୍ରମେ ପ୍ରକାଶ ପାଉଛି। ତେଣୁ ପୃଥିବୀର ବହୁ ପୁରାତନ ଇତିବୃତ୍ତି ମୃତ୍ତିକାର ପ୍ରତ୍ୟେକ ସ୍ତରରେ ଲେଖା ହୋଇ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ।

କାଳର ଅଗ୍ରଗାମୀ ସ୍ରୋତସ୍ୱତୀର ଫେନାୟିତ ବକ୍ଷର ଅଗଣିତ ମୁହୂର୍ତ୍ତଗୁଡ଼ିକରେ କେତେ କୋଟି ଜୀବର ଯେ ଉଦ୍ଭବ ଓ ବିଲୟ ହୋଇଛି, ତା'ର କଳ୍ପନା ସମ୍ଭବ ନୁହେଁ, ତେବେ ଏ ସବୁ ବୃକ୍ଷଲତା ଜୀବଜନ୍ତୁଙ୍କ ଭିତରେ ଗୋଟିଏ ଧାରାବାହିକ କ୍ରମୋନ୍ନତି ପରିଲକ୍ଷିତ ହୁଏ। ଅତି ସରଳ ଜଳଚର ଜୀବ ପରେ ପରେ ମେରୁଦଣ୍ଡବିଶିଷ୍ଟ ଜୀବଜନ୍ତୁ ଜଳ ଓ ସ୍ଥଳରେ ଦେଖାଗଲେ। କେତେକ ମାଛ, ସରୀସୃପ, ପକ୍ଷୀ ପ୍ରଭୃତି ଜାତୀୟ ଜୀବ ଏହି ଶ୍ରେଣୀଭୁକ୍ତ। ତା'ପରେ ଦେଖାଗଲା ସ୍ତନ୍ୟପାୟୀ ଜୀବଗଣ ଏବଂ ଏହି ଶ୍ରେଣୀର ପ୍ରାଣୀଙ୍କ ଭିତରୁ ଗରିଲା, ଚିଂପାଞ୍ଜି, ଗିବନ୍, ଓରାଂଗ୍ ଅନ୍ୟାନ୍ୟ ସ୍ତନ୍ୟପାୟୀ ଜନ୍ତୁଙ୍କଠାରୁ ବୁଦ୍ଧିମାନ। ଏମାନେ ଫଳମୂଳାହାରୀ ଓ ଗଛ ଉପରେ କିମ୍ବା ଗୁମ୍ଫାରେ ବାସ କରନ୍ତି। ଏମାନଙ୍କର ମସ୍ତିଷ ଆକାରରେ ବଡ଼ ଏବଂ ଏମାନେ ଖୁବ୍ କ୍ଷିପ୍ର ଗତିରେ ଗଛ ଉପରେ ବିଚରଣ କରିପାରନ୍ତି।

ଏମାନଙ୍କ ସହିତ ମଣିଷର ବହୁତ ସାମଞ୍ଜସ୍ୟ ଅଛି। ମନୁଷ୍ୟର ପ୍ରାୟ ସବୁପ୍ରକାରର ମାଂସପେଶୀ, ଅସ୍ଥି, ଶିରା ପ୍ରଶିରା ପ୍ରଭୃତି ଏମାନଙ୍କଠାରେ ଦେଖିବାକୁ ମିଳେ। ମନୁଷ୍ୟର ଆକାର ଏମାନଙ୍କଠାରୁ ଅଲଗା–ମନୁଷ୍ୟ ପଛ ଗୋଡ଼ରେ ଠିଆହୋଇ ଆଗଗୋଡ଼କୁ ହାତରୂପେ ବ୍ୟବହାର କରିପାରେ ଏବଂ ଏହାର ମେରୁଦଣ୍ଡ ସିଧାଭାବରେ ମୁଣ୍ଡକୁ ଟେକି ରଖିଛି; ବେକ ଲମ୍ବା, ତେଣୁ ଇଚ୍ଛାନୁସାରେ ଏପାଖ ସେପାଖ ବୁଲାଇପାରେ ଇତ୍ୟାଦି। କିନ୍ତୁ ସବୁଠୁ ବଡ଼ ତଫାତ୍ ହେଉଛି ମନୁଷ୍ୟ ମସ୍ତିଷର ଆକାର ଓ ଆପେକ୍ଷିକ ପରିମାଣ। ହାତ ଦୁଇଟି ମୁକ୍ତ ଓ ବୁଦ୍ଧି ବେଶି ଥିବାରୁ ଅନ୍ୟାନ୍ୟ ଜନ୍ତୁଙ୍କଠାରୁ ମନୁଷ୍ୟ ବହୁଗୁଣରେ ଶକ୍ତିଶାଳୀ ହୋଇ ପାରିଛି। ଅବଶ୍ୟ ଗିବନ୍, ଚିଂପାଞ୍ଜି ପ୍ରଭୃତିଙ୍କଠାରୁ ଆମ ପରି ମନୁଷ୍ୟର ଉଦ୍ଭବ ହଠାତ୍ ହୋଇନାହିଁ। ଏ ଦୁଇ ଶ୍ରେଣୀ ଭିତରେ ଆହୁରି ଅନେକ ପ୍ରକାର ପ୍ରାଣୀ ଦେଖାଯାଇଥିଲେ, ଯେଉଁମାନେ କି ମର୍କଟ ଜାତୀୟ ନୁହନ୍ତି କି ପୂରାପୂରି ଆଧୁନିକ ମନୁଷ୍ୟ ପରି ନୁହନ୍ତି। ଏପରି ଅର୍ଦ୍ଧମନୁଷ୍ୟ ଜାତୀୟ ପ୍ରାଣୀର କଙ୍କାଳ ଆଫ୍ରିକା, ପେକିଂ, ଜାଭା ପ୍ରଭୃତି ଦେଶରୁ ମିଳିଛି ଏବଂ ଏସବୁ ପ୍ରକାରର କଙ୍କାଳ ଓ ଜୀବାଶ୍ମ ପାଇବା ପାଇଁ ଆହୁରି ଚେଷ୍ଟା ଚାଲିଛି। ବଣ ମଣିଷର ପ୍ରଥମ ଆବିର୍ଭାବ ଏସିଆ, ଦକ୍ଷିଣ-ପୂର୍ବ ଏସିଆ ଓ ଆଫ୍ରିକାରେ ପ୍ରାୟ ତିନି ଲକ୍ଷଠୁ ପାଞ୍ଚ ଲକ୍ଷ ବର୍ଷ ତଳେ ହୋଇଥିଲା ବୋଲି କେତେକ ନୃତତ୍ତ୍ୱବିତ୍‌ମାନେ

ବିଶ୍ୱାସ କରନ୍ତି । ଆଉ କେତେକଙ୍କ ମତରେ ଏହା ଦଶଲକ୍ଷ ବର୍ଷ ପୂର୍ବେ ହୋଇଥିଲା ଏବଂ ଆଫ୍ରିକା ହିଁ ଏ ପ୍ରକାର ଆଦି ମଣିଷର ପ୍ରଥମ ଜନ୍ମଦାତା । ତେବେ ଯେତେ ଲକ୍ଷ ବର୍ଷ ପୂର୍ବେ ହେଉନା କାହିଁକି ମନୁଷ୍ୟ ଯେ କ୍ରମ-ବିବର୍ତ୍ତନର ବିଭିନ୍ନ ସୋପାନ ଦେଇ ଦେଇ ଏହି ଅବସ୍ଥାରେ ଆସି ପହଞ୍ଚିଛି– ଏଥିରେ କାହାରି ସନ୍ଦେହ ନାହିଁ ।

କେହି ଜଣେ ହେଲେ ବୈଜ୍ଞାନିକ ସନ୍ଦେହ କରନ୍ତି ନାହିଁ ଯେ ଏହି ପୃଥିବୀ ଇତିହାସରେ ଲକ୍ଷ ଲକ୍ଷ ବର୍ଷ ବିତିଯାଇଛି ଯେତେବେଳେ କି ଏଠାରେ କୌଣସି ଜୀବଜନ୍ତୁଙ୍କର ସତ୍ତା ସୁଦ୍ଧା ନ ଥିଲା ଏବଂ ଆହୁରି କେତେ ଲକ୍ଷ ବର୍ଷ ବିତିଯାଇଛି ଯେତେବେଳେ କି କେତେକ ନିମ୍ନଶ୍ରେଣୀୟ ଜୀବଜନ୍ତୁ ଓ ଅତିକାୟ ସରୀସୃପ ଜାତୀୟ ପଶୁ ହିଁ ଏହି ପୃଥିବୀ ପୃଷ୍ଠରେ ବିଚରଣ କରୁଥିଲେ ଏବଂ ସେତେବେଳେ ମନୁଷ୍ୟର ଚିହ୍ନବର୍ଣ୍ଣ ସୁଦ୍ଧା ନ ଥିଲା ; ତା' ପରେ ମାତ୍ର ୪-୫ ଲକ୍ଷ ବର୍ଷ ତଳେ ମନୁଷ୍ୟ ଜାତୀୟ ବଣମଣିଷ କ୍ରମେ କ୍ରମେ ଏଠାରେ ଦେଖାଯାଇଥିଲେ । ତେଣୁ କ୍ରମ ବିବର୍ତ୍ତନ ମତବାଦ ଯେ ଏକାବେଳକେ ଠିକ୍ ଏଥିରେ କାହାରି ସୁଦ୍ଧା ସନ୍ଦେହ ନାହିଁ । ବିବର୍ତ୍ତନର ରୂପ, ପ୍ରଣାଳୀ ଏହାର ନିୟମନ ଓ ନାନା ତଥ୍ୟ ବିଷୟରେ ଭିନ୍ନ ଭିନ୍ନ ମତାମତ ଦେଖାଯାଏ ; କିନ୍ତୁ ଜୀବନର କ୍ରମବିକାଶ ଓ ଧାରାବାହିକ କ୍ରମୋନ୍ମୀଳନ ବିଷୟରେ ବୈଜ୍ଞାନିକମାନଙ୍କ ଭିତରେ ବିଶେଷ ମତଦ୍ୱୈଧ ନାହିଁ କହିଲେ ଚଳେ ।

ମନୁଷ୍ୟ ବଣମଣିଷ ଅବସ୍ଥାରେ ହିଁ ଲକ୍ଷାଧିକ ବର୍ଷ ରହିଥିବାର ଜଣାଯାଏ– ସେତେବେଳେ ତା'ର ଜୀବନ ଯାପନ ପ୍ରଣାଳୀ ଓ ସଭ୍ୟତା ବଡ଼ ସରଳ ଥିଲା । ଏମାନେ ଗୁମ୍ଫାରେ ରହୁଥିଲେ କିମ୍ବା ଗଛଡାଳ ଭାଙ୍ଗି ଘର କରୁଥିଲେ । ପଥରର ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଶିକାର କରି ବଞ୍ଚୁଥିଲେ– ଫଳମୂଳ ଆହରଣ ଏମାନଙ୍କର ଆଉ ଗୋଟିଏ ପ୍ରଧାନ ଜୀବିକା ଥିଲା । ଏହି ଆଦିମ ସଭ୍ୟତାକୁ ପ୍ରାଚୀନ ପ୍ରସ୍ତର ଯୁଗ ସଭ୍ୟତା ବୋଲି ଅଭିହିତ କରା ହୋଇଛି । ତା'ପରେ ଦେଖାଦେଲା ନୂତନ ପ୍ରସ୍ତର ଯୁଗ– ଯେଉଁ ଯୁଗରେ ମନୁଷ୍ୟମାନେ ଆହୁରି ବେଶି ରକମର ପଥରର ସୂକ୍ଷ୍ମ ଅସ୍ତ୍ରଶସ୍ତ୍ର ବ୍ୟବହାର ଓ ବନ୍ୟଜନ୍ତୁଙ୍କୁ ପୋଷା ମନାଇ ନିଜ କାମରେ ବ୍ୟବହାର କରିବାକୁ ଶିଖିଲେ । ଏହି ଯୁଗରେ ସାରା ପୃଥିବୀ ପୃଷ୍ଠରେ ଏମାନଙ୍କ ସଂଖ୍ୟା ବହୁତ କମ୍ ଥିବାର ଜଣାଯାଏ । କୋଡ଼ିଏ ହଜାର ବର୍ଷ ପୂର୍ବପର୍ଯ୍ୟନ୍ତ ଏହି ନୂତନ ପ୍ରସ୍ତର ଯୁଗ ଦେଖାଯାଏ–ଅର୍ଥାତ୍ ୩।୪ ଲକ୍ଷ ବର୍ଷକାଳ ମଣିଷ ସେହି ଆଦିମ ପ୍ରାଚୀନ ପ୍ରସ୍ତର ଯୁଗରେ ରହିଥିଲା ଏବଂ ତା'ର ଜୀବନ ଯାପନ ପ୍ରଣାଳୀ ବଡ଼ ସରଳ ଓ ସଭ୍ୟତା ଅତ୍ୟନ୍ତ ଅସଂସ୍କୃତ ଥିଲା । କ୍ରମେ କ୍ରମେ ମନୁଷ୍ୟ ତାମ୍ର ଓ ପିତଳର ଅସ୍ତ୍ରଶସ୍ତ୍ର ବ୍ୟବହାର କରି ଶିଖିଲା–ବିଭିନ୍ନ ପ୍ରକାରର ମାଟି, ତାମ୍ର ଓ ପିତଳର ପାତ୍ର ତିଆରି କରିପାରିଲା । କ୍ରମେ ଚାଷ କରି ଶିଖିଲା–ବଳଦ, ମେଣ୍ଢା, ଘୋଡ଼ା ପ୍ରଭୃତି ଗୃହପାଳିତ ଜନ୍ତୁଙ୍କ ସାହାଯ୍ୟରେ ନିଜର କାମ ହାସଲ କଲା–ଯନ୍ତ୍ରପାତି ତିଆରି କରିପାରିଲା–ଫଳରେ ଲୋକଙ୍କର ସୁଖ ସମୃଦ୍ଧି ବଢ଼ିଉଠିଲା ; ସହର ଦେଖାଦେଲା ଓ ତା' ସଙ୍ଗେ ସଙ୍ଗେ ରାଜ୍ୟ ବିସ୍ତାର କରିବାର ପ୍ରବୃତ୍ତି ମଧ୍ୟ ଦେଖାଦେଲା । ଅତି ପ୍ରାଚୀନ ଯୁଗର ସୁମେରିୟାନ୍, ଇଜିପ୍ସିୟାନ୍ ହରପ୍ପା, ମହେଞ୍ଜୋଦାର ପ୍ରଭୃତି ସଭ୍ୟତାର ମୂଳଦୁଆ ପଡ଼ିଲା–ତା'ପରେ କେତେ ପ୍ରକାରର ସଭ୍ୟତା ଓ କେତେ ବଡ଼ ବଡ଼ ବିରାଟ ସାମ୍ରାଜ୍ୟ ଇତିବୃତ୍ତି ଇତିହାସର ଲିଖିତ ପୃଷ୍ଠାରୁ ଦେଖିବାକୁ ମିଳେ । କ୍ରମେ ଲୌହଯୁଗ ଓ ଯନ୍ତ୍ରଯୁଗର ସୃଷ୍ଟିପାତ ହେଲା ଏବଂ

ପ୍ରକୃତିର ବିଭିନ୍ନ ଶକ୍ତିକୁ ମନୁଷ୍ୟ ନିଜର କରାୟତ୍ତ କରି ଦିନୁଁଦିନ ବଳୀୟାନ ହୋଇ ଉଠିଲା ଏବଂ ସଭ୍ୟତାର ବହୁ ଉଚ୍ଚରେ ଆସି ପହଞ୍ଚି ପାରିଲା ।

ଆଧୁନିକ ଯୁଗର ସଭ୍ୟତା ଗତ ୫ ଲକ୍ଷ ବର୍ଷର ମନୁଷ୍ୟ ସଭ୍ୟତାର କ୍ରମବିକାଶର ଫଳ ; କିନ୍ତୁ ମନୁଷ୍ୟ ଲକ୍ଷ ଲକ୍ଷ ବର୍ଷଧରି ଯେଉଁ ଉନ୍ନତି କରିପାରିନଥିଲା, ଗତ ଦୁଇଶହ ବର୍ଷ ଭିତରେ ତା'ଠୁ ବହୁଗୁଣରେ ଆଗେଇ ଯାଇଛି ଏବଂ ଏହାଠୁ ଆହୁରି କ୍ଷିପ୍ର ଗତିରେ ଆଗାମୀ କେତେ ବର୍ଷ ଭିତରେ ମନୁଷ୍ୟ ଆଗକୁ ଅଗ୍ରସର ହେବାର ସମ୍ଭାବନା ରହିଛି । ତା'ର କାରଣ ହେଉଛି ଏହି କେତେ ଶହ ବର୍ଷ ଭିତରେ ମନୁଷ୍ୟ ବିଜ୍ଞାନ ବଳରେ ନିଜର କ୍ଷମତା ଓ ପ୍ରାକୃତିକ ଶକ୍ତିର ସନ୍ଧାନ ଯେପରିଭାବରେ ପାଇଛି, ତଦ୍ଦ୍ୱାରା ତା'ର ଚେତନାଶକ୍ତି ମଧ ବହୁପରିମାଣରେ ବୃଦ୍ଧି ପାଇଛି । ପୂର୍ବେ ମନୁଷ୍ୟ ତା'ର ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବରୁ ନିଜକୁ ପୂରାପୂରି ମୁକ୍ତ କରିପାରୁ ନ ଥିଲା ବରଂ ବିଭିନ୍ନ ଅବସ୍ଥା ଅନୁସାରେ ହିଁ ତାକୁ ଚଳିବାକୁ ପଡୁଥିଲା ; କିନ୍ତୁ ବର୍ତ୍ତମାନ ଏହିସବୁ ଅବସ୍ଥାକୁ ନିଜ ଇଚ୍ଛାନୁସାରେ ବଦଳାଇ ପାରିବାର କ୍ଷମତା ତା'ର ଆସିଛି ଏବଂ ଏ ବିଷୟରେ ସେ ଯଥେଷ୍ଟ ସଚେତ ହୋଇ ଉଠିଛି । ତେଣୁ ମନୁଷ୍ୟ ବର୍ତ୍ତମାନ ଜୀବଜଗତର ବିବର୍ତ୍ତନ ଅନେକଟା ନିଜ ଇଚ୍ଛାନୁସାରେ ନିୟନ୍ତ୍ରିତ କରିପାରେ । ମନୁଷ୍ୟ ଇଚ୍ଛା କଲେ ତାର ସଂଖ୍ୟା ବଢ଼ାଇ ଦେଇପାରେ କିମ୍ବା କମାଇ ଦେଇପାରେ ଏବଂ ନାନା ଉପାୟରେ ପ୍ରାକୃତିକ କ୍ରମବିକାଶକୁ କ୍ଷିପ୍ରତର କରିଦେଇପାରେ କିମ୍ବା ତା'ର ଧାରା ବହୁପରିମାଣରେ ନୂତନ ରାସ୍ତାରେ ପରିଚାଳିତ କରିପାରେ । ଏହା ମାନବ ସଭ୍ୟତାର ସର୍ବଶ୍ରେଷ୍ଠ କୃତିତ୍ୱ କହିଲେ ଚଳେ ।

ବହୁ ଆଗରୁ ଏହି ବିବର୍ତ୍ତନ ମତବାଦର ସୂଚନା ଅନେକ ଦାର୍ଶନିକ ବୈଜ୍ଞାନିକ ଦେଇଥିଲେ ସୁଦ୍ଧା ବ୍ରିଟିଶ୍ ବୈଜ୍ଞାନିକ ଡାରଉଇନ୍ ଏହାକୁ ଉପଯୁକ୍ତ ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କରି ସୁସଙ୍ଗତ ଓ ସୁଶୃଙ୍ଖଳିତ ପଦ୍ଧତି ଆକାରରେ ଉପସ୍ଥାପିତ କରିଥିଲେ । ସେହିଦିନଠାରୁ ଏ ବିଷୟରେ ବହୁ ଗବେଷଣା ହୋଇଯାଇଛି– ଅନେକ ମୂଳ ତଥ୍ୟ ବଦଳିଯାଇଛି– କେତେପ୍ରକାର ନୂତନ ତଥ୍ୟ ପ୍ରକାଶ ପାଇଛି– କିନ୍ତୁ ଡାରଉଇନ୍ଙ୍କ ତଥ୍ୟ ଜ୍ଞାନ ଜଗତରେ ଯେ ଗୋଟିଏ ବିପ୍ଳବ ସୃଷ୍ଟି କରିଛି, ଏଥିରେ ସନ୍ଦେହ ନାହିଁ । ପ୍ରଥମେ ପ୍ରଥମେ ଅନେକ ଧର୍ମପ୍ରାଣ ଲୋକେ ଏହାକୁ ବିଶ୍ୱାସ କଲେନାହିଁ । ଆଜିଯାଏଁ ସୁଦ୍ଧା ଇଟାଲୀୟ ଖ୍ରୀଷ୍ଟିଆନ ଧର୍ମଯାଜକ ପୋପ୍ ଏହାକୁ ନାସ୍ତିକମାନଙ୍କର ମତବାଦ ବୋଲି କହନ୍ତି । କାରଣ ଭଗବାନଙ୍କର ସୃଷ୍ଟି ପ୍ରକ୍ରିୟାକୁ ଯେପରିଭାବରେ ବ୍ୟାଖ୍ୟା କଲେ, ତାଙ୍କର ପ୍ରତିଷ୍ଠା କରି ହେଉଥିଲା ଏବଂ ମଣିଷକୁ ସର୍ବଶ୍ରେଷ୍ଠ ଆସନ ମିଳୁଥିଲା– ଏହାଦ୍ୱାରା ସେଥିରେ ବାଧା ପହଞ୍ଚିଲା । ମନୁଷ୍ୟ ଭଗବାନଙ୍କର ପ୍ରଥମ ଓ ଶ୍ରେଷ୍ଠ ସୃଷ୍ଟି ନ ହୋଇ ସାମାନ୍ୟ କେତେ ଲକ୍ଷ ବର୍ଷ ହେଲା ବିରାଟ ବିବର୍ତ୍ତନର ଗୋଟିଏ କ୍ଷୁଦ୍ର ସ୍ଥାନ ମାତ୍ର ଅଧିକାର କରି ରହିଛି । ଏଥିଲାଗି ସେମାନେ ଏହାକୁ ପସନ୍ଦ କରନ୍ତି ନାହିଁ ; କିନ୍ତୁ ପ୍ରକୃତ ଘଟଣାବଳୀର ପରୀକ୍ଷିତ ସତ୍ୟ କେତେକଙ୍କ ଖାମଖିଆଲି ମନୋଭାବ ଉପରେ ନିର୍ଭର କରେନାହିଁ । ବିବର୍ତ୍ତନବାଦର ସତ୍ୟତା ବର୍ତ୍ତମାନ ଏପରିଭାବରେ ପ୍ରତିଷ୍ଠିତ ହୋଇଛି ଯେ, ଏହାକୁ ଅବିଶ୍ୱାସ କରିବା ଅର୍ଥ ଆଖି ବନ୍ଦ କରି ପ୍ରକୃତ ଘଟଣାକୁ ଉପେକ୍ଷା କରିବା ।



ଏହି ବିବର୍ତ୍ତନ ମତବାଦ କେବଳ ଜୀବନର କ୍ରମ-ବିକାଶ ଦେଖାଇବାରେ ଶେଷ ହୁଏନାହିଁ, ଏହାର ପ୍ରଭାବ ବହୁଦୂର ପ୍ରସାରୀ। ପୃଥିବୀର ସବୁପ୍ରକାରର ଅବସ୍ଥିତିକୁ—ଯାବତୀୟ ଭୌତିକ, ଜୈବିକ, ମାନସିକ, ସାମାଜିକ ରୀତିନୀତି, ଅର୍ଥନୈତିକ, ରାଜନୈତିକ ସଂସ୍ଥା ଓ ନୈତିକ ପଦ୍ଧତି ସବୁକୁ—ଏପରି ବିଶ୍ଳେଷଣ କରି ତା'ର କ୍ରମୋନ୍ମୀଳନ ଦର୍ଶାଇବା ହିଁ ପ୍ରକୃଷ୍ଟ ବୈଜ୍ଞାନିକ ପ୍ରଣାଳୀ ବୋଲି ବିବେଚିତ ହେଉଛି। ତେଣୁ ଏହା ଆମର ଜ୍ଞାନର ପରିସର ବୃଦ୍ଧି କରାଇବା ସଙ୍ଗେ ସଙ୍ଗେ ସମସ୍ତ ବିଷୟର ଧାରାବାହିକ ଇତିହାସ ଆମମାନଙ୍କ ଆଗରେ ରଖିଦେଇ ପାରୁଛି। ଯେଉଁମାନେ କ୍ରମବିବର୍ତ୍ତନରେ ବିଶ୍ୱାସ କରନ୍ତିନାହିଁ, ସେମାନେ ନାନାପ୍ରକାର ରହସ୍ୟମୟ ଘଟଣା ସାହାଯ୍ୟରେ ଇତିହାସକୁ ବୁଝିବାକୁ ଚେଷ୍ଟା କରନ୍ତି। ସେମାନେ ଭଗବାନଙ୍କର ଅବତାର ପ୍ରତିଭାଶାଳୀ ଲୋକଙ୍କଠାରେ ଆରୋପ କରି ଯେଉଁ ଐତିହାସିକ ଘଟଣାବଳୀକୁ କାର୍ଯ୍ୟକାରଣ ସଂବନ୍ଧରେ ଆବଦ୍ଧ କରି ଧାରାବାହିକ କ୍ରମବିକାଶ ଦୃଷ୍ଟିରୁ ବ୍ୟାଖ୍ୟା କରିହେବ, ତାକୁ ବ୍ୟକ୍ତିବିଶେଷର ଖାମଖିଆଲର କାର୍ଯ୍ୟ ହିସାବରେ ଉପସ୍ଥାପିତ କରନ୍ତି। ଫଳରେ ସତ୍ୟର ଅପଳାପ ହେବା ସାଙ୍ଗେ ସାଙ୍ଗେ ମନୁଷ୍ୟ ମନ ନାନା କୁସଂସ୍କାର ସୃଷ୍ଟି ହୁଏ। କ୍ରମ-ବିବର୍ତ୍ତନବାଦ ଉପରେ ଦୃଷ୍ଟିରେ ରଖି ଉପଯୁକ୍ତ ବୈଜ୍ଞାନିକ ପ୍ରଣାଳୀରେ ଇତିହାସକୁ ଦେଖିବାରେ ବହୁ ସତ୍ୟ ଉଦ୍‌ଘାଟିତ ହୋଇଛି। ଚିନ୍ତାଶୀଳ ମନୁଷ୍ୟର ମନ ଏସବୁ ଯୁକ୍ତିଯୁକ୍ତ ବୋଲି ମଧ୍ୟ ଗ୍ରହଣ କରିଛି। ନାନାପ୍ରକାର ସାମାଜିକ ଓ ମନସ୍ତାତ୍ତ୍ୱିକ ରହସ୍ୟ ଉଦ୍‌ଘାଟନ ଲାଗି ଏହା ପ୍ରଧାନ ଅସ୍ତ୍ରରୂପେ ବ୍ୟବହୃତ ହେଉଛି।

ଯେକୌଣସି ସମସ୍ୟାର ବିଶ୍ଳେଷଣ କରିବାକୁ ହେଲେ, ପ୍ରଥମେ ପ୍ରଶ୍ନ ହେଉଛି ଯେ, ଏହାର ଉତ୍ପତ୍ତି କିପରି ଓ କେଉଁ ସମୟରେ ହୋଇଥିଲା,—କି ପ୍ରଣାଳୀରେ ଏହାର କ୍ରମବିକାଶ ଚାଲିଆସିଛି ଏବଂ ଏହାର ପରିଣତି କେଉଁଠି। ତା' ଅର୍ଥ ଆମେ କ୍ରମ-ବିବର୍ତ୍ତନ ପଦ୍ଧତିରେ ଏହାର ଉତ୍ତର ଦେବାକୁ ଚେଷ୍ଟା କରୁଛୁ। ଉଦାହରଣ ସ୍ୱରୂପ ମନୁଷ୍ୟର ମାନସିକ କ୍ରିୟା ପ୍ରକ୍ରିୟା ବିଷୟରେ ଜାଣିବାକୁ ହେଲେ କ୍ରମବିକାଶର ସୂକ୍ଷ୍ମ ରାସ୍ତାଦେଇ ଜୀବଜଗତର ଆଦିମ ଏକକୋଷବିଶିଷ୍ଟ ଡିମ୍ବାଣୁ ପର୍ଯ୍ୟନ୍ତ ଆମମାନଙ୍କର ପହଞ୍ଚିବା ଉଚିତ୍ ଓ ସେହିଦିନଠାରୁ ଏ ସମଗ୍ର ଜୀବଜଗତର ପାରସ୍ପରିକ ସମ୍ପର୍କ ବିଷୟରେ ଜ୍ଞାନ ଅର୍ଜନ କଲେ ଯାଇ ଆଧୁନିକ ମନୁଷ୍ୟର ମନର କ୍ରିୟା ପ୍ରକ୍ରିୟା ବୁଝିହେବ। ସେହିପରି ଆଜିକାଲିକାର ସାମାଜିକ ଓ ଅର୍ଥନୈତିକ ପରିସ୍ଥିତିକୁ ଭଲଭାବରେ ବୁଝିବାକୁ ହେଲେ, ସେହି ଉପାୟରେ ତା'ର ଧାରବାହିକ ଇତିହାସ ଖୋଜି ବାହାର କରିବାକୁ ହେବ। ଏସବୁ ଦୃଷ୍ଟିରୁ ବିବର୍ତ୍ତନବାଦ ବିଜ୍ଞାନ ରାଜ୍ୟରେ ଗୋଟିଏ ବିପ୍ଳବାତ୍ମକ ଉଦ୍ଭାବନ—ଏପରି ଗୋଟିଏ ଚାବି ମନୁଷ୍ୟ ବାହାର କରିପାରିଛି, ଯାହାକି ଅକ୍ଳେଶରେ ବହୁ ରହସ୍ୟ ଭଣ୍ଡାର ଉଦ୍‌ଘାଟିତ କରି ଦେଇପାରିବ। ଏଥିଲାଗି ଏହାର ମହତ୍ତ୍ୱ ଏତେ ବେଶି ବଢ଼ି ଯାଇଛି। ଡାରଉଇନ୍‌ଙ୍କର ସମସ୍ତ ଉଦାହରଣ ମିଥ୍ୟା ବୋଲି ପ୍ରମାଣିତ ହେଲେ ସୁଦ୍ଧା ତାଙ୍କର ଏହି ବୈଜ୍ଞାନିକ ପଦ୍ଧତିଟି ଯେ ଅମର ହୋଇ ରହିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ■□■

# ସାମାଜିକ ଅଗ୍ରଗତିରେ ଦର୍ଶନ

ବ୍ୟକ୍ତିବିଶେଷର ଜୀବନଯାପନ ପ୍ରଣାଳୀ ଅର୍ଥାତ୍ ଧର୍ମଗତ, ନୀତିଗତ ଓ ଅନ୍ୟାନ୍ୟ ବ୍ୟକ୍ତିଗତ ତଥା ସାମାଜିକ କ୍ରିୟା, ପ୍ରତିକ୍ରିୟା ସମାଜର ସାଧାରଣ ଅନୁମୋଦିତ ଚିରାଚରିତ ରୀତିନୀତି ଦ୍ୱାରା ପ୍ରଭାବିତ ହୋଇଥାଏ । ପିଲା ଜନ୍ମ ହେବା ଦିନଠାରୁ ବାପମା, ବନ୍ଧୁବାନ୍ଧବ, ପ୍ରତିବେଶୀ, ସ୍କୁଲ ଶିକ୍ଷକ, ସାଙ୍ଗସାଥୀ ପ୍ରଭୃତି ନାନାପ୍ରକାର ସାମାଜିକ ପ୍ରତିନିଧି ଏବଂ ଘର, ସ୍କୁଲ, ଖେଳପଡ଼ିଆ ପ୍ରଭୃତି ନାନାପ୍ରକାର ସାମାଜିକ ଅନୁଷ୍ଠାନ ଭିତର ଦେଇ ତାହାର ମନୋଭାବ, ଆଚାର ବ୍ୟବହାର, ବାଛବିଚାର ପ୍ରଭୃତି ସଂସ୍କାର ଗଠିତ ହୁଏ । ଅନ୍ୟାନ୍ୟ ଅନେକପ୍ରକାର ବିକୃତ ମାନସିକ ଧାରଣା ମଧ୍ୟ ଜନ୍ମେ । ତେଣୁ ବ୍ୟକ୍ତିବିଶେଷର ସାମାଜିକ ଓ ସାଂସ୍କୃତିକ ବ୍ୟକ୍ତିତ୍ୱ ଏସବୁର ସାଂଶ୍ଲେଷିକ କ୍ରିୟାଫଳ ମାତ୍ର । ଅବଶ୍ୟ ଏ ପ୍ରକାର କ୍ରିୟା ଏକପକ୍ଷୀୟ ନୁହେଁ । ବ୍ୟକ୍ତିଗତ ମନୋଭାବ, ସମଷ୍ଟିଗତ କ୍ରିୟା ପ୍ରତିକ୍ରିୟାକୁ ମଧ୍ୟ ବଦଳାଇ ଥାଏ । ମନୁଷ୍ୟର ମୁକ୍ତ ଚିନ୍ତାଧାରା ସେଥିରେ ଦ୍ୱନ୍ଦ୍ୱ ସୃଷ୍ଟି କରେ ; ସର୍ବସାଧାରଣ ଅନୁମୋଦିତ ସାମାଜିକ ପ୍ରଣାଳୀରେ ବିପ୍ଳବ ଦେଖାଦିଏ ; ଚିରାଚରିତ ସମଷ୍ଟିଗତ ରୀତିନୀତି, ଆଚାର ବ୍ୟବହାର ବଦଳିଯାଏ, ଫଳରେ ନୂଆ ସମାଜର ସୃଷ୍ଟି ହୁଏ । ଲୋକେ ନୂତନ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତି । ପୁରୁଣା ସମାଜ ପ୍ରତିକ୍ରିୟାଶୀଳ ହୋଇପଡ଼େ, ଅର୍ଥାତ୍ ଜୀବନୀଶକ୍ତିର ଅଗ୍ରଗତିରେ ସାହାଯ୍ୟ କରିବା ପରିବର୍ତ୍ତେ ଏହା ବାଧା ସୃଷ୍ଟି କରେ । ତେଣୁ ପ୍ରଗତିଶୀଳ ଲୋକେ ତାକୁ ଛାଡ଼ି ନୂତନ ଆଦର୍ଶରେ ଆଗେଇ ଚାଲନ୍ତି ।

ଦର୍ଶନ ହେଉଛି ବ୍ୟକ୍ତିଗତ ମନୋଭାବ ଓ ସମଷ୍ଟିଗତ ଆଦର୍ଶର ସୂକ୍ଷ୍ମ ସମାଲୋଚନା । ଜୀବନୀଶକ୍ତିର ବିଶିଷ୍ଟ ପରାମର୍ଶଦାତା ଓ ପଥପ୍ରଦର୍ଶକ । ପ୍ରତ୍ୟେକ ଦେଶର, ପ୍ରତ୍ୟେକ ଜାତିର ଓ ପ୍ରତ୍ୟେକ ଯୁଗର ଦର୍ଶନ ସେହି ସମୟର ଓ ସେହି ଯୁଗର ସାମାଜିକ ପରିସ୍ଥିତିର ଚିନ୍ତାଧାରା ମାତ୍ର । କିନ୍ତୁ ତା ବୋଲି ଏହା କେବଳ ନିଷ୍କ୍ରିୟ ଭାବଧାରାରେ ସୀମାବଦ୍ଧ ନୁହେଁ, କିମ୍ବା ଜୀବନପ୍ରବାହର ପାର୍ଶ୍ୱଦେଶର ଗତିଶୂନ୍ୟ ଉଦାସୀନ ମସ୍ତିଷ୍କର ପ୍ରଭାବହୀନ ସମାଲୋଚନା ନୁହେଁ । ବରଂ ଏହା ସମ୍ମୁଖସ୍ଥ ଅଜ୍ଞାତ ଓ ଅଦୃଷ୍ଟ ଭବିଷ୍ୟତର ଯୁକ୍ତିଯୁକ୍ତ ସୁସଙ୍ଗତ ପ୍ରତୀକ୍ଷା । ତେଣୁ ବ୍ୟକ୍ତି ତଥା ସମଷ୍ଟିଗତ କ୍ରିୟାପ୍ରକିୟା ଏହାଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଏ ପ୍ରକାର ଜ୍ଞାନ ବା ଚିନ୍ତାଧାରା ସେହି ଯୁଗର ମନୁଷ୍ୟସମାଜ ସହିତ ପୂରାପୂରି ଖାପ ନ ଖାଇଲେ ସୁଦ୍ଧା ସମାଜର ଅଗ୍ରଗତିରେ ବହୁତ ସାହାଯ୍ୟ କରେ; ଅନ୍ତତଃ ପଶ୍ଚାତ୍‌ମୁଖୀ ଦର୍ଶନ ପରି ପ୍ରତିକ୍ରିୟାଶୀଳ ଓ ଗତିରୋଧକାରୀ ପ୍ରତିବନ୍ଧକରୂପେ କାର୍ଯ୍ୟ କରେ ନାହିଁ । ଏଥିରେ ଅତୀତର ପ୍ରଭାବ ଯେ ନାହିଁ, ତା' ନୁହେଁ । ଅତୀତ ବିରାଟ ମୂଳଭିତ୍ତିରୂପେ କାର୍ଯ୍ୟ କଲେ ହେଁ ଏହା ପଛକୁ ଟାଣି ବୃଥା ଶକ୍ତି ନଷ୍ଟ କରେ ନାହିଁ । ବରଂ ଯେଉଁ ଦର୍ଶନର ଆଗକୁ ଟାଣିବାର ଶକ୍ତି ଯେତେ ବେଶି, ତାହାର ଅତୀତ ମୂଳଭିତ୍ତି ସେତେ ସୁଦୃଢ଼ । ତେଣୁ ପ୍ରାୟ ଦେଖାଯାଏ ଯେ ପ୍ରଗତିଶୀଳ ଜାତିମାନଙ୍କର ଅତୀତ ପ୍ରତି ଶ୍ରଦ୍ଧା ଅଛି ; କିନ୍ତୁ ଅଯଥା ମୋହ ନାହିଁ ; ସେମାନେ ଅତୀତର ବଂଶଧରରୂପେ ଗର୍ବ କରନ୍ତି ; କିନ୍ତୁ ସେ ଯୁଗକୁ ଫେରି ଯିବାରେ ଆଗ୍ରହୀ ନୁହଁନ୍ତି ; କିନ୍ତୁ ଅନୁନ୍ନତ ଜାତିମାନଙ୍କର

ଅତୀତ ହିଁ ସର୍ବସ୍ୱ, ସବୁ ସୁଖସମୃଦ୍ଧିର ରାମରାଜ୍ୟ। ସମସ୍ତ ଶକ୍ତି ଦେଇ ସେହି ରଙ୍ଗିନ ଅତୀତକୁ ଫେରିଯିବାରେ ସେମାନଙ୍କର ପ୍ରବଳ ଆଗ୍ରହ।

ଏଥିରୁ ସମାଜ ଗଠନରେ ଦର୍ଶନର ବିରାଟ ପ୍ରଭାବ ସହଜେ ଅନୁମେୟ। ବିନା ଦର୍ଶନରେ କୌଣସି ବ୍ୟକ୍ତି ବଞ୍ଚିପାରେନାହିଁ କି କୌଣସି ମାନବସମାଜ ତିଷ୍ଠିପାରେ ନାହିଁ। ଏଥିରେ ହିଁ ମନୁଷ୍ୟ ପଶୁଠାରୁ ତଫାତ୍। ତେଣୁ ମନୁଷ୍ୟ ସମାଜରେ ଦର୍ଶନର ପ୍ରଭାବ ଅଛି କି ନାହିଁ ବୋଲି ପ୍ରଶ୍ନ କରିବା ଭୁଲ ହେବ। କାରଣ ପ୍ରତ୍ୟେକର କୌଣସି ନା କୌଣସି ଗୋଟିଏ ଦର୍ଶନ ଅଛି। ଅସଲ ପ୍ରଶ୍ନ ହେଉଛି, କେଉଁ ଦର୍ଶନ ଠିକ୍ ଓ କେଉଁ ଦର୍ଶନ ଭୁଲ। ଅର୍ଥାତ୍ କେଉଁ ଦର୍ଶନ ମାନବ ସମାଜର ହିତକାରୀ ଓ କେଉଁ ଦର୍ଶନ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ, ସୁଖସ୍ୱାଚ୍ଛନ୍ଦ୍ୟ ଏବଂ ସମଷ୍ଟିଗତ ଜୀବନର ଅନିଷ୍ଟକାରୀ। ଏ ପ୍ରକାର ପ୍ରଶ୍ନର ସମାଧାନ କିନ୍ତୁ ଅସମ୍ଭବ। ଏହାର ରୋକ୍‌ଠୋକ୍ ଉତ୍ତର ନ୍ୟାୟସଙ୍ଗତ ନୁହେଁ। ଯୁକ୍ତିଯୁକ୍ତ ମଧ୍ୟ ନୁହେଁ ; କିନ୍ତୁ ଦେଶ କାଳ ପାତ୍ର ଓ ଅବସ୍ଥା ଅନୁସାରେ ଏହାର ଆପେକ୍ଷିକ ସମାଧାନ କରାଯାଇପାରେ। ସମୟ ଓ ପରିସ୍ଥିତି ଅନୁଯାୟୀ ଏହା ବଦଳିଯିବା ସ୍ୱାଭାବିକ; ନ ବଦଳିବା ହିଁ ଅନ୍ୟାୟ ଓ ଅସ୍ୱାଭାବିକ। ଖାଲି ସାମାଜିକ ଆଦର୍ଶ, ନୀତିଗତ ଦର୍ଶନ ଓ ବ୍ୟକ୍ତିଗତ ଭଲ ମନ୍ଦ କାହିଁକି, ସବୁପ୍ରକାର ମାନବିକ ଜ୍ଞାନ ବିଜ୍ଞାନ, ନିୟମକାନୁନ ଏହିପରି ଆପେକ୍ଷିକ ଏବଂ ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ରୂପ ଧାରଣ କରିଥାଏ। ଯେଉଁମାନେ ସନାତନ ଶାଶ୍ୱତ ସତ୍ୟରେ ବିଶ୍ୱାସ କରନ୍ତି, ସେମାନେ ମନୁଷ୍ୟର ବୋଧଶକ୍ତିର ଆପେକ୍ଷିକତା ତଥା ପ୍ରକୃତି ସମ୍ବନ୍ଧୀୟ କ୍ରମାଗତ ବିରାଟ ଅନୁଭୂତିଶକ୍ତି ବିଷୟରେ ସଚେତ ନୁହଁନ୍ତି। ନିଜର ଅହମିକା ଯୋଗୁଁ ଏ ପ୍ରକାର ଚିନ୍ତାଧାରା ସମ୍ଭବ ହୋଇଥାଏ। ଏମାନେ ଜୀବନ ପ୍ରବାହର ପ୍ରତି ମୁହୂର୍ତ୍ତରେ ଅକଳିତ ନୂତନତ୍ୱ ପ୍ରତି ବିଶ୍ୱାସଘାତକତା କରିଥା'ନ୍ତି। ଏମାନଙ୍କର ଭଗବାନ ମଧ୍ୟ ସୃଜନଶକ୍ତି ରହିତ, ଗତିହୀନ, ଦୋଷଗୁଣଶୂନ୍ୟ, ପୂର୍ଣ୍ଣତାପ୍ରାପ୍ତ ପରିସମାପ୍ତି। ଅବଶ୍ୟ ସେମାନେ ଏ ପ୍ରକାର ବିଶ୍ଳେଷଣ ପ୍ରୟୋଗରେ ରାଜି ହେବେ ନାହିଁ ; କିନ୍ତୁ ଅତି ସୂକ୍ଷ୍ମ ଭାବରେ ଆଲୋଚନା କଲେ ଏ ପ୍ରକାର ସିଦ୍ଧାନ୍ତରେ ପହଞ୍ଚିବା ଛଡ଼ା ଅନ୍ୟ ଉପାୟ ନାହିଁ।

ତେବେ ଯାହାହେଉ, ଏ ପ୍ରକାର ଚିରନ୍ତନ ସତ୍ୟ ମାନବ ସମାଜକୁ ବିଶେଷଭାବରେ ପ୍ରଭାବାନ୍ୱିତ କରିପାରୁନାହିଁ। ଯଦିବା ବଡ଼ ବଡ଼ ଦାର୍ଶନିକମାନେ ବହୁ ଯୁକ୍ତିତର୍କ ଦେଇ ଏହାକୁ ପ୍ରତିପାଦିତ କରିଥା'ନ୍ତି, ତଥାପି ଏହାର କାର୍ଯ୍ୟକାରୀ ଶକ୍ତି ସର୍ବଦା ସମାନ ନୁହେଁ; ଅନେକ ସମୟରେ ଯେଉଁମାନେ ଏହାର ଆବର୍ତ୍ତରେ ପଡ଼ିଛନ୍ତି ସେମାନେ ପଶ୍ଚାତମୁଖୀ, ନିଷ୍କ୍ରିୟ ମୁକ୍ତିକାମୀ ବା କାଳ୍ପନିକ ସୁଦୂର ଅନାଗତ ଭବିଷ୍ୟ... ବିରାଟ ସମ୍ଭାବନାରେ ଅଯଥା ଆଶାବାଦୀ। ସେମାନେ ଜୀବନ ପ୍ରବାହର ପାର୍ଶ୍ୱ ଦେଶରେ ଗତିହୀନ ପୂତିଗନ୍ଧମୟ କର୍ଦ୍ଦମାକ୍ତ ସ୍ଥାନରେ ଅଟକି ଯାଇଥା'ନ୍ତି କିମ୍ବା ସ୍ରୋତର ଅତଳ ଗର୍ଭରେ ଘୋର ନିଦ୍ରିତ ଅବସ୍ଥାରେ ସ୍ୱପ୍ନ ଦେଖୁ ଦେଖୁ ଯନ୍ତ୍ରବତ୍ ଗଡ଼ି ଗଡ଼ି ଚାଲୁଥା'ନ୍ତି। ତେଣୁ ସେ ସବୁ ଅଗ୍ରଗାମୀ ମନୁଷ୍ୟର ଜୀବନଦର୍ଶନ ହୋଇ ନ ପାରେ। ଯେଉଁମାନେ ସ୍ରୋତମୁଖରେ ଆଗେଇ ଚାଲୁଛନ୍ତି, ସେହିମାନେ ହିଁ ନିଜର ସମସ୍ତ ଶକ୍ତି ଦେଇ ଅତୀତ, ଭବିଷ୍ୟତ ଓ ବର୍ତ୍ତମାନର ବିଭିନ୍ନ ପରିସ୍ଥିତି ଏବଂ ଭିନ୍ନ ଭିନ୍ନ ଶକ୍ତିର ଯୁକ୍ତିଯୁକ୍ତ ବିଚାର କରି ବ୍ୟକ୍ତିଗତ ତଥା ସାମାଜିକ କାର୍ଯ୍ୟାବଳୀକୁ ନିୟନ୍ତ୍ରିତ କରିପାରନ୍ତି। ସେମାନଙ୍କର ଦର୍ଶନ ପରିବର୍ତ୍ତନଶୀଳ, ସତ୍ୟ-ଆପେକ୍ଷିକ, ତେଣୁ ଜୀବନୀଶକ୍ତି ପରିବର୍ଦ୍ଧକ ଓ ଅଗ୍ରଗାମୀ ମାନବସମାଜର ପ୍ରକୃତ ହିତକାରୀ ଅଗ୍ରଦୂତ।

ଦର୍ଶନର ଯଥାର୍ଥତା ବାସ୍ତବିକ ପରିସ୍ଥିତିରୁ ଏବଂ ଏହାର ସାପେକ୍ଷ ସତ୍ୟାସତ୍ୟ ବ୍ୟବହାରର ଫଳାଫଳରୁ ନିର୍ଦ୍ଧାରିତ ହେବା ଉଚିତ । ଏ ଦୁଇଟି ମାନଦଣ୍ଡ ସାହାଯ୍ୟରେ ଆମେ ବିଭିନ୍ନ ଦର୍ଶନଗୁଡ଼ିକୁ ସହଜରେ ବିଚାର କରିପାରିବୁ । ନାତ୍ସୀ ଜର୍ମାନୀର 'ଉତ୍କୃଷ୍ଟତର ଜାତି' 'ଶ୍ରେଷ୍ଠ ନେତା' ପ୍ରଭୃତି ଦର୍ଶନର ଅନ୍ତର୍ନିହିତ ଅସଙ୍ଗତି ଓ ଅଯୌକ୍ତିକତା ଓ ତା'ର ପରିଣାମ ବିଷୟରେ ଯେକୌଣସି ଚିନ୍ତାଶୀଳ ବ୍ୟକ୍ତି ଉପରୋକ୍ତ ମାନଦଣ୍ଡ ସାହାଯ୍ୟରେ ଯେ ଭବିଷ୍ୟତ ବାଣୀ ଶୁଣାଇ ପାରେ, ଏଥିରେ ସନ୍ଦେହ ନାହିଁ । ସେହିପରି ଚରମ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଅନିଷ୍ଟକର ପ୍ରଭାବ ବିଷୟରେ କେତେଜଣ ଲୋଲୁପ, ନରରକ୍ତପିପାସୁ ସ୍ୱାର୍ଥାନ୍ୱେଷୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଏକମତ । ଏ ପ୍ରକାର ଦର୍ଶନ ପୃଥିବୀର ଭୟଙ୍କର କ୍ଷତି କରୁଛି, ତଥାପି ତା'ର ଶକ୍ତି ଅନେକ କାଳ ଧରି ଲାଗିରହିଛି କାହିଁକି ? ତା'ର କାରଣ, ଯେଉଁମାନେ ଏପରି ଦର୍ଶନ ପ୍ରଚାର କରୁଛନ୍ତି, ବର୍ତ୍ତମାନ ପୃଥିବୀର ପରିସ୍ଥିତି ସେମାନଙ୍କର ଅନୁକୂଳ । ସେହିମାନଙ୍କ ହାତରେ ହିଁ ସମାଜର ସମସ୍ତ ଧନ, ସମସ୍ତ ସାମରିକ ଶକ୍ତି, ଦେଶର ତଥାକଥିତ ସଂସ୍କୃତି, ଶିକ୍ଷା, ସାହିତ୍ୟ, କଳା ପ୍ରଭୃତି ରହିଛି । ତେଣୁ ସେମାନଙ୍କର ଦର୍ଶନ ସମାଜର ସବୁ ସ୍ତରରେ ଚେର ମାଡ଼ି ରହିଛି । ଫଳରେ ତା'ର ଉତ୍କର୍ଷବିଶିଷ୍ଟ ଏପରି ଭାବରେ ପୃଥିବୀକୁ ପ୍ରଭାବିତ କରୁଛି ; କ୍ରମେ କ୍ରମେ ଅନ୍ୟାନ୍ୟ ଦାର୍ଶନିକ ଚିନ୍ତାଧାରା ସମାଜକୁ ପ୍ରଭାବିତ କରିବାକୁ ଆରମ୍ଭ କରିଛି । ପୃଥିବୀର ମୂର୍ଖ ଜନତା ସଚେତ ଓ ଜାଗ୍ରତ ହେଉଛି; ଶୋଷିତ ମାନବଜାତି ଉତ୍କ୍ଷିପ୍ତ ଓ ଉଜ୍ଜୀବିତ ; ବିକାଶଶୀଳ ଦେଶସବୁ ବଳିଷ୍ଠ ହୋଇ ଉଠୁଛନ୍ତି । ସେମାନଙ୍କର ଦର୍ଶନ ଉପରୋକ୍ତ ଦର୍ଶନଠାରୁ ସମ୍ପୂର୍ଣ୍ଣ ତଫାତ୍ । ନୂତନ ଆଲୋକ ଆଗରେ ପୁରାତନ ଦର୍ଶନ ନିଷ୍ପ୍ରଭ ଓ ନୂତନ ପରସ୍ଥିତିରେ ତାହା ମିଥ୍ୟାରେ ପରିଣତ ହେବାକୁ ବସିଛି । ନୂତନ ଓ ପୂରାତନର ଏ ପ୍ରକାର ଦ୍ୱନ୍ଦ୍ୱ ଭିତରୁ ଯେ ଗୋଟିଏ ମଧୁର ସଂଶ୍ଳେଷର ଉଦ୍ଭବ ହେବ, ଏଥିରେ ସନ୍ଦେହ ନାହିଁ ।

ଭାରତବର୍ଷର କେତେକ ଦାର୍ଶନିକ ଭାବଧାରା ପଶ୍ଚାଦ୍‌ମୁଖୀ, ତେଣୁ ଆମେମାନେ ଅତୀତକୁ ଚାହିଁ ବସିଛୁ । ଅତୀତର ଯାହା କିଛି ଆମ ପକ୍ଷରେ ଗୌରବମୟ ଓ ବର୍ତ୍ତମାନର ସବୁ ସନ୍ଦେହଜନକ । ଜଣେ ବହୁ ସମ୍ପତ୍ତିର ଅଧିକାରୀ ହେଲା ପରେ ହଠାତ୍ ରୁଗ୍ଣ ଓ ଦରିଦ୍ର ହୋଇପଡ଼ି ଯେପରି ନିଜ ଶକ୍ତି ଉପରୁ ବିଶ୍ୱାସ ହରାଇ ବସେ ଓ ଈର୍ଷାପରବଶ ହୋଇ ଯେଉଁମାନେ ନିଜ ଶକ୍ତିରେ ଆଗେଇ ଚାଲିଛନ୍ତି, ସେମାନଙ୍କୁ ଘୃଣା ଓ ସନ୍ଦେହ କରିବା ସାଙ୍ଗେ ସାଙ୍ଗେ ଅତୀତର ଉପାର୍ଜିତ ସମ୍ପତ୍ତି ଉପରେ କେବଳ ଆସ୍ଥା ରଖି ବସିରହେ, ଆମେ ସେପରି ହୋଇପଡ଼ିଛୁ । ଆମର ସାମାଜିକ ଦର୍ଶନ ବର୍ତ୍ତମାନ ଯୁଗୋପଯୋଗୀ ହୋଇ ପାରିନାହିଁ । ଏହାର ବିପ୍ଳବାତ୍ମକ ପରିବର୍ତ୍ତନ ହେବା ଦରକାର । ଅବଶ୍ୟ କେଉଁ ଦିଗରେ ଏବଂ କି ପ୍ରକାର ପରିବର୍ତ୍ତନ ହେବା ଆବଶ୍ୟକ, ତାହା ଭାବିଚିନ୍ତି ଠିକ୍ କରିବାକୁ ହେବ । ଉପରୋକ୍ତ ମାନଦଣ୍ଡ ସାହାଯ୍ୟରେ ତାହାର ଗତି ନିରୂପଣ କରି ଏପରି ଗୋଟିଏ ଦର୍ଶନ ଆଖି ଆଗରେ ରଖାଯିବା ଉଚିତ, ଯାହା ଆମ ବ୍ୟକ୍ତିଗତ ତଥା ସାମାଜିକ ଜୀବନର ଯଥୋଚିତ ବୈଜ୍ଞାନିକ ବିଶ୍ଳେଷଣ କରିବା ସାଙ୍ଗେ ସାଙ୍ଗେ ବ୍ୟକ୍ତି ଓ ସମଷ୍ଟିର ସମୂହ ହିତସାଧନ ଲାଗି ଆମ ସମାଜକୁ ଆବଶ୍ୟକମତେ ବଦଳାଇ ଦେଇ ପାରିବ । କାରଣ, ଯେଉଁ ଦର୍ଶନ ଯୁଗୋପଯୋଗୀ ସାମାଜିକ ଓ ସାଂସ୍କୃତିକ ବିପ୍ଳବ ଆଣିଦେଇ ନ ପାରେ, ସେ ଦର୍ଶନ ଗତିଶୀଳ ମାନବଜୀବନର ପ୍ରକୃତ ଦିଗ୍‌ଦର୍ଶକ ନୁହେଁ ।




# ଆଗାମୀ ଯୁଗର ସ୍ରଷ୍ଟା

ଆଦିମ ଯୁଗରୁ ଆଜିଯାଏ ଲହୁଲୁହ ଢାଳି ଯେଉଁମାନେ ଏହି ପୃଥିବୀକୁ ନିଜ ବାହୁବଳରେ ଓଲଟ ପାଲଟ କରିଯାଇଛନ୍ତି, ଶୁଷ୍କ ମରୁଭୂମିରେ ହଜାର ହଜାର ମହଣ ଓଜନ ପଥରର ବିରାଟ ପିରାମିଡ୍‌, ସମୁଦ୍ରର ଲହରୀ ଭିତରେ ନଭଶ୍ଚୁମ୍ବୀ ସୂର୍ଯ୍ୟମନ୍ଦିର, ଜନହୀନ ମରୁଭୂମିରେ କୃତ୍ରିମ ସମୁଦ୍ର,ଖରସ୍ରୋତା ନଦୀବକ୍ଷରେ ବିଶାଳକାୟ ସେତୁବନ୍ଧ ବାନ୍ଧିଛନ୍ତି- ସେମାନଙ୍କର ସୁଖ, ଦୁଃଖ, ଭାବନା, ଚିନ୍ତା ଇତିହାସରେ ଲିପିବଦ୍ଧ ହୋଇପାରେ ନାହିଁ। ସେମାନଙ୍କର ପ୍ରସ୍ତରୀଭୂତ ଅସ୍ଥି ସ୍ତୂପୀକୃତ ଭାବରେ ଜମିଯାଇଚି । ରକ୍ତର ନଦୀ ଜମାଟ ବାନ୍ଧି ରହିଛି । ସେମାନଙ୍କର ହତଭାଗ୍ୟ ସ୍ତ୍ରୀ ପିଲାଙ୍କର କ୍ରନ୍ଦନ ଯୁଗଯୁଗ ଧରି କରୁଣ ସ୍ୱରରେ ଗଗନ ପବନରେ ଥରି ଉଠୁଛି ସତ ; କିନ୍ତୁ ଇତିହାସରେ ତା'ର ପରିଚୟ ରହିପାରି ନାହିଁ । କାରଣ ଯେ ଇତିହାସ ଲେଖିଛି, ତା'ର ଏମାନଙ୍କ ସହିତ କୌଣସି ପରିଚୟ ନାହିଁ। ଏହିମାନଙ୍କୁ ଗାଈଗୋରୁପରି ଅଡ଼ାଇ କାମ କରାଇଛି । ସେହି ଦିଗ୍‌ବିଜୟୀ ସମ୍ରାଟଙ୍କଠାରୁ ସ୍ୱର୍ଣ୍ଣମୁଦ୍ରା ପାଇ ଐତିହାସିକ ଇତିହାସ ଲେଖିଛି । ତେଣୁ ତାଜମହଲ ମାଳିକର କବିପ୍ରତିଭା, ଅଶ୍ରୁତପୂର୍ବ ଯଶ, ପ୍ରେମର ସମାଧି, ତାଜମହଲର ମର୍ମରେ ଗୁନ୍ଥି ହୋଇ ରହିଥିବା ପ୍ରେମିକର ଅଶ୍ରୁଜଳ ବିଷୟରେ ଯେଉଁମାନେ ଶତମୁଖ ହୋଇ କବିତା ରଚନା କରିଛନ୍ତି, ଇତିହାସ ପ୍ରଣୟନ କରିଛନ୍ତି – ସେମାନଙ୍କର ପ୍ରାଣକୁ ଶିଳ୍ପୀର ଅଶ୍ରୁ, ଶ୍ରମିକର ବେଦନା, ଶ୍ରମିକ ପତ୍ନୀର ବ୍ୟର୍ଥ ଅଶ୍ରୁ ସ୍ପର୍ଶ କରିପାରି ନାହିଁ। କାମ କରିବା ଲୋକ ଯୁଗଯୁଗ ଧରି କାମ କରି କଙ୍କାଳ ହୋଇଯାଇଛି ; କିନ୍ତୁ ଭୋଗ କରିବା ଲୋକ ଭୋଗ କରିଯାଇଛି ଏବଂ ଇତିହାସ ସେହି ଭୋଗୀମାନଙ୍କର ଗୁଣାବଳୀରେ ପୂର୍ଣ୍ଣ । ଯେ ଯେତେ କମ୍ ଶ୍ରମ କରିଛି ସେ ସେତେ ବେଶି ବଡ଼ ବୋଲି ବର୍ଣ୍ଣିତ ହୋଇଛି । ଇତିହାସରେ ସେ ସେତେ ବେଶୀ ଚହଲ ପକାଇପାରିଛି । ବର୍ତ୍ତମାନ ସୁଦ୍ଧା ମନୁଷ୍ୟ ସମାଜ ଏ ପ୍ରକାର ଭଣ୍ଡାମୀକୁ ସମ୍ପୂର୍ଣ୍ଣଭାବରେ ଛାଡ଼ିପାରିନି । ସମୟ ସମୟେ ଯେଉଁମାନେ ଏହି ଭଣ୍ଡାମୀର ବିରୁଦ୍ଧରେ ଠିଆ ହୋଇଛନ୍ତି ସେହିମାନଙ୍କ ଭିତରୁ ଅନେକେ ପୁଣି ସେହି ଜାଲରେ ପଡ଼ିଯାଇଛନ୍ତି। ଯେଉଁମାନଙ୍କ ପାଇଁ ଲଢ଼ନ୍ତି ସେହିମାନଙ୍କର ଲୁହ-ଲହୁ ସମୁଦ୍ରରେ ପହଁରି ଯେତେବେଳେ ନୂତନ ଦେଶର କୂଳରେ ପହଞ୍ଚନ୍ତି ସେଠାରେ ପୁଣି ସେହିମାନଙ୍କର ଅସ୍ଥିସ୍ତୂପ ଉପରେ ଠିଆହୋଇ ନିଜ ପାଇଁ ଇତିହାସ ସୃଷ୍ଟି କରନ୍ତି । ଅଗଣିତ ଜନମାନବର ତ୍ୟାଗ ଉପରେ ଗଢ଼ାହୋଇଥିବା ତାଜମହଲ ତାଙ୍କର ଯଶଗାନ କରେ । ଢାଁ ଢାଁ ଖଣ୍ଡେ ଅଧେ ପଥର 'ଅଜ୍ଞାତ ସୈନିକ'ର କବର ରୂପରେ ଲକ୍ଷ ଲକ୍ଷ ନରନାରୀଙ୍କର ତ୍ୟାଗକୁ ଉପହାସ କଲାପରି ଠିଆ ହୋଇଥାଏ ମାତ୍ର। ଅନ୍ୟମାନଙ୍କ ପାଇଁ ଆତ୍ମବଳୀ ଦେଇଥିବା ପ୍ରତ୍ୟେକ ସହୀଦ ପାଇଁ ଯଦି ସ୍ମୃତିଫଳକ ତିଆରି ହୋଇଥାଆନ୍ତା, ତଥାପି ତା'ର ଚିତ୍ର ଇତିହାସ ପୃଷ୍ଠାରେ ଅଙ୍କିତ ହୋଇପାରି ନଥାନ୍ତା ।

ଏହି ବିରାଟ ଐତିହାସିକ ମିଥ୍ୟା ଓ ଅତୀତ ସଭ୍ୟତାର ନିର୍ଲ୍ଲଜ ଶଠତା ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଛି ବିଂଶ ଶତାବ୍ଦୀର ଉଦୀୟମାନ ଜନତା । ସାରା ପୃଥିବୀର ଉଗ୍ର ଓ ଜାଗ୍ରତ ଜନଶକ୍ତି ଅଦମ୍ୟ ସାହସ ଓ ଅଦମନୀୟ କ୍ଷମତା ସହ ନୂତନ ରୂପରେ ଇତିହାସ ସୃଷ୍ଟି କରୁଛି । ଇତିହାସର କ୍ରୂର ରଥଯାତ୍ରା ପାଇଁ ଯେଉଁ ଶ୍ରମିକ ନିଜ ବକ୍ଷ ପାତି ରାଜପଥ ତିଆରି କରୁଥିଲା, ଆଜି ସେହି ନିଦାରୁଣ ରଥ ଶ୍ରମିକର ମାଂସପେଶୀରେ ଚୂରମାର ହୋଇଯାଇଛି ।

ସାମାଜିକ ପ୍ରଗତି, ସାଂସ୍କୃତିକ ଅଗ୍ରଗତି ଲାଗି ଆଉ ମଣିଷର ଲହୁ ଦରକାର ନାହିଁ ; ଦରକାର ତା'ର ବୁଦ୍ଧିର ଏବଂ ଆଙ୍ଗୁଠିର ସୂକ୍ଷ୍ମ କୌଶଳର । ନୂତନ ମାନବୀୟ ମୂଲ୍ୟବୋଧ ଓ ନୂତନ ସମାଜବାଦୀ ସହଯୋଗ ଯୋଗୁଁ ପ୍ରକୃତିର ଅଶ୍ରୁତପୂର୍ବ ଦୁର୍ଦ୍ଦମ ଜଡ଼ଶକ୍ତି ମନୁଷ୍ୟ ହାତରେ ଆସି ପଡ଼ିଛି । ମନୁଷ୍ୟ ଆଜି ଐତିହାସିକ ରାଜପଥର ଉପାଦାନ ହେବା ପରିବର୍ତ୍ତେ ତା'ର ସଚେତ ନିୟାମକ । ଫଳରେ ଭବିଷ୍ୟତର ନିତ୍ୟନୂତନ ପଥରେ ବିଜୟ ମଣ୍ଡିତ ବୀର ହିସାବରେ ଆଗେଇବା ତା' ପକ୍ଷରେ ସମ୍ଭବ ହୋଇପାରିଛି । ପ୍ରାକୃତିକ ଶକ୍ତି ସାହାଯ୍ୟରେ ପ୍ରକୃତିକୁ ଅତି ଅଳ୍ପ ସମୟ ଭିତରେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସ୍ୱଇଚ୍ଛାରେ ପୁନର୍ଗଠିତ ଓ ମୁହୁର୍ମୁହୁ ପରିବର୍ତ୍ତିତ କରିପାରିବା ସଙ୍ଗେ ସଙ୍ଗେ ସୃଷ୍ଟିର ରହସ୍ୟ ଉଦ୍‌ଘାଟିତ କରିବା ମନୁଷ୍ୟ ପକ୍ଷରେ ଆଜି ସମ୍ଭବ । ଏଥିରେ କ୍ରୀତଦାସର ମର୍ମନ୍ତୁଦ ଆର୍ତ୍ତନାଦ କିମ୍ବା କଳ୍ପନାତୀତ ପାଶବିକ ଯନ୍ତ୍ରଣା ନାହିଁ । ଇନ୍ଦ୍ରଦ୍ୟୁମ୍ନର ଆତ୍ମସନ୍ତୋଷ ଓ ସାମାଜିକ ଯଶ ଲାଗି ନିଜକୁ କଚ୍ଛପରେ ରୂପାନ୍ତରିତ କରାଇବାର ଆବଶ୍ୟକତା ନାହିଁ । କାମ ଭିତରେ ସେ ଆଜି ଅନୁଭବ କରିପାରୁଛି ସ୍ରଷ୍ଟାର ଆନନ୍ଦ ଓ ମାନବତ୍ୱର ବିକାଶ ।

ମନୁଷ୍ୟର ଅପରିସୀମ କ୍ଷମତା ଓ ତା'ର ଅନ୍ତର୍ନିହିତ ଶକ୍ତିର ଆଧ୍ୟାତ୍ମିକ ପରିପୂର୍ଣ୍ଣତା ଏହି ଯୁଗର ସୃଜନଶୀଳ କର୍ମାନୁଭୂତିରେ ହିଁ ସମ୍ଭବ । ତା'ର ନିଦର୍ଶନ ଗତ କେତେ ବର୍ଷର ଅଲୌକିକ କାର୍ଯ୍ୟାବଳୀରେ ପ୍ରମାଣିତ ହୋଇଯାଇଛି ; କିନ୍ତୁ ପ୍ରତ୍ୟେକ ଦେଶର ପ୍ରତ୍ୟେକ ଲୋକକୁ ଏହି ସୋପାନରେ ପହଞ୍ଚିବାକୁ ହେଲେ ତାକୁ ପ୍ରଥମେ ବହୁ ପରିଶ୍ରମ କରିବାକୁ ହେବ । ଚନ୍ଦ୍ରରେ ପହଞ୍ଚିବା ପୂର୍ବରୁ ଆମେ ନିଜ ଘର, ନିଜ ସ୍କୁଲ, ନିଜ ରାସ୍ତା, ନିଜ ଦେଶକୁ ସଜାଡ଼ିବାକୁ ହେବ । ଆମ ଗାଁ ଗଣ୍ଡାର ଅଭାବଗ୍ରସ୍ତ ରୋଗକ୍ଲିଷ୍ଟ, ଅର୍ଦ୍ଧଭୁକ୍ତ ନିର୍ଜୀବ ଲୋକଙ୍କ ଦ୍ୱାରା ଏହା ସମ୍ଭବ ନୁହେଁ । ତେଣୁ ଯେଉଁ ସମୟରେ ପୃଥିବୀର ଦଳେ ଲୋକ ନିଜ ଇଚ୍ଛାନୁସାରେ ଇତିହାସ ସୃଷ୍ଟି କରି ପାରୁଛନ୍ତି, ଠିକ୍ ସମୟରେ ଆଉଦଳେ ଲୋକ ନିର୍ଜୀବ ନିଶ୍ଚେଷ୍ଟ ଭାବରେ ଲୁହଲୁହ ଢ଼ାଳିଢ଼ାଳି ବହୁ କଷ୍ଟରେ ଆଖିଟେକି ଚାହିଁ ଦେଖିଲାବେଳକୁ ପୁଣି ନିର୍ଜୀବ ହୋଇ ପଡୁଛନ୍ତି । ଅନ୍ୟମାନଙ୍କ ପରି ଇତିହାସ ତିଆରି କରିବାର ଶକ୍ତି ଆହରଣ କରିବାକୁ ହେଲେ ଯେଉଁ ନିରବଚ୍ଛିନ୍ନ ସାଧନା ଦରକାର, ତାହା ସମ୍ଭବ ହୋଇପାରୁ ନାହିଁ ।

ସାଧନା ଭିତର ଦେଇ ହିଁ ମନୁଷ୍ୟତ୍ୱ ଫୁଟି ଉଠେ । ତା'ର ଅନ୍ତର୍ନିହିତ ଶକ୍ତି କ୍ରମେ କ୍ରମେ ଜାଗ୍ରତ ହୁଏ; ମାଂସପେଶୀ ଶକ୍ତ ହୋଇଉଠେ। ମସ୍ତିଷ୍କର ବିକାଶ ସଙ୍ଗେସଙ୍ଗେ ଅଙ୍ଗପ୍ରତ୍ୟଙ୍ଗରେ ସୃଷ୍ଟି କରିବାର ନୂତନ କଳା କୌଶଳ ବିକଶିତ ହୁଏ । ତେବେ ଯାଇ ମନୁଷ୍ୟ ନିଜ ଇଚ୍ଛାନୁସାରେ ଇତିହାସ ଗଢ଼ିବାରେ ସମର୍ଥ ହୋଇପାରିବ । ପାହାଚ ପରେ ପାହାଚ ଗଢ଼ି ହିମାଳୟ ଶିର ଦେଶରେ ପହଞ୍ଚିବା ସମ୍ଭବ, ହାତୀ ଲାଞ୍ଜ ଧରି ଉପରକୁ ପହଞ୍ଚିବା ଅସମ୍ଭବ ।

ଇତିହାସକୁ ନୂତନ ତୂଳୀରେ ଆଙ୍କିବା ଲାଗି ଯେଉଁମାନଙ୍କର ଉତ୍ସାହ ଓ ପ୍ରେରଣା ଅଛି, ସେହିମାନେ ହିଁ ପ୍ରକୃତରେ ଆଗାମୀ ଦୁନିଆର ଉପଯୁକ୍ତ ସ୍ରଷ୍ଟା । ଏହି ନୂତନ ସୃଷ୍ଟିର ପ୍ରକୃତ କର୍ମକର୍ତ୍ତା ହେଉଛନ୍ତି ଯୁଗଯୁଗ ଧରି ଅକ୍ଳାନ୍ତ ପରିଶ୍ରମ କରି ଆସୁଥିବା ସେହି କର୍ମରତ ସର୍ବହରା ଶ୍ରମିକର ଦଳ । ସେହିମାନଙ୍କର ସଂଗଠିତ ଶୋଭାଯାତ୍ରାରେ ପୃଥିବୀ ପରିବର୍ତ୍ତିତ ହୋଇଯିବ । ହାତମୁଠାରୁ ଇସ୍ପାତ୍ ହସିଉଠିବ, ଅଙ୍ଗ ପ୍ରତ୍ୟଙ୍ଗର ଚାଳନାରୁ ଉଦ୍‌ଜାନ ଶକ୍ତି ଝରିଉଠିବ । ଏହା ସାହାଯ୍ୟରେ ହିଁ ପୃଥିବୀ ପୃଷ୍ଠରେ ପ୍ରକୃତ ଇତିହାସ ନୂଆହୋଇ ଲେଖା ହୋଇପାରିବ ; କର୍ମବିମୁଖ, ପରନିର୍ଭରଶୀଳ, ସୁବିଧାବାଦୀ ଚାଟୁକାର ବ୍ୟକ୍ତିମାନଙ୍କଦ୍ୱାରା ନୁହେଁ । ■□■

# ହେତୁବାଦୀ ଜୀବନ ଦର୍ଶନ

ମନୁଷ୍ୟର ବାହ୍ୟଜଗତ ତଥା ନିଜ ସମ୍ବନ୍ଧୀୟ ସମସ୍ତ ପ୍ରକାର ଜ୍ଞାନ ତା'ର ନିଜର ପ୍ରତ୍ୟକ୍ଷୀଭୂତ ଅନୁଭୂତି ଉପରେ ନିର୍ଭର କରିଥାଏ । ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ସେ ଏହି ଅନୁଭୂତି ଅର୍ଜନ କରେ । ତା' ସହିତ ଅନ୍ୟମାନଙ୍କ ସମ୍ପର୍କରେ ଆସି ତା'ର ସମସ୍ତ ପ୍ରକାରର ଅନୁଭୂତିକୁ ସେ ପରିମାର୍ଜିତ ତଥା ପରିବର୍ଦ୍ଧିତ କରିଥାଏ । ସମାଜର ସମଷ୍ଟିଗତ ଜ୍ଞାନ ତାକୁ ଏଥିରେ ବହୁତ ସାହାଯ୍ୟ କରେ ।

ମନୁଷ୍ୟ ଶିଶୁ ଅବସ୍ଥାରୁହିଁ ଯୁକ୍ତିଯୁକ୍ତ କାର୍ଯ୍ୟକାରଣ ସମ୍ପର୍କରେ ବହୁତ ଚେତନଶୀଳ ଥାଏ । କାରଣ ତାହା ମନୁଷ୍ୟର ସହଜାତ ଗୁଣ । ତେଣୁ ସେ ପ୍ରତ୍ୟେକ ପ୍ରତ୍ୟକ୍ଷୀଭୂତ ଅନୁଭୂତିର କାରଣ ବିଷୟରେ ପ୍ରଶ୍ନ କରିଥାଏ । ସୂର୍ଯ୍ୟ କାହିଁକି ପୂର୍ବ ଦିଗରେ ଉଦୟ ହେଉଛି – ରାତି କାହିଁକି ହୁଏ । ସୂର୍ଯ୍ୟ କୁଆଡ଼େ ଯାଉଛି । ହାତ ନିଆଁରେ କାହିଁକି ପୋଡ଼ିଯାଏ – ଇତ୍ୟାଦି ସବୁ ବିଷୟରେ ସେ ଅନବରତ ଅଜସ୍ର ପ୍ରଶ୍ନ କରି ଚାଲିଥାଏ । ବୟସ୍କ ଲୋକେ ତା'ର କେତେକ ପ୍ରଶ୍ନର ସଠିକ ଉତ୍ତର ଦିଅନ୍ତି, କିନ୍ତୁ ସବୁ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ନ ପାରଲେ ପିଲାଙ୍କୁ ଚୁପ୍ କରିଦିଆଯାଏ । ତା'ର କାର୍ଯ୍ୟକାରଣ ସମ୍ପର୍କଗତ ସହଜାତ ଅନୁସନ୍ଧିତ୍ସା କ୍ରମେ ମଉଳିଯାଏ । ତାକୁ ଅନ୍ୟମାନେ ଯେପରି ଭାବରେ କଥାକୁ ସତମିଛ କରି ଯୋଡ଼ାଯୋଡ଼ି କରି କହିଦିଅନ୍ତି, ତାକୁ ସେ ଗ୍ରହଣ କରିନେବାକୁ ବାଧ ହୁଏ । ଏ ପ୍ରକାରର ସାମାଜିକ ଜ୍ଞାନ ମାଧମରେ ବହୁ ପ୍ରକାରର ଯୁକ୍ତିହୀନ ଅନ୍ଧବିଶ୍ୱାସ ତଥା ଅହେତୁକ କାର୍ଯ୍ୟକାରଣଗତ ବିଶ୍ୱାସ ତା'ଠାରେ ଦୃଢ଼ୀଭୂତ ହୋଇଯାଏ । ଯେଉଁ ବିଷୟରେ ମନୁଷ୍ୟ ତା'ର ସୀମିତ ଜ୍ଞାନ ଯୋଗୁ ଯୁକ୍ତିଯୁକ୍ତ ଓ ଅନୁଭୂତିସିଦ୍ଧ ପ୍ରତ୍ୟକ୍ଷ ପ୍ରମାଣ ପାଇପାରେ ନାହିଁ ତାକୁ ଅପ୍ରାକୃତିକ ବା ନୈସର୍ଗିକ ଶକ୍ତି ସାହାଯ୍ୟରେ ବୁଝିବାକୁ ଚେଷ୍ଟା କରେ । ଏହି ମାନସିକ ପ୍ରକ୍ରିୟା ପଛରେ ମଧ ତା'ର କାର୍ଯ୍ୟକାରଣ ଖୋଜି ବାହାର କରିବାର ସେହି ସହଜାତ ଗୁଣ କାମ କରିଥାଏ । ହଠାତ୍ ଦେହ ଖରାପ ହେଲା, ଝାଡ଼ା ବାନ୍ତି ହେଲା, ବସନ୍ତ ନାଡ଼ଫୁଟି ହେଲା ଲୋକ [illegible] ସେସବୁର ପ୍ରକୃତ କାରଣ ଖୋଜି ବାହାର କରିବାର ଅନୁସନ୍ଧିତ୍ସାଗତ ଗୁଣ ଯୋଗୁ ସେ ପ୍ରାକୃତିକ କାରଣ ଜାଣି ନ ପାରିଲେ ଦେବ ଦେବୀ ପ୍ରଭୃତି ଛାୟା ନୈସର୍ଗିକ କାରଣମାନ ସୃଷ୍ଟି କରିଥାଏ । କ୍ରମେ ସେସବୁକୁ ପ୍ରକୃତ କାର୍ଯ୍ୟକାରୀ ଶକ୍ତି ହିସାବରେ ସେ ଗ୍ରହଣ କରିନିଏ । ତା' ନହେଲେ ତା'ର ଅନୁସନ୍ଧିତ୍ସା ପ୍ରବୃତ୍ତି ଯୋଗୁ ଏ ବିଷୟ ନେଇ ତା'ମନରେ ନାନାପ୍ରକାରର ଅନିର୍ଦ୍ଦିଷ୍ଟ ଆଶଙ୍କା ଦେଖାଦେବ । ତେଣୁ ତା'ର ମାନସିକ ସନ୍ତୁଳନ ଲାଗି ସେ ପ୍ରକୃତ କାରଣ ହେଉ ବା ଅଦୃଶ୍ୟ ମନଗଢ଼ା କାରଣ ହେଉ, ତାକୁ ମନ ଭିତରେ ବିଶେଷ ଜ୍ଞାନ ହିସାବରେ ଧରିନିଏ । ଏହି ଦୃଷ୍ଟିରୁ ସବୁ ପ୍ରକାରର ଜ୍ଞାନ ପଛରେ ଏହି ଅନ୍ତର୍ନିହିତ ହେତୁବାଦୀ ମାନସିକତା କାମ କରୁଥାଏ ।

ବହୁ ପରୀକ୍ଷା ନିରୀକ୍ଷା ପରେ ବିଜ୍ଞାନ ବା ବିଶେଷ ଜ୍ଞାନର ପରିସର ବୃଦ୍ଧି ପାଏ। ତା'ଫଳରେ ଏପରି ବହୁ ପ୍ରକାରର ଅବାସ୍ତବ କାର୍ଯ୍ୟକାରଣ ସମ୍ପର୍କରେ ଆମର ବିଶେଷ ଜ୍ଞାନଲାଭ ହୁଏ। ଏହା ମଧ୍ୟ ନିଜର ଏବଂ ଅନ୍ୟମାନଙ୍କର ଅନୁଭୂତି ଭିତ୍ତିକ ଅଭିକ୍ରିୟା ମାଧ୍ୟମରେ ଉପଲବ୍ଧ ହୁଏ। ଏ ପ୍ରକାର ତଥ୍ୟକୁ ବାରମ୍ବାର ବହୁଲୋକଙ୍କଦ୍ୱାରା ପ୍ରମାଣିତ କରାଯାଇପାରେ। ଏହାର କାର୍ଯ୍ୟକାରଣ ସମ୍ପର୍କିତ ବିଷୟରେ କୌଣସି ଅନିର୍ଦ୍ଦିଷ୍ଟତା କିମ୍ବା ଅସ୍ପଷ୍ଟତା ରହିପାରେ ନାହିଁ। ତେଣୁ ବିଜ୍ଞାନର ମୂଳ ଲକ୍ଷ୍ୟ ହେଲା– ସବୁ ଘଟଣା ପଛରେ କାମ କରୁଥିବା ପ୍ରାକୃତିକ କାରଣମାନଙ୍କୁ ଯଥାଯଥ ଭାବରେ ସମସ୍ତଙ୍କ ଆଗରେ ଉଦ୍‌ଘାଟିତ କରିବା। ସୂର୍ଯ୍ୟ କାହିଁକି ପୂର୍ବରେ ଉଦୟ ହୁଏ। ବର୍ଷା କାହିଁକି ହୁଏ। ବସନ୍ତ ରୋଗ କିପରି ହୁଏ। ପୃଥିବୀ କିପରି ହେଲା ପ୍ରଭୃତି ଅଂସଖ୍ୟ ତଥାକଥିତ ଅମୀମାଂସିତ ବିଷୟ କାଳକ୍ରମେ କାର୍ଯ୍ୟକାରଣସିଦ୍ଧ ଜ୍ଞାନ ବିଜ୍ଞାନର ପରିସର ଭିତରକୁ ଆସିଯାଇଛି– ଯୁକ୍ତିଯୁକ୍ତ ଗବେଷଣା ମାଧ୍ୟମରେ ଓ ସଠିକ୍ ଗାଣିତିକ ସୂତ୍ର ସାହାଯ୍ୟରେ ମନୁଷ୍ୟ ନିୟନ୍ତ୍ରିତ ପରିସର ଭିତରେ ବହୁ ବିଷୟ ବାରମ୍ବାର ପ୍ରମାଣିତ କରାଯାଉଛି ଏବଂ ତାକୁହିଁ ଆମେ ବିଜ୍ଞାନସିଦ୍ଧ ନିର୍ଭୁଲ ତଥ୍ୟ ହିସାବରେ ଗ୍ରହଣ କରୁଛୁ।

ବର୍ତ୍ତମାନ ଆମର ପ୍ରତ୍ୟେକ ଅନୁଭୂତି ବିଷୟରେ ପ୍ରମାଣସିଦ୍ଧ କାର୍ଯ୍ୟକାରଣ ସମ୍ପର୍କ ଖୋଜି ବାହାର କରିବାର ସାମଗ୍ରିକ ଉଦ୍ୟମ ଓ ମାନସିକତା ଯୋଗୁ ଏହାକୁ ବିଜ୍ଞାନ ଯୁଗ ବୋଲି କୁହାଯାଉଛି। ଅର୍ଥାତ୍ କୌଣସି ଘଟଣାକୁ ଆମେ ଅପ୍ରାକୃତିକ ବା ନୈସର୍ଗିକ କାରଣ ଯୋଗୁ ଘଟୁଛି ବୋଲି ଆମେ ଆଉ ଗ୍ରହଣ କରିବାକୁ ଆଗ୍ରହୀ ନୋହୁଁ। ବୈଜ୍ଞାନିକ ପ୍ରଣାଳୀ ସାହାଯ୍ୟରେ ଆମେ ଏହାର ପୁଙ୍ଖାନୁପୁଙ୍ଖ ପ୍ରାକୃତିକ କାର୍ଯ୍ୟକାରଣ ସମ୍ପର୍କ ପ୍ରତିଷ୍ଠା କରିବାର ସାମର୍ଥ୍ୟ ଆମର ଅଛି ବୋଲି ଆମର ବଦ୍ଧମୂଳ ଧାରଣା ହୋଇଛି। ବିଜ୍ଞାନ ଯୁଗର ଏହା ଆଉ ଗୋଟିଏ ବୌଦ୍ଧିକ ଉପଲବ୍ଧି। ଫଳରେ କ୍ରମାଗତ ଭାବରେ କୁସଂସ୍କାରଗତ ଅନ୍ଧବିଶ୍ୱାସ ସବୁ କମି କମି ଆସୁଛି। ଏପରିକି ଭଗବାନଙ୍କର ପାରମ୍ପରିକ ଅସ୍ତିତ୍ୱ ତଥା କ୍ଷମତା ବିଷୟରେ ମଧ୍ୟ ବହୁ ପ୍ରଶ୍ନ ଉଠୁଛି। କ୍ରମେ ପୃଥିବୀରେ ହେତୁବାଦୀ ଓ ନାସ୍ତିକଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି। ଏହା କିଛି ବର୍ଷ ପୂର୍ବେ ସମ୍ଭବ ନଥିଲା। ବର୍ତ୍ତମାନ ମଧ୍ୟ ବହୁ ମଧ୍ୟଯୁଗୀୟ କୁସଂସ୍କାରଗ୍ରସ୍ତ ଦେଶରେ ନାଗରିକମାନଙ୍କର ବହୁ ବିଷୟରେ ପ୍ରଶ୍ନ କରିବାର ମୌଳିକ ଅଧିକାର ମଧ୍ୟ ନାହିଁ। ପୁରୁଣା ଯୁଗର ଅହେତୁକବାଦୀ ଦର୍ଶନ ବର୍ତ୍ତମାନ ଯୁଗର ରାଷ୍ଟ୍ରନୀତିରେ ପରିଣତ ହୋଇଛି। ଫଳରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ମୁକ୍ତଚିନ୍ତନ ଏଠାରେ ସମ୍ଭବ ନୁହେଁ। ଏମାନେ ସବୁକ୍ଷେତ୍ରରେ ପଶ୍ଚାତ୍‌ମୁଖୀ ହୋଇ ରହିଛନ୍ତି।

ବ୍ୟକ୍ତି ଓ ସମଷ୍ଟିଗତ ପ୍ରତ୍ୟକ୍ଷ ଅନୁଭୂତି ସହିତ ଆମର ଆଉ ଗୋଟିଏ ପ୍ରକାରର ପ୍ରଖର ମାନସିକ ଶକ୍ତି କାମ କରୁଛି– ତାହା ହେଲା ଆମର କଳ୍ପନା । ପ୍ରତ୍ୟକ୍ଷ ଅନୁଭୂତି ଉପରେ ଏହା ସମ୍ପୂର୍ଣ୍ଣରୂପେ ନିର୍ଭର କରୁଥିଲେ ମଧ୍ୟ ପ୍ରତ୍ୟକ୍ଷୀଭୂତ ଜ୍ଞାନକୁ ନାନା ଅବାସ୍ତବ ଭାବରେ ଯୋଡ଼ାଯୋଡ଼ି କରି ଦେଖିବା ହେଉଛି କଳ୍ପନା ଶକ୍ତିର କାର୍ଯ୍ୟ । ସୁନା

ଓ ପାହାଡ଼ ବିଷୟରେ ଆମର ପ୍ରତ୍ୟକ୍ଷ ଅନୁଭୂତି ଅଛି କିନ୍ତୁ ଏହି ଦୁଇଟିକୁ ଯୋଡ଼ି ଆମେ କଳ୍ପନା କରିପାରିବା ସୁନା ପାହାଡ଼। ସୁନା ପାହାଡ଼କୁ କେବଳ କଳ୍ପନା ଜଗତରେ ଦେଖିଲେ କିଛି କ୍ଷତି ନାହିଁ। ତାହା ମଧ୍ୟ ମନୁଷ୍ୟର ସହଜାତ ଗୁଣ; କିନ୍ତୁ ପ୍ରତ୍ୟକ୍ଷ ଅନୁଭୂତି ବାହାରେ ଏପ୍ରକାର ବସ୍ତୁର ସ୍ଥିତି ବିଷୟରେ ବିଶ୍ୱାସ ସ୍ଥାପନ କରିବା ହେଉଛି କୁସଂସ୍କାରଗତ ଭ୍ରମ ଧାରଣା। କବି ବାସ୍ତବ ଜଗତର ମାନସିକ ଛବିକୁ ନାନାଭାବରେ ଅତିରଞ୍ଜିତ କରି ସଜାଇବାରେ ଆନନ୍ଦ ପାଏ; କିନ୍ତୁ ତାହା ବାସ୍ତବ ବୋଲି ଭାବିବା ନିଶ୍ଚିତ ଭାବରେ ଭ୍ରମାତ୍ମକ ଚିନ୍ତା। ସୃଜନଶୀଳ କଳ୍ପନା ଜଗତରେ ଆନନ୍ଦ ପାଇବା ନିଶ୍ଚିତ ଭାବରେ ମନୁଷ୍ୟ ପକ୍ଷରେ ସୁଖପ୍ରଦ ହୁଏ; କିନ୍ତୁ ସେସବୁକୁ ବାସ୍ତବ ବୋଲି ଭାବିବା ମୂର୍ଖତା। ତେଣୁ ଏହି ଦୁଇପ୍ରକାରର ମାନସିକ ପ୍ରକ୍ରିୟାର ଗୁଣାତ୍ମକ ବୈଶିଷ୍ଟ୍ୟ ସମ୍ପୂର୍ଣ୍ଣରୂପେ ଅଲଗା। ତଥାପି ଆମର ବହୁ ବିଶ୍ୱାସ ଏପ୍ରକାର ଭ୍ରାନ୍ତିମୂଳକ କାଳ୍ପନିକ ମାନସିକତା ଯୋଗୁ ଦେଖାଦେଇଥାଏ।

ପୃଥିବୀର ସବୁ ସୁଖଦାୟକ ଇପ୍ସିତ ଜିନିଷକୁ ଏକାଠିକରି ସ୍ୱର୍ଗର କଳ୍ପନା ଏବଂ ସବୁ ଅପ୍ରୀତିକର ଦୁଃଖଦାୟକ ଘଟଣାକୁ ନାରକୀୟ ଜଗତର ବାସ୍ତବତା ବିଷୟରେ ବିଶ୍ୱାସ ନିଶ୍ଚିତ ଭାବରେ ଭ୍ରମାତ୍ମକ ଚିନ୍ତା। କାରଣ ଏହାର କୌଣସି ଯୁକ୍ତିଯୁକ୍ତ ପ୍ରମାଣ କେହି ଦେବାରେ ସମର୍ଥ ହେବେ ନାହିଁ। ତଥାପି ପୃଥିବୀର ଅଧିକାଂଶ ଧର୍ମବିଶ୍ୱାସ ତଥା ଈଶ୍ୱର ଉପାସନାଗତ କାର୍ଯ୍ୟକଳାପ ଏପରି ଅବାସ୍ତବ କଳ୍ପନା ଉପରେ ନିର୍ଭର କରିଥାଏ। ବାସ୍ତବ ଦୁନିଆରେ ଜଣେ ହିତାକାଂକ୍ଷୀ ବନ୍ଧୁ ଆମର ବହୁ ଉପକାର କରେ। ଜଣେ ଶକ୍ତିଶାଳୀ ଲୋକକୁ ଖୋସାମତ କଲେ ବା ଲାଞ୍ଚ ଦେଲେ ଯେପରି ଆମର ବେଳେବେଳେ କିଛି ଲାଭ ହୁଏ, ସେହିପରି ଭାବରେ ଆମେ କାଳ୍ପନିକ ଜଗତରେ ଆମର ଅସମ୍ପୂର୍ଣ୍ଣ ଇଚ୍ଛାମାନ ପୂରଣ ଉଦ୍ଦେଶ୍ୟରେ ଗୋଟିଏ ସର୍ବଶକ୍ତିମାନ ଭଗବାନ ସୃଷ୍ଟି କରିଥାଉ। ଏ ବିଷୟରେ ବାରମ୍ବାର ଦ୍ୱନ୍ଦ୍ୱାତ୍ମକ ଘଟଣାବଳୀ ଘଟି ଯାଉଥିଲେ ମଧ୍ୟ ଆମର ଅସହାୟତାଗତ ଭୟ ଓ ଉଦ୍‌ବେଗ ଯୋଗୁ ଆମେ ଏସବୁ ଘଟଣାକୁ ଭଗବାନଙ୍କର ଅସ୍ତିତ୍ୱ ବିରୁଦ୍ଧରେ ପ୍ରମାଣ ବୋଲି ଗ୍ରହଣ କରିବାରେ ଅସମର୍ଥ ହେଉ। ଶହ ଶହ ସଂଖ୍ୟାରେ ଭକ୍ତମାନେ ଭଗବାନଙ୍କୁ ପ୍ରାର୍ଥନା କଲାବେଳେ ମନ୍ଦିର ଭାଙ୍ଗିପଡ଼େ। ସବୁଠୁ ନିଷ୍ଠୁର ପ୍ରକୃତିର ଲୋକ ଧନ ସମ୍ପତ୍ତିର ଅଧିକାରୀ ହୋଇପାରନ୍ତି ଓ ଧର୍ମପରାୟଣ ଲୋକ ଗରିବ ଭାବରେ କଷ୍ଟ ଯନ୍ତ୍ରଣା ଭିତର ଦେଇ ସାରାଜୀବନ ଯାପନ କରେ। ବିନାକାରଣରେ ଲକ୍ଷ ଲକ୍ଷ ଇହୁଦୀକୁ ହିଟ୍‌ଲର ମାରିଦେଇ ପାରେ, ତଥାପି ସେ ଚର୍ଚ୍ଚରେ ପ୍ରାର୍ଥନା କରେ। ଭଗବାନଙ୍କ ନାମରେ ବହୁ ଧର୍ମପରାୟଣ ଲୋକ ବିଧର୍ମୀଙ୍କୁ ଧ୍ୱଂସ କରି ସ୍ୱର୍ଗବାସ କାମନାକୁ ଚରିତାର୍ଥ କରନ୍ତି – ତଥାପି ଭଗବାନଙ୍କର ଅସ୍ତିତ୍ୱ ତଥା ଦୟାଶୀଳତା ବିଷୟରେ ଆମେମାନେ ଉଦୟରେ ପ୍ରଶ୍ନ ଉଠାଇ ପାରୁନା। ବିଭିନ୍ନ ଧର୍ମବିଶ୍ୱାସୀଙ୍କ ଭିତରେ ଭଗବାନଙ୍କର ଗୁଣଗାରିମା ସ୍ୱର୍ଗ ନରକ ମନୁଷ୍ୟର କୃତକାର୍ଯ୍ୟର ସିଦ୍ଧି ଅସିଦ୍ଧି ସମ୍ପର୍କରେ ବହୁତ ତାତ୍ତ୍ୱିକ ସଂଘର୍ଷ ଥିଲେ ମଧ୍ୟ ମନୁଷ୍ୟର କଳ୍ପନା ଜଗତରେ

ତା'ର କଳ୍ପିତ ଭଗବାନଙ୍କୁ ସେ ଛାଡ଼ିପାରେ ନାହିଁ। ବିଧର୍ମୀ ବା ପ୍ରଚଳିତ ଧର୍ମ ଶାସ୍ତ୍ର ବିଷୟରେ ବିରୁଦ୍ଧମତ ପ୍ରକାଶ କରୁଥିବା ବ୍ୟକ୍ତିକୁ ମାରିଦେବାଦ୍ୱାରା ତା'ର ସ୍ୱର୍ଗପ୍ରାପ୍ତି ଅବଶ୍ୟମ୍ଭାବୀ ବୋଲି କେତେକ ଧର୍ମ କହୁଥିଲେ ସୁଦ୍ଧା ବହୁଲୋକ ତାକୁ ବିନାଦ୍ୱିଧାରେ ଗ୍ରହଣ କରିନିଅନ୍ତି।

ଭଗବାନଙ୍କୁ ମନୁଷ୍ୟ କେବଳ ଭୟ କରେ- ଖୁବ୍ କମ୍ ଲୋକ ତାଙ୍କୁ ଭଲପାଆନ୍ତି। ଅଶିକ୍ଷିତ ଲୋକଙ୍କୁ ବହୁ ଭାବରେ ଏପ୍ରକାର ଅବାସ୍ତବ କଳ୍ପନା ନିୟନ୍ତ୍ରିତ କରୁଥାଏ। ବହୁ ବିଜ୍ଞ ଓ ପଣ୍ଡିତ ଲୋକଙ୍କ ମନ ଭିତରେ ଦୁଇଟି ବ୍ୟକ୍ତିତ୍ୱ ପାଖାପାଖି କାମ କରୁଥାଏ। ଗୋଟିଏ ବ୍ୟକ୍ତିତ୍ୱ ପ୍ରତ୍ୟକ୍ଷୀଭୂତ ତଥା ପ୍ରମାଣସିଦ୍ଧ ଜ୍ଞାନ ଉପରେ ଗବେଷଣା କରୁଥାଏ; କିନ୍ତୁ ବ୍ୟକ୍ତିତ୍ୱର ଅପର ଅଂଶଟି ଏପରି ଉଦ୍‌ବେଗମୂଳକ ଭ୍ରାନ୍ତ କାଳ୍ପନିକ ଜଗତରେ ବିଚରଣ କରୁଥାଏ। କାରଣ ନିଜର ବହୁ ପାଶବିକ ପ୍ରବୃତ୍ତିକୁ ବର୍ତ୍ତମାନ ଦୁନିଆରେ ଏବଂ ମୃତ୍ୟୁ ପରେ ସ୍ୱର୍ଗରେ ମଧ୍ୟ ଚରିତାର୍ଥ କରିବାର ବିରାଟ ବାସନା ତା'ଠାରେ କାମ କରୁଥାଏ।

ପ୍ରକୃତରେ ଦେଖିବାକୁ ଗଲେ ପ୍ରାକୃତିକ ଘଟଣାବଳୀ ଭିତରେ କାର୍ଯ୍ୟକାରଣ ସମ୍ପର୍କ ଖୋଜି ବାହାର କରିବା ସୁବିଧାଜନକ। ଏ ବିଷୟରେ ଧାରଣା କରିବା ମଧ୍ୟ ସହଜସାଧ୍ୟ। କାରଣ ତାହା ପ୍ରମାଣଭିତ୍ତିକ ଜ୍ଞାନାନୁଭୂତି ଏବଂ ବାସ୍ତବକ୍ଷେତ୍ରରେ ତାହା ପ୍ରତିପାଦନୀୟ। କିନ୍ତୁ ଯେଉଁମାନେ କଠୋର ବାସ୍ତବତା ଭିତରୁ ପଳାଇଯିବାକୁ ଚାହାଁନ୍ତି, ସେମାନେ ହିଁ ଅବାସ୍ତବ କାଳ୍ପନିକ ଜଗତକୁ ଯିବାରେ ଆନନ୍ଦ ପାଆନ୍ତି। କାରଣ ସେଠାରେ ପ୍ରମାଣ କଲା ପରି କୌଣସି ଉଦ୍ୟମର ଆବଶ୍ୟକତା ନାହିଁ। ଉଦାହରଣସ୍ୱରୂପ ସମସ୍ତ ଜୀବନ୍ତବସ୍ତୁ ବା ଜୀବଜଗତର କାଳକ୍ରମେ ମୃତ୍ୟୁ ହୋଇଥାଏ ଏବଂ ସେମାନେ ବିଭିନ୍ନ ପ୍ରାକୃତିକ ଉପାଦାନରେ ପରିଣତ ହୋଇଯାଆନ୍ତି। ଏହା ସାଧାରଣ ପ୍ରତ୍ୟକ୍ଷୀଭୂତ ଅନୁଭୂତି ଏବଂ ଏହା ସହଜରେ ବୋଧଗମ୍ୟ ମଧ୍ୟ; କିନ୍ତୁ ମନୁଷ୍ୟ ମରିଗଲା ପରେ ତା' ଦେହରୁ ଗୋଟିଏ ଅଶରୀରୀ ଆତ୍ମା ବାହାରି ଭୂତ ପ୍ରେତ ଭାବରେ ଦେଖାଦେବା ବା ସ୍ୱର୍ଗ ନରକକୁ ଯିବା ସମ୍ପୂର୍ଣ୍ଣରୂପେ କାଳ୍ପନିକ ଓ ଅବାସ୍ତବ। ଏହାର କୌଣସି ପ୍ରମାଣ ନଥିଲେ ସୁଦ୍ଧା ଏବଂ ଏହାର ପ୍ରତିପାଦନୀୟତା ଅସମ୍ଭବ ହେଲେ ସୁଦ୍ଧା ବହୁ ଲୋକ ଏହି ବିଶ୍ୱାସକୁ ଛାଡ଼ିପାରୁନାହାନ୍ତି। ଏ ବିଷୟରେ ବହୁ ଭ୍ରମାତ୍ମକ ତଥ୍ୟ ଯୁଗ ଯୁଗ ଧରି ପ୍ରମାଣିତ ହୋଇପାରୁ ନଥିଲେ ସୁଦ୍ଧା ଏବଂ ତାର୍କିକ ଦୃଷ୍ଟିକୋଣରୁ ଏହା ଅସଙ୍ଗତ ଓ ଯୁକ୍ତିହୀନ ବୋଲି ପ୍ରମାଣିତ ହେଲେ ସୁଦ୍ଧା – ମନୁଷ୍ୟ ନିଜକୁ ଏତେ ଶ୍ରେଷ୍ଠ ବୋଲି ମନକରେ ଯେ ସେ ମଲା ପରେ ଅନ୍ୟ ଜୀବଜନ୍ତୁଙ୍କ ପରି ସମ୍ପୂର୍ଣ୍ଣ ରୂପେ ନିଶ୍ଚିହ୍ନ ହୋଇଯିବ, ତାହା ଗ୍ରହଣ କରିବାରେ ତା'ର ଆତ୍ମସମ୍ମାନ ତଥା ଅହଂ ଭାବକୁ ବାଧେ। ସେ ଏତେ ବିଜ୍ଞ, ଏତେ ବଡ଼ ବିଜ୍ଞାନୀ, ସ୍ୱନାମଧନ୍ୟ ମହାପୁରୁଷ ବା ଧର୍ମପ୍ରଚାରକ ଯେ ମଲା ପରେ ଅନ୍ୟ ଜୀବଜନ୍ତୁଙ୍କ ପରି ବିଭିନ୍ନ ପ୍ରାକୃତିକ ଉପାଦାନ ଭିତରେ ସେ ବିଲୀନ ହୋଇଯିବ – ତା'ର ଆଉ କୌଣସି ଅସ୍ତିତ୍ୱ ରହିବ ନାହିଁ-ଏପରି

ଚିନ୍ତା ତା'ର ଅହଂ ପ୍ରତି ଗୋଟିଏ ବିରାଟ ଧକ୍କା। ସେ ସ୍ୱପ୍ନ ଦେଖେ ଯେ ତା'ର ମହାମାନବୀୟ ଚିନ୍ତାଧାରା ଓ ନୈସର୍ଗିକ ସ୍ୱପ୍ନାବଳୀ ନିଶ୍ଚିତ ଭାବରେ ଅନ୍ୟ ରାଜ୍ୟରେ ପୁଣି ଥରେ ପ୍ରତିଭାତ ହେବ। ସେ ପୁଣି ଥରେ ତା'ର ଈପ୍ସିତ ଐଶ୍ୱର୍ଯ୍ୟ ଅନ୍ୟ ଏକ ରାଜ୍ୟରେ ଉପଭୋଗ କରିବ। ଯେତିକି ଅସୁବିଧା ଏ ଜଗତରେ ଥିଲା ସେଠାରେ ସେସବୁ ନଥିବ। ସେଠାରେ ବାର୍ଦ୍ଧକ୍ୟ ନଥିବ। ଦୁଃଖ, ଯନ୍ତ୍ରଣା, ଅଶାନ୍ତି ନଥିବ। ଚିର ଯୌବନ ରାଜତ୍ୱ କରୁଥିବ– ଫୁଲ ଫୁଟି ମଉଳୁ ନଥିବ– ଅପ୍ସରାମାନେ ତା'ର ମନୋରଞ୍ଜନ କରୁଥିବେ। ଅବଶ୍ୟ ପୁରୁଷପ୍ରଧାନ ସ୍ୱର୍ଗ ରାଜ୍ୟରେ ସ୍ତ୍ରୀ ଆତ୍ମାମାନଙ୍କ ପାଇଁ ଚିର ଯୌବନବନ୍ତ ପୁରୁଷ ସାଥୀଙ୍କର ବିଷୟରେ ଉଲ୍ଲେଖ ନାହିଁ– ଭଗବାନ ମଧ୍ୟ ପୁରୁଷ। ତେଣୁ ତାଙ୍କ ରାଜ୍ୟରେ ଅପ୍ସରା ଓ ପରୀମାନେ ହିଁ ରହିବା କଥା। ସ୍ତ୍ରୀମାନେ ସ୍ୱର୍ଗକୁ ଯାଇପାରନ୍ତି କି ନାହିଁ, ତାହା ବି ସନ୍ଦେହାତ୍ମକ। ଏହା ବୈଜ୍ଞାନିକ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣ ଅସଂଗତ ତଥା ବିଭ୍ରାନ୍ତିକର ହେଲେ ମଧ୍ୟ ମନୁଷ୍ୟର ପ୍ରଚଣ୍ଡ ଅହଂଭାବ ଯୋଗୁ ତା'ର ଅବିନାଶୀ ଆତ୍ମା ବିଷୟରେ ସେ ଅନବରତ କଳ୍ପନା କରିଆସିଛି। ମନୁଷ୍ୟଟିଏ ମରିଗଲା ପରେ ତା'ର ବିଭିନ୍ନ ଉପାଦାନ ବାହାର ଉପାଦାନ ସହିତ ବିଲୀନ ହେବାର ପ୍ରତ୍ୟକ୍ଷ ତଥା ବୋଧଗମ୍ୟ ଅନୁଭୂତି ଥିଲେ ସୁଦ୍ଧା ସେ ଆତ୍ମାର ଭୂତଟିକୁ ଭୁଲିପାରୁନାହିଁ। ଗୋଟିଏ ସମରୂପୀ ଉପାଦାନ ସହିତ ଅନ୍ୟ ଉପାଦାନଟିଏ ମିଶିଯିବା ବିଷୟରେ ବୁଝିବା କେତେ ସହଜ, ତଥାପି ବହୁ କଠିନ ଦାର୍ଶନିକ ତତ୍ତ୍ୱର ଅର୍ଥହୀନ ମହାର୍ଘ ଶବ୍ଦ ଆଡ଼ମ୍ବର ମାଧ୍ୟମରେ ଅନୁଭୂତି ବହିର୍ଭୂତ ତଥା ଅପ୍ରତିପାଦନୀୟ ଏ ପ୍ରକାରର ବିଷୟବସ୍ତୁର କେବଳ ବାଚନିକ ପ୍ରମାଣ କରିବା ଉଦ୍ୟମ ବର୍ତ୍ତମାନ ସୁଦ୍ଧା ଦେଖାଯାଏ। ମନୁଷ୍ୟକୁ ଭଗବାନ ସୃଷ୍ଟି କରିବା ପରିବର୍ତ୍ତେ ଭୂତ ଓ ଭଗବାନଙ୍କୁ ମନୁଷ୍ୟ କଳ୍ପନାହିଁ ସୃଷ୍ଟି କରିଛି। ଫଳରେ ଏହା ଯୁଗ ଯୁଗ ଧରି ଅପ୍ରତିପାଦନୀୟ ହୋଇ ରହିଯାଇଛି।

ଜଣେ ଯଦି ଗୋଟିଏ ଅବାସ୍ତବ କାଳ୍ପନିକ ଚିତ୍ରକୁ ସଦାସର୍ବଦା ମନ ଭିତରେ ରଖେ, ତାହାହେଲେ ସେ ଛବିଟି କାଳକ୍ରମେ ତା' ଆଗରେ ଆସି ଦେଖାଦେବାର ସମ୍ଭାବନା ରହିଛି। ସେ ଏବଂ ତା'ପରି ଆଉ କେତେକ ଲୋକ ଯେଉଁମାନେ ଏପରି ଚିତ୍ରକୁ କାଳ୍ପନିକ ଚକ୍ଷୁରେ ସବୁବେଳେ ଦେଖୁଥାଆନ୍ତି, ସେମାନଙ୍କୁ କ୍ରମେ ତାହା ବାସ୍ତବ ବୋଲି ଜଣାଯାଏ।

ଅନ୍ୟ ମତାବଲମ୍ବୀ ଲୋକଙ୍କ ଆଗରେ ଏ ପ୍ରକାର ଭ୍ରମାତ୍ମକ ପ୍ରତିଛବି ଦେଖାଦେବା ସମ୍ଭାବନା ନଥାଏ। ଭୂତ ବା ଭଗବାନରେ ବିଶ୍ୱାସୀ ଲୋକେହିଁ ଏମାନଙ୍କ ବିଷୟରେ ଭ୍ରମ ପ୍ରତ୍ୟକ୍ଷ କରିଥାଆନ୍ତି। ଦଳେ ଲୋକ ଏକାଠି ଭୂତ ଦେଖନ୍ତି ନାହିଁ। ଜଣେ କିମ୍ବା ଦୁଇଜଣ ଦେଖନ୍ତି– ସେହିପରି ମଧ୍ୟ ଭଗବାନଙ୍କର ଆବିର୍ଭାବ ଜଣଙ୍କ ପାଖରେ ହୋଇଥାଏ। ଏହିପରି ବହୁ ବ୍ୟକ୍ତିଗତ ଓ କ୍ଷୁଦ୍ର ସମଷ୍ଟିଗତ ଭ୍ରମାତ୍ମକ ବିଶ୍ୱାସ

ସେମାନଙ୍କ ପାଇଁ ଗୋଟିଏ ମାୟାଜଗତ ସୃଷ୍ଟି କରିଥାଏ। ବ୍ୟର୍ଥତାର ସମ୍ମୁଖୀନ ହେଲେ ସେମାନେ ଏହି କାଳ୍ପନିକ ଜଗତର ଆଶ୍ରୟ ନିଅନ୍ତି। ନିଃସହାୟତାଜାତ ଉଦ୍‌ବିଗ୍ନତା ହିଁ ଏହି ଜଗତକୁ ପରିପୁଷ୍ଟ କରେ।

ମନୁଷ୍ୟର କଳ୍ପନାଶକ୍ତି ଯେ ସବୁବେଳେ ଏହିପରି ଅପାର୍ଥିବ ଭ୍ରାନ୍ତ ଦୁନିଆ ସୃଷ୍ଟି କରିଥାଏ, ତାହା ନୁହେଁ। ଏହା ପ୍ରକୃତରେ ମନୁଷ୍ୟର ସହଜାତ ସୃଜନଶୀଳତାର ମୂଳ ଉସ। ବହୁ ତାତ୍ତ୍ୱିକ ଚିନ୍ତାଧାରା, ସାହିତ୍ୟ, ବିଜ୍ଞାନ ପ୍ରଭୃତି ଯୁଗାନ୍ତକାରୀ ସୃଜନଶୀଳ ପ୍ରତିଭା ଏହି କାଳ୍ପନିକ କ୍ରିୟା-ପ୍ରକ୍ରିୟା ଭିତରୁ ଉଦ୍ଭବ। ଆନନ୍ଦୋଲ୍ଲାସଭିତ୍ତିକ ଯୁଗେକାର ମୂଳ ପିଣ୍ଡ ହେଲା ଏହି କଳ୍ପନାଜଗତ। ବୈଜ୍ଞାନିକ ଓ ଦାର୍ଶନିକ ତଥ୍ୟାବଳୀ ଏହି କ୍ରିୟାଶୀଳ ମାନସିକ ଶକ୍ତି ଉପରେ ନିର୍ଭର କରେ। ପ୍ରଚଣ୍ଡ ବୁଦ୍ଧିମତ୍ତା ଓ ବିଚକ୍ଷଣ ପ୍ରଜ୍ଞାର ମୂଳଭିତ୍ତି ହେଲା– ଏହି କଳ୍ପନାଶକ୍ତି। ତେଣୁ ସୃଜନଶୀଳ କଳ୍ପନା ସହିତ ତାର୍କିକ ସିଦ୍ଧାନ୍ତ ଓ ପ୍ରତିପାଦନୀୟ ଜ୍ଞାନବିଜ୍ଞାନର ଅନ୍ତର୍ନିହିତ କ୍ରିୟାଶୀଳ ସମ୍ପର୍କ ରହିଛି; କିନ୍ତୁ ପାରସ୍ପରିକ ସମ୍ପର୍କରହିତ ଅହେତୁକ ତଥା ଅପ୍ରତିପାଦନୀୟ କଳ୍ପନା ହିଁ ମନୁଷ୍ୟକୁ ନାନାଭାବରେ ଉଦ୍‌ଭ୍ରାନ୍ତ କରୁଛି।

ବିଚାରଶୀଳ ବୁଦ୍ଧି ଓ ଯୁକ୍ତିଯୁକ୍ତ ବିଶ୍ଳେଷଣ ମାଧ୍ୟମରେ ବହୁ ସହସଂଗତ ଚିନ୍ତାଧାରା ଉପସ୍ଥାପିତ ତଥା ପ୍ରତିପାଦିତ କରାଯାଇପାରେ। ଏହା ବୌଦ୍ଧିକ ଶକ୍ତିର ସହଜାତ ଗୁଣ। କୌଣସି କଥା ପ୍ରମାଣସିଦ୍ଧ ନହେଲେ କିମ୍ବା ବାସ୍ତବ ସହିତ ଓ ଅନ୍ୟାନ୍ୟ ପ୍ରମାଣିତ ତଥ୍ୟ ସହିତ ଅସଂଗତ ହେଲେ ତାହା ଗ୍ରହଣୀୟ ହୁଏ ନାହିଁ। ବୈଜ୍ଞାନିକମାନେ ଏହି ଉପାୟରେ ବହୁ ଉପାଦେୟ ତଥ୍ୟାତଥ୍ୟ ପ୍ରତିପାଦିତ କରିପାରୁଛନ୍ତି। ବାସ୍ତବ ଜଗତର ବହୁ ଅନ୍ତର୍ନିହିତ ରହସ୍ୟ ଏହି ଉପାୟରେ ଉଦ୍‌ଘାଟିତ ହୋଇପାରୁଛି। ତର୍କସିଦ୍ଧ ଗାଣିତିକ ସୂତ୍ରମାନ ଏପରି ଆବିଷ୍କାରରେ ସାହାଯ୍ୟ କରୁଛି। ଚନ୍ଦ୍ରପୃଷ୍ଠରେ ମନୁଷ୍ୟର ପଦାର୍ପଣ, ବୃହସ୍ପତି ଗ୍ରହରେ ଉଲ୍‌କା ଖଣ୍ଡମାନଙ୍କର ପୂର୍ବନିର୍ଦ୍ଧାରିତ ସଂଘାତଜାତ ବିସ୍ଫୋରଣ ପ୍ରଭୃତି ବହୁତ ଉଦାହରଣ ଏ ସମ୍ପର୍କରେ ଦିଆଯାଇପାରେ।

ଆମର ଚେତନାଶକ୍ତି ପ୍ରକୃତିରୁ ଉଦ୍ଭବ ହୋଇଥିବାରୁ ପ୍ରାକୃତିକ ନିୟମଗୁଡ଼ିକ ସଠିକଭାବରେ ବୁଝିବାରେ ଆମେ ସକ୍ଷମ ହୋଇପାରୁଛେ। ତେଣୁ ସମସ୍ତ ବୈଜ୍ଞାନିକ ଚିନ୍ତାଧାରା ପ୍ରତ୍ୟକ୍ଷୀଭୂତ ଅନୁଭୂତି ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ। ପ୍ରତ୍ୟକ୍ଷ ଅନୁଭୂତିରେ ଏହାର ଜନ୍ମ ଏବଂ ଏହା ହିଁ ହେଉଛି ତା'ର ଚରମ ପ୍ରତିପାଦନ କ୍ଷେତ୍ର। ପ୍ରତ୍ୟକ୍ଷ ଅନୁଭୂତିରୁ କଳ୍ପନା ଓ ସମସ୍ତ ପ୍ରକାରର ବୌଦ୍ଧିକ ପ୍ରକ୍ରିୟା ଉଦ୍ଭୂତ ଏବଂ ଏହି ପ୍ରକ୍ରିୟାଗୁଡ଼ିକର ସମନ୍ୱିତ ପାରସ୍ପରିକ କ୍ରିୟାଶୀଳତା, ସମସଂଗତ ତଥା ପ୍ରତିପାଦନୀୟତା ଉପରେ ହିଁ ଆମର ସମସ୍ତ ଜ୍ଞାନବିଜ୍ଞାନ ଆଧାରିତ। ତା'ହେଲେ ଯାଇ ଦ୍ୱନ୍ଦ୍ୱହୀନ ନିର୍ଭୁଲ ତଥ୍ୟ ମାଧ୍ୟମରେ ଆମେ ଆମର ସମସ୍ତ ପ୍ରକାରର ସମସ୍ୟାର ସମାଧାନ କରିପାରିବା।

■□■

# ମାନସିକ ପ୍ରକ୍ରିୟା

କୋଟି କୋଟି ବର୍ଷ ତଳେ ଏହି ପୃଥିବୀର ଉତ୍ପତ୍ତି ହୋଇଥିଲେ ହେଁ ତା'ର ବହୁ କୋଟି ବର୍ଷ ପରେ ହିଁ ଏଠାରେ ପ୍ରାଣୀଜଗତ ସମ୍ଭବ ହେଲା। ତା'ର ବହୁ ନିୟୁତ ବର୍ଷ ପରେ ପୃଥିବୀରେ ବାନର ଜାତୀୟ ଉନ୍ନତ ଧରଣର ପଶୁ ଶ୍ରେଣୀ ଦେଖାଦେଲା। ମାତ୍ର ସାମାନ୍ୟ କେତେ ଲକ୍ଷ ବର୍ଷ ପୂର୍ବେ ମନୁଷ୍ୟ ଜାତୀୟ ଜୀବ ଆଗ ଦୁଇହାତ ଉପରକୁ ଟେକି ପଛଗୋଡ଼ରେ ଚାଲିବାକୁ ଆରମ୍ଭ କଲା। ମାଟି ପଥର ଗୁହା ଭିତରେ ବସବାସ କରି ଶିଖିଲା। ଫଳମୂଳ ସଂଗ୍ରହ କରି ଜୀବନ ଧାରଣ କଲା। କାଳକ୍ରମେ ସେ ଚାଷବାସ କରି ଶିଖିଲା, ଗାଁ ଗଣ୍ଡା ବସାଇଲା ଏବଂ ତା ସହିତ କ୍ରମବର୍ଦ୍ଧିଷ୍ଣୁ ସାମାଜିକ ପରିବେଶ ସୃଷ୍ଟି ହେଲା। ଏହିପରି ଭାବରେ ପ୍ରାକୃତିକ ପରିବେଶ ସହିତ ପ୍ରତିଯୋଜନ ପ୍ରକ୍ରିୟା ମାଧ୍ୟମରେ ତା'ର ମସ୍ତିଷ୍କର କ୍ରମବିକାଶ ହେଲା। ବର୍ତ୍ତମାନ ତା'ର ବିକଶିତ ବୁଦ୍ଧି ଓ ମାଂସପେଶୀୟ କୁଶଳୀ ବ୍ୟବହାର ଯୋଗୁ ସେ ଅଭୂତପୂର୍ବ ବୈଜ୍ଞାନିକ ଯୁଗରେ ଆସି ପହଞ୍ଚି ପାରିଛି ; କିନ୍ତୁ ଫଳମୂଳ ସଂଗ୍ରହ ସମୟରୁ ନିଜର ଖାଦ୍ୟଦ୍ରବ୍ୟ ଉତ୍ପାଦନ କରିବା ପର୍ଯ୍ୟନ୍ତ ମନୁଷ୍ୟକୁ ବହୁ ଲକ୍ଷ ବର୍ଷ ଲାଗି ଯାଇଥିଲା। ଅଥଚ ତା ତୁଳନାରେ କମ୍ ସମୟ ଭିତରେ ସେ କଳ୍ପନାତୀତ ଭାବରେ ବୌଦ୍ଧିକ ଓ ସାମାଜିକ ଶ୍ରେଷ୍ଠ ସୋପାନରେ ଆସି ପହଞ୍ଚିଛି।

ପରିବର୍ତ୍ତନଶୀଳ ପରିବେଶ ସହିତ ପ୍ରତିଯୋଜନ କ୍ରିୟା-ପ୍ରକ୍ରିୟା ମାଧ୍ୟମରେ ତା'ର ବିବର୍ତ୍ତନଶୀଳ ମସ୍ତିଷ୍କର ସ୍ନାୟୁ ବିନ୍ୟାସ ଜଟିଳରୁ ଜଟିଳତର ହୋଇ ଚାଲିଛି। ବିବର୍ତ୍ତନ ପ୍ରକ୍ରିୟାର ମୂଳତତ୍ତ୍ୱ ହେଲା ଯେ ଜୀବଜନ୍ତୁର ପରବର୍ତ୍ତୀ ସମୟର ଜଟିଳ କ୍ରିୟା-ପ୍ରକ୍ରିୟା ତା'ର ପୂର୍ବବର୍ତ୍ତୀ ସରଳ ଯାନ୍ତ୍ରିକ ବିନ୍ୟାସରୁ ଉତ୍ତରୋତ୍ତର ଉନ୍ନତି ହୋଇ ଚାଲେ। ସେହି ଅନୁସାରେ ମନୁଷ୍ୟର ବର୍ତ୍ତମାନ ଅବସ୍ଥାର ଜଟିଳ ମାନସିକତା ଅତୀତର ସରଳ ଜୈବିକ ସଂସ୍ଥା ଭିତରୁ କ୍ରମ-ବିବର୍ତ୍ତନ ସୋପାନ ଦେଇ ଗଢ଼ି ଉଠିଛି।

ଅତି ବୁଦ୍ଧିମାନ ଓ ମନ୍ଦିତ ବୁଦ୍ଧିସଂପନ୍ନ ଦୁଇ ଜଣଙ୍କୁ ତୁଳନା କଲେ ସେମାନଙ୍କର ମସ୍ତିଷ୍କର ତାନ୍ତବୀୟ ବିନ୍ୟାସରେ ବହୁ ତଫାତ ପରିଲକ୍ଷିତ ହୁଏ। ତାନ୍ତବୀୟ ଜଟିଳତା ଅନୁସାରେ ବୁଦ୍ଧିର ଗୁଣାତ୍ମକ ବିକାଶ ସମ୍ଭବ ହୋଇଥାଏ। ଫଳରେ ସେମାନଙ୍କର ବ୍ୟାବହାରିକ କ୍ଷେତ୍ରରେ ବହୁ ବ୍ୟତିକ୍ରମ ଦେଖାଦିଏ। ସେହିପରି ଜଣେ ପ୍ରଚଣ୍ଡ ବୁଦ୍ଧିମାନ ବ୍ୟକ୍ତିର କେତେକ ବିଶେଷ ଧରଣର ରୋଗ କିମ୍ବା ଆଘାତ ଫଳରେ ତା'ର ମସ୍ତିଷ୍କର ଯାନ୍ତ୍ରିକ ତଥା ରାସାୟନିକ ବିନ୍ୟାସ ବଦଳି ଯାଏ। ତା' ଫଳରେ ବୌଦ୍ଧିକ କାର୍ଯ୍ୟକ୍ରମରେ ବ୍ୟାଘାତ ଦେଖାଦେଇଥାଏ। ଏପରିକି ସେ ଛୋଟ ପିଲାଙ୍କ ପରି ବ୍ୟବହାର କରେ। ସେ ଆଗରୁ ଯାହା ଯାହା ଶିଖିଥିଲା, ତାହା ଲୋପ ପାଇଯାଏ।

ଉଦାହରଣ ସ୍ୱରୂପ ମସ୍ତିଷ୍କର ଗୋଟିଏ ନିର୍ଦ୍ଦିଷ୍ଟ ଅଂଶ ନଷ୍ଟ ହୋଇଗଲେ ଜଣେ ବ୍ୟକ୍ତି ନିଜ ବାପକୁ ଦେଖିପାରେ, କିନ୍ତୁ ତାକୁ ନିଜ ବାପ ବୋଲି ଚିହ୍ନିପାରେ ନାହିଁ। ସେହିପରି ଆଉ କୌଣସି ଅଂଶଟିଏ ବିକୃତ ହୋଇଗଲେ ତା'ର ଅତୀତର ସ୍ମୃତି ନଷ୍ଟ ହୋଇଯାଏ କିମ୍ବା କଥା କହିପାରେ ନାହିଁ। ଅଥଚ ବେଳେ ବେଳେ ବହୁ ବର୍ଷ ତଳେ ଶିଖିଥିବା କେତେକ ଗୀତ ବିନା ବାଧାରେ ଗାଇପାରେ। ଏହିପରି ଭାବରେ ବହୁ ଅଦ୍ଭୁତ ଧରଣର କାର୍ଯ୍ୟକଳାପ ନିର୍ଦ୍ଦିଷ୍ଟ ମସ୍ତିଷ୍କ କିମ୍ବା ଶରୀରର ଅନ୍ୟାନ୍ୟ ଅଂଶର କାର୍ଯ୍ୟଦକ୍ଷତା ଅଭାବରୁ ଦେଖାଦେଇଥାଏ ଏବଂ ମାନସିକ ପ୍ରକ୍ରିୟାଗତ ଜଟିଳତା ସଂପୂର୍ଣ୍ଣରୂପେ ଲୋପ ପାଇଯାଏ। ମନୁଷ୍ୟର ଆଶା, ଆକାଂକ୍ଷା, ଆଦର୍ଶ, ସ୍ୱପ୍ନ, ଆଧ୍ୟାତ୍ମିକତା ପ୍ରଭୃତି ସମସ୍ତ ମାନସିକତା ହେଉଛି ତା'ର ଦୈହିକ ସ୍ନାୟବିକ ଓ ରାସାୟନିକ ସଂଗଠିର ସମନ୍ୱିତ କ୍ରିୟା-ପ୍ରକ୍ରିୟା ବୋଲି ନିର୍ଧାର୍ଯ୍ୟ ଭାବରେ ପ୍ରମାଣିତ ହୋଇସାରିଛି। ଟେଲିଭିଜନ ବା ରେଡ଼ିଓ ବା କମ୍ପ୍ୟୁଟରର ଯାନ୍ତ୍ରିକ ସଂଘାତ ବ୍ୟାହତ ହେଲେ ତା'ଠାରେ ଯେପରି କୌଣସି ପ୍ରକ୍ରିୟା ସମ୍ଭବ ନୁହେଁ, ସେହିପରି ସବୁ ପ୍ରାଣୀ ଜଗତର ବିଭିନ୍ନ ଧରଣର କ୍ରିୟା-ପ୍ରକ୍ରିୟା ତା'ର ସମ ସଂଗତିଗତ ଯାନ୍ତ୍ରିକ ସନ୍ତୁଳନ ଉପରେ ହିଁ ସଂପୂର୍ଣ୍ଣ ନିର୍ଭର କରିଥାଏ। ଏପରି ପରିସ୍ଥିତିରେ ମନୁଷ୍ୟର ମୃତ୍ୟୁ ପରେ ତା'ର ମସ୍ତିଷ୍କ ଓ ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା ପରେ ତା'ର ଅଶରୀରୀ ଆତ୍ମା ବିଭିନ୍ନ ରୂପରେ ଦେଖାଦେବା ବିଶ୍ୱାସ ସଂପୂର୍ଣ୍ଣରୂପେ ଭ୍ରାନ୍ତି ମୂଳକ ବୋଲି ନିଃସନ୍ଦେହରେ କୁହାଯାଇ ପାରିବ।

ମାନସିକତା ନାନାଭାବରେ ପାରିବାରିକ ଓ ସାମାଜିକ ପରିବେଶ ଉପରେ ନିର୍ଭର କରେ। ଦୁଇଜଣଙ୍କର ବୁଦ୍ଧି ସମାନ ହେଲେ ମଧ୍ୟ ସେମାନଙ୍କର ସାମଗ୍ରିକ କାର୍ଯ୍ୟକଳାପରେ ବହୁତ ତଫାତ ଦେଖାଦେଇଥାଏ। ସମାନ ବୁଦ୍ଧି ଥିବା ଦୁଇଜଣଙ୍କ ଭିତରୁ ଜଣେ ପ୍ରତିଭାସଂପନ୍ନ ବୈଜ୍ଞାନିକ ହୋଇପାରେ; ଆଉ ଜଣେ ଅତି ଦୁର୍ଦ୍ଧର୍ଷ ଡକାଏତ ହୋଇପାରେ। କେତେଗୁଡ଼ିଏ ପାରିବାରିକ ଓ ସମାଜୀକରଣ ପ୍ରକ୍ରିୟା ଏ ପ୍ରକାର ପାର୍ଥକ୍ୟ ଲାଗି ଦାୟୀ ହୋଇଥାଏ। ସୁଖ ଦୁଃଖ, ଚରିତ୍ରବତ୍ତା ପ୍ରଭୃତି ସମସ୍ତ ପ୍ରକାରର ବ୍ୟକ୍ତିଗତ ଗୁଣ ବିକାଶ ପ୍ରକ୍ରିୟାର କାର୍ଯ୍ୟକାରଣ ସଂପର୍କ ଏହିପରି ଭାବରେ ବିଶ୍ଳେଷଣ କରାଯାଇ ପାରେ। ଏଥିପାଇଁ ପୂର୍ବଜନ୍ମର ପାପପୁଣ୍ୟକୁ ଦାୟୀ କରାଯିବା ସଂପୂର୍ଣ୍ଣ ଅବୈଜ୍ଞାନିକ। ଯାହା ପ୍ରମାଣିତ କରିହେବ ନାହିଁ ଏବଂ ଯାହା ପ୍ରତିପାଦନୀୟ ମଧ୍ୟ ନୁହେଁ, ସେ କଥା ନେଇ ଯେତେ ବାଦାନୁବାଦ ହେଲେ ମଧ୍ୟ ତାହା ଯୁଗ ଯୁଗ ଧରି ଅମୀମାଂସିତ ହୋଇ ରହିଯାଏ। ପୂର୍ବଜନ୍ମ ନେଇ ଯେତେପ୍ରକାର ତଥ୍ୟ ପୃଥିବୀସାରା ଉପସ୍ଥାପିତ ହୋଇଛି, ତା'ର ଯଥାଯଥ ବୈଜ୍ଞାନିକ ବିଶ୍ଳେଷଣ ପରେ ସେସବୁ ଅବାସ୍ତବ ବୋଲି ପ୍ରମାଣିତ ହୋଇଛି। ମନୁଷ୍ୟର ଶରୀର ବିନା ଆତ୍ମା ବା ମନର କୌଣସି ବାସ୍ତବତା ଅସମ୍ଭବ।

ମନୁଷ୍ୟ ପିଲାଟି ମା' ପେଟରେ ରହିବା ଦିନଠାରୁ ଏହିପରି କ୍ରମବର୍ଦ୍ଧିଷ୍ଣୁ ବିକାଶଧାରା ଦେଇ ଗତି କରିଥାଏ । ତା'ର ମସ୍ତିଷ୍କ ଅତି ସରଳ ଅବସ୍ଥାରୁ ଜଟିଳ ହୋଇ ଚାଲିଥାଏ । ତେଣୁ ବିଭିନ୍ନ ସମୟରେ ତା'ର ମାନସିକତା ଅଲଗା ଅଲଗା ଭାବରେ ବଢ଼େ । ଯେଉଁ ବୌଦ୍ଧିକ୍ କ୍ରିୟାକଳାପ ଅଳ୍ପ ବୟସରେ ସମ୍ଭବ ନୁହେଁ, ତାହା ବୟସ ବୃଦ୍ଧି ସହିତ ବିକଶିତ ହୁଏ । ବାହ୍ୟ ଜଗତର ଉଦ୍ଦୀପନା ତଥା ପ୍ରଭାବ ଅନୁସାରେ ତା'ର ମାନସିକତାର ଗୁଣାତ୍ମକ ପରିବର୍ତ୍ତନ ଘଟିଥାଏ । ଅନେକ ସମୟରେ ବୟସ ଅଧିକ ହେଲେ କେତେକଙ୍କଠାରେ ତାନ୍ତବୀୟ ଅବକ୍ଷୟ ସହିତ ମାନସିକ କାର୍ଯ୍ୟକ୍ଷମତା ମଧ୍ୟ କମିଯାଏ ।

ସଦ୍ୟଜାତ ଶିଶୁର କେତୋଟି ଶିରାପ୍ରଶିରାଗତ ସ୍ୱାଭାବିକ ଯାନ୍ତ୍ରିକ ପ୍ରତିବର୍ତ୍ତ– ଯଥା ଚୁଚୁମି ଖାଇବା, ଢୋକିବା, ଜୀର୍ଣ୍ଣ କରିବା, କାନ୍ଦିବା ପ୍ରଭୃତି ସରଳ ଜୈବିକ କ୍ରିୟାକୁ ଛାଡ଼ିଦେଲେ ତା'ଠାରେ ଅନ୍ୟ କୌଣସି ପ୍ରକାରର ମାନସିକ ଜଟିଳତା ଦେଖାନେଇ ନଥାଏ । କ୍ରମେ ତାଠାରେ ଜଟିଳ ସ୍ନାୟବିକ ପ୍ରକ୍ରିୟା ସମ୍ଭବ ହୁଏ । ସେ ଅନ୍ୟମାନଙ୍କଠାରୁ ଶିଖେ–ନିଜକୁ ଅନ୍ୟମାନଙ୍କଠାରୁ ଅଲଗାକରି ଦେଖେ, ତା'ଠାରେ ଅହଂଭାବ ଦେଖାଦିଏ । ସେ ସାରାଜୀବନ ଜଟିଳରୁ ଜଟିଳତର ଅହଂକୈନ୍ଦ୍ରିକ କାର୍ଯ୍ୟ ମାଧ୍ୟମରେ ନିଜକୁ ସମାଜ ସହିତ ପ୍ରତିଯୋଜିତ କରିବାକୁ ଶିଖେ । ପାରିବାରିକ ଓ ଅନ୍ୟାନ୍ୟ ସମାଜିକ ପରିସର ଭିତରଦେଇ ସବୁକଥା ଶିଖି ଶିଖି ଚାଲେ, ବିଭିନ୍ନ ସାମାଜିକୀକରଣ ପ୍ରକ୍ରିୟା ଯୋଗୁଁ ତା'ଠାରେ ନାନାପ୍ରକାରର ଅଭିବ୍ୟକ୍ତି ତଥା ଚରିତ୍ରଗତ ବ୍ୟବହାର ଦେଖାଯାଇଥାଏ ।

ଜଣେ ବିଖ୍ୟାତ ମନୋବିଜ୍ଞାନୀ କହିଥିଲେ ଯେ ତାଙ୍କୁ କେତେଟି ସଦ୍ୟଜାତ ଶିଶୁଙ୍କର ସଂପୂର୍ଣ୍ଣ ଦାୟିତ୍ୱ ଦେଇଦେଲେ ସେ ସେମାନଙ୍କୁ ଛଅଗୋଟି ବିଭିନ୍ନ ବ୍ୟକ୍ତିତ୍ୱରେ ପରିଣତ କରିଦେଇପାରିବେ । ଜଣେ ମହାନ୍ ଦେଶପ୍ରେମୀ ହେବ ଓ ଆଉ ଜଣେ ଡକାଏତ ହେବେ ଇତ୍ୟାଦି । ଏହା ସମ୍ପୂର୍ଣ୍ଣରୂପେ ଗ୍ରହଣୀୟ ନହେଲେ ମଧ୍ୟ ଏଥିରେ ବହୁ ପରିମାଣରେ ସତ୍ୟତା ରହିଛି । ସମସ୍ତ ପ୍ରକାର ଚାରିତ୍ରିକ ପରିବର୍ତ୍ତନ ଓ ପିଲାଙ୍କର ଉପଯୁକ୍ତ ଲାଳନପାଳନ ତଥା ଶିକ୍ଷଣ ପଦ୍ଧତି ଏହି ତଥ୍ୟ ଉପରେ ପର୍ଯ୍ୟବସିତ । ଅର୍ଥାତ୍ ବିଭିନ୍ନ ବୟସର ଓ ବିଭିନ୍ନ ସମାଜର ମନୁଷ୍ୟ ସେମାନଙ୍କର ଶାରୀରିକ ସଂଗଠନ ତଥା ସାମାଜିକ ଚଳଣୀ ମାଧ୍ୟମରେ ଗଢ଼ିଉଠେ । ତେଣୁ ଏ ପ୍ରକାର କ୍ରିୟା ପ୍ରକ୍ରିୟାଗତ ଫଳାଫଳର ଅସ୍ତିତ୍ୱ ତା'ର ମୃତ୍ୟୁ ପରେ କୌଣସିମତେ ସମ୍ଭବ ନୁହେଁ । ଯେପରି ଟେଲିଭିଜନ କିମ୍ବା କମ୍ପ୍ୟୁଟରର ଅବିନାଶୀ ଆତ୍ମା ନାହିଁ । ସେହିପରି ମନୁଷ୍ୟଠାରେ ମଧ୍ୟ ଗୋଟିଏ ଅବିନାଶୀ ଆତ୍ମାର କଳ୍ପନା କରିବା ନିଶ୍ଚିତଭାବରେ ନିରର୍ଥକ । ଏହାର ମଧ୍ୟ କୌଣସି ସଠିକ ପ୍ରମାଣ ନାହିଁ । ଏହି ବିଶ୍ୱାସ କେବଳ ନିଜର ଇଚ୍ଛାପ୍ରଣୋଦିତ କାଳ୍ପନିକ ବିଶ୍ୱାସ । ଏହା ଗୋଟିଏ ଅପ୍ରମାଣିତ ଓ ଅପ୍ରତିପାଦନୀୟ ଭ୍ରାନ୍ତ ଧାରଣା ବୋଲି ଧରାଯାଇପାରେ ।

ତଥାପି ଏ ବିଷୟରେ ଏ ପ୍ରକାର ବଦ୍ଧମୂଳ ଧାରଣା କାହିଁକି ରହିଆସିଛି ? ସବୁ ଧର୍ମରେ ଅବିନାଶୀ ଆତ୍ମା କଥା ରହିଛି। ତା'ର ମୁଖ୍ୟ କାରଣ ହେଲା ଆମର ପ୍ରଚଣ୍ଡ ଅହମିକା । ଅହଂଭାବ ମନୁଷ୍ୟଠାରେ ଶୈଶବକାଳରୁ ଏପରି ପ୍ରଚଣ୍ଡଭାବରେ ବଢ଼ି ଚାଲେ ଯେ ତା'ର ମୃତ୍ୟୁ ପରେ ମଧ୍ୟ ଏହା ଆତ୍ମା ରୂପରେ ସ୍ୱର୍ଗ ନରକରେ ବିଚରଣ କରିବାର କଳ୍ପନା କରାଯାଏ। ଅହଂଭାବ ଅବଶ୍ୟ ମନୁଷ୍ୟଠାରେ ବହୁତ ଦରକାରୀ। ଅହଂ ଯୋଗୁ ସେ ନିଜକୁ ଜଗତରେ ପ୍ରତିଷ୍ଠିତ କରିପାରେ। ଅସାଧ୍ୟ ସାଧନ କରିବାରେ ସମର୍ଥ ହୁଏ– ଉପଭୋଗର ଚରମ ସାର୍ଥକତା ଲାଭ କରେ। ତେଣୁ ହଠାତ୍ ଏତେ ବଡ଼ ମାନସିକ ଶକ୍ତି– ଯେ କି ତାକୁ ଏତେ ସାଫଲ୍ୟ ତଥା ସମ୍ମାନ ଯୋଗାଇ ପାରିଛି– ତାହା ମୃତ୍ୟୁ ପରେ ସମ୍ପୂର୍ଣ୍ଣରୂପେ ଲୋପ ପାଇଯିବ–ମଶା, ମାଛିପରି ସେ ସଂପୂର୍ଣ୍ଣ ରୂପେ ବିଲୀନ ହୋଇଯିବ– ଏହା ତା'ର ଅହଂ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ ହୋଇପଡ଼େ। ତେଣୁ ଅହଂ ନିଜକୁ ଅମର ରଖିବା ପାଇଁ କଳ୍ପିତ ସ୍ୱର୍ଗ ତିଆରି କରେ– ସେଠାରେ ଆହୁରି ବେଶି ଉପଭୋଗର ସ୍ୱପ୍ନ ଦେଖେ– ଏହି ସ୍ୱପ୍ନର ରଙ୍ଗ ଅନୁସାରେ ତା'ର ସ୍ୱର୍ଗ ରଞ୍ଜିତ ହୁଏ। ସବୁ ଲୋକଙ୍କର ସ୍ୱପ୍ନ ସମାନ ନଥିବାରୁ ବିଭିନ୍ନ ଧର୍ମ ବିଭିନ୍ନ ପ୍ରକାରର ସ୍ୱର୍ଗ କଳ୍ପନା କରିଥାଆନ୍ତି। ଦୁଷ୍ଟ ଲୋକେ ନରକ ଯନ୍ତ୍ରଣା ନ ପାଇଲେ ସୁଖଭୋଗ କରୁଥିବା ଲୋକର ଈର୍ଷା ହୁଏ। ତେଣୁ ସ୍ୱର୍ଗ କେବଳ ତା'ପରି ଲୋକଙ୍କ ପାଇଁ କଳ୍ପିତ ହୁଏ। ଅବଶ୍ୟ ସହଜରେ ଲୋକେ ନରକ ଯନ୍ତ୍ରଣା କଥା ଗ୍ରହଣ କରିପାରନ୍ତି ନାହିଁ । କାରଣ ଏହା ତାଙ୍କ ଅହଂ ପକ୍ଷରେ ନିହାତି ଅପ୍ରୀତିକର ସ୍ୱପ୍ନ। ତେଣୁ ଅନ୍ତତଃ ମଲାବେଳକୁ ବା ରୋଗଶଯ୍ୟାରେ ପଡ଼ି ରହିଥିଲାବେଳେ ଭଗବାନ ନାମ ନେଇ ସେ ସ୍ୱର୍ଗରେ ପହଞ୍ଚିବାର ସ୍ୱପ୍ନ ଦେଖେ। ଧର୍ମପରାୟଣ ଲୋକଙ୍କୁ ଏପ୍ରକାର ବିଶ୍ୱାସ ବହୁତ ଆଶାନ୍ୱିତ କରିରଖିଥାଏ। ଏହାକୁ ଗୋଟିଏ ବହୁଜନ ସମର୍ଥିତ ଅମୂଳକ ମାୟା ହିସାବରେ ଗ୍ରହଣ କରାଯାଇପାରେ। ଏ ପୃଥିବୀରେ ମନୁଷ୍ୟର ବିକାଶ ହେବା ପୂର୍ବରୁ ଏହି ସ୍ୱର୍ଗ ଓ ଅବିନାଶୀ ଆତ୍ମାମାନେ ଥିଲେ କେଉଁଠି ? ପୃଥିବୀର ଅବଶ୍ୟମ୍ଭାବୀ ଧ୍ୱଂସ ପରେ ଏମାନଙ୍କର ଅବସ୍ଥା କ'ଣ ହେବ ? ଏ ପ୍ରକାର ଅହେତୁକ ବିଶ୍ୱାସକୁ ବଞ୍ଚାଇ ରଖିବା ପାଇଁ ବହୁ ତାତ୍ତ୍ୱିକ ଯୁକ୍ତି ମଧ୍ୟ ରହିଛି। ଅବଶ୍ୟ ବିଭିନ୍ନ ଧର୍ମ ବିଶ୍ୱାସୀଙ୍କ ଯୁକ୍ତି ଅଲଗା ଅଲଗା। ସେଥିପାଇଁ ବହୁ କଳ୍ପନାଜଳ୍ପନା ତଥା ଦାର୍ଶନିକ ତତ୍ତ୍ୱ ଉପସ୍ଥାପିତ କରାହୋଇଛି। ଏସବୁ ବହୁ ଅର୍ଥହୀନ ଶବ୍ଦାଡ଼ମ୍ବରର ନିରର୍ଥକ ବୌଦ୍ଧିକ ବ୍ୟାୟାମ ମାତ୍ର। କିନ୍ତୁ ସତ୍ୟସନ୍ଧିତ୍ସୁ ମନୁଷ୍ୟକୁ ଏସବୁ ଅବାସ୍ତବ ଏବଂ ପରସ୍ପର ବିରୋଧୀ ଯୁକ୍ତି ସନ୍ତୁଷ୍ଟ କରି ପାରୁନାହିଁ।

ମାନସିକତା ଶାରୀରିକ ଓ ପରିବେଶ ସମଷ୍ଟିର ପ୍ରକ୍ରିୟାଗତ ଫଳ ହେଲେ ମଧ୍ୟ ଏହା ଶାରୀରିକ ବିନ୍ୟାସଠାରୁ ଅଧିକ ଶକ୍ତିଶାଳୀ ହୋଇଉଠେ। ଉଦାହରଣସ୍ୱରୂପ, ବହୁ ପ୍ରକାରର ଯାନ୍ତ୍ରିକ ସଂଘାତର ପ୍ରକ୍ରିୟାଗତ ଫଳ ହେଲା ବିଦ୍ୟୁତ୍ ଶକ୍ତି। କିନ୍ତୁ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହେଲା ପରେ ତା'ର ଜନ୍ମଦାତା ଯାନ୍ତ୍ରିକ ସଂସ୍ଥାଠାରୁ ଅଧିକ ଶକ୍ତିଶାଳୀ

ହୋଇଯାଏ । ଏପରିକି ଏହି ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଯାନ୍ତ୍ରିକ ବିନ୍ୟାସକୁ ଧ୍ୱଂସ କରି ଦିଆଯାଇପାରେ । ଫଳରେ ବିଦ୍ୟୁତ୍ ଶକ୍ତି ମଧ୍ୟ ବିଲୀନ ହୁଏ । ସେହିପରି ମାନସିକତା ବହୁ ଶକ୍ତିଶାଳୀ– ଏହା ଶାରୀରିକ ସଂଘାତକୁ ନାନାଭାବରେ ପ୍ରଭାବିତ କରିପାରେ । ତେଣୁ ମାନସିକତା ବସ୍ତୁତାନ୍ତ୍ରିକ ସଂସ୍ଥାର ପ୍ରକ୍ରିୟାଗତ ଗୁଣ ହେଲା ପରେ ତା'ର ସୃଷ୍ଟିକାରୀ ପଟ୍ଟଭୂମିର ଧର୍ମଠାରୁ ଅଲଗା ହୋଇପଡ଼େ । ଯେପରି ବିଭିନ୍ନ ପରିସ୍ଥିତିରେ ତରଳ ପାଣି ବରଫ କିମ୍ବା ବାଷ୍ପ ହୋଇଯାଏ–ତା'ର ଗୁଣାତ୍ମକ ପରିବର୍ତ୍ତନ ହୋଇଯାଏ–ବରଫ ଓ ବାଷ୍ପର ଗୁଣଠାରୁ ପାଣିର ଧର୍ମ ଅଲଗା । ସେହିପରି ମାନସିକତାର ଚରିତ୍ରଗତ ବୈଶିଷ୍ଟ୍ୟ ବସ୍ତୁତାନ୍ତ୍ରିକ ପଟ୍ଟଭୂମିଠାରୁ ଅଲଗା ହେବା ଅବଶ୍ୟମ୍ଭାବୀ, କିନ୍ତୁ ତା'ର ସ୍ୱତନ୍ତ୍ର ସ୍ଥିତି ଧାରଣା କେବଳ ଭ୍ରାନ୍ତିମୂଳକ ବିଶ୍ୱାସ ।

ମାନସିକତାର ଚାରିତ୍ରିକ ବ୍ୟବହାର ଅନୁସାରେ ଦେହରେ ବହୁ ପ୍ରକାରର ରୋଗ ହୁଏ ଏବଂ ପ୍ରବଳ ଇଚ୍ଛାଶକ୍ତିର ପ୍ରୟୋଗରେ ବହୁ ରୋଗର ଉପଶମ ମଧ୍ୟ ହୁଏ । ଏହି ଶକ୍ତିଶାଳୀ ମାନସିକତା ବହୁ ପ୍ରକାରର ଶାରୀରିକ ପରିବର୍ତ୍ତନ କରାଇପାରେ – ଏପରି କି ଅକାଳ ମୃତ୍ୟୁ ମଧ୍ୟ ଘଟାଇପାରେ । ତେଣୁ ପ୍ରକ୍ରିୟାଗତ ଶକ୍ତି ମୌଳିକ ଯାନ୍ତ୍ରିକ ସଂସ୍ଥାଠାରୁ ବହୁଭାବରେ ବଳୀୟାନ ହୋଇଥାଏ । ଏହା ଏପରି ପ୍ରଚଣ୍ଡ ଯେ ଏହା ପୃଥିବୀକୁ ମଧ୍ୟ ଧ୍ୱଂସ କରିଦେଇପାରେ– ତା' ସହିତ ଅବଶ୍ୟ ତା'ର ଶରୀର ମଧ୍ୟ ସମ୍ପୂର୍ଣ୍ଣ ବିଲୋପ ହୋଇଯିବ । ତେଣୁ ତା'ରି ଭିତରୁ ମୁକ୍ତିଲାଭ କରି ସ୍ୱର୍ଗ କିମ୍ବା ବ୍ରହ୍ମପ୍ରାପ୍ତି-ସ୍ୱପ୍ନ ଅତ୍ୟନ୍ତ ଅବାସ୍ତବ । ତଥାପି ଏ ପ୍ରକାର ଛାୟା ଜଗତର ପ୍ରଚଣ୍ଡ ମାୟା ବହୁମନୁଷ୍ୟଙ୍କୁ ବିଶେଷତଃ ବିଶେଷତଃ ଧର୍ମପରାୟଣ ଲୋକଙ୍କୁ ଆଚ୍ଛନ୍ନ କରି ରଖିଥାଏ ।

ଯୋଗାସନ, ପ୍ରାଣାୟାମ, ଧ୍ୟାନ, ଧାରଣା ଓ ନାନା ପ୍ରକାରର ଶାରୀରିକ ପ୍ରତିଯୋଜନ ପ୍ରକ୍ରିୟା ତଥା ସବୁ ସୁନ୍ଦର, ସବୁ ମଙ୍ଗଳମୟ, ପୃଥିବୀର ସମସ୍ତଙ୍କର ଶାନ୍ତି କାମନା ପ୍ରଭୃତି ସକାରାତ୍ମକ ବିଶ୍ୱାସ ମାଧ୍ୟମରେ ମନକୁ ଆହୁରି ଶକ୍ତିଶାଳୀ କରାଯାଇ ପାରୁଛି । ସୁଷମ ଖାଦ୍ୟ ଓ ସନ୍ତୁଳିତ ଆଚାରବ୍ୟବହାର ଦ୍ୱାରା ଶରୀରର ବିଭିନ୍ନ କାର୍ଯ୍ୟକଳାପକୁ ସୁନିୟନ୍ତ୍ରିତ କରିବା ଫଳରେ ଦେହକୁ ରୋଗମୁକ୍ତ ଓ ଦୀର୍ଘାୟୁ କରାଯାଇପାରୁଛି । ଏହି ପ୍ରଚଣ୍ଡ କାର୍ଯ୍ୟକାରୀ ଶକ୍ତି ସେହି ଶାରୀରିକ ସନ୍ତୁଳନ ଉପରେ ହିଁ ନିର୍ଭର କରୁଛି । ଏହା କାର୍ଯ୍ୟକାରଣ ସମ୍ପର୍କ ଆଧାରିତ ସତ୍ୟ ଉପରେ ପ୍ରତିଷ୍ଠିତ । ଏହାର ଅନ୍ୟଥା ବିଶ୍ୱଜଗତର ପ୍ରଚଳିତ ସର୍ବବ୍ୟାପୀ ଏହି ନିୟମର ବହିର୍ଭୂତ ବୋଲି ଧରାଯାଏ । ତା'ଛଡ଼ା ବିଶ୍ୱାସ ଗୋଟିଏ ମନସ୍ତାତ୍ତ୍ୱିକ ପ୍ରକ୍ରିୟା – ଏହା ଅହଂଭାବର ଆକାଙ୍କ୍ଷିତ ଇଚ୍ଛା ପରିପୂରକ କାଳ୍ପନିକ ସ୍ୱପ୍ନ । ସ୍ୱପ୍ନର ବାସ୍ତବତା କଳ୍ପନା କେବଳ ଭ୍ରାନ୍ତିମୂଳକ ଆଶା ନିରାଶାର ଉତ୍କ୍ଷେପିତ ଛାଇ ଉପରେ ହିଁ ନିର୍ଭର କରେ ।

ଅନେକ ସମୟରେ ଗୋଟିଏ ଘଟଣାର ପୂର୍ବାପର କ୍ରିୟା ପ୍ରକ୍ରିୟା ସହିତ କାର୍ଯ୍ୟକାରଣ ସମ୍ପର୍କ ପ୍ରତିଷ୍ଠା କରିନପାରିଲେ ଆଉ ଗୋଟିଏ ଅଦୃଶ୍ୟ ଶକ୍ତିର କଳ୍ପନା

କରାଯାଏ। ଏହା ଆମର ସହଜାତ ବିଚାର ପ୍ରବୃତ୍ତି। ଉଦାହରଣସ୍ୱରୂପ, ଦୁଇ ଭାଇ ଏକା ପରିବାରରେ ଲାଳିତପାଳିତ ହୋଇ ମଧ୍ୟ ସେମାନେ କ୍ରମେ ପରସ୍ପରଠାରୁ ସମ୍ପୂର୍ଣ୍ଣ ଅଲଗା ଚରିତ୍ରର ହୁଅନ୍ତି। କିମ୍ବା ଜଣେ ସୁସ୍ଥ ସବଳ ହେଲେ ଆଉ ଜଣେ ଚିର ରୁଗ୍ଣ ହୋଇ ରହେ। ଜଣକର ଜୀବନ ସୁଖ ଓ ପ୍ରାଚୁର୍ଯ୍ୟରେ ଭରା ତ ଆଉ ଜଣକର ଦୁଃଖର ସୀମା ନଥାଏ। ଏପରି ପରିସ୍ଥିତିରେ ଅନେକେ ଏହା ପୂର୍ବ ଜନ୍ମର ପାପ ପୁଣ୍ୟର ଫଳଭୋଗ ବୋଲି ବୁଝିବାକୁ ଉଦ୍ୟମ କରନ୍ତି। କାରଣ ସେମାନେ ପ୍ରକୃତ କାରଣ ଖୋଜି ବାହାର କରିପାରନ୍ତି ନାହିଁ। ଯେପରି ଜଣକର ହଠାତ୍ ହଇଜା ବସନ୍ତ ହେଲେ ଲୋକେ ତା'ର ସଠିକ କାରଣ ନ ଜାଣିଲାଯାଏଁ ଅଶରୀରୀ ଦେବଦେବୀଙ୍କୁ ଏହାର କର୍ତ୍ତା ବା କର୍ତ୍ତ୍ରୀ ବୋଲି ଧରିନିଅନ୍ତି, ସେହିପରି ଯେତେବେଳେ ଗୋଟିଏ ଘଟଣାର କାରଣ ଜାଣିହୁଏ ନାହିଁ, ମନୁଷ୍ୟ ତା'ର ଯୌକ୍ତିକ ବୋଧଶକ୍ତିକୁ ସନ୍ତୁଷ୍ଟ କରିବାପାଇଁ ଯେକୌଣସି ଗୋଟିଏ ଅବାସ୍ତବ ଓ କାଳ୍ପନିକ କାରଣକୁ ଆଦରି ନିଏ, କିନ୍ତୁ ଯାହା ଏ ବିଶ୍ୱରେ ଘଟୁଛି ତା'ର ନିର୍ଦ୍ଦିଷ୍ଟ ପୂର୍ବାପର କାର୍ଯ୍ୟକାରଣ ରହିଛି। ଆମର ବୌଦ୍ଧିକ ଅସାମର୍ଥ୍ୟ ଯୋଗୁ ଆମେ ହଠାତ୍ ତାହା ଖୋଜି ବାହାର କରି ପାରୁ ନଥିବା ଯୋଗୁ ଏପରି ବହୁ କାଳ୍ପନିକ କାର୍ଯ୍ୟ କାରଣର ଦ୍ୱାହି ଦେଇ ଆମର ଅନୁସନ୍ଧିତ୍ସୁ ବିଚାର ପ୍ରବୃତ୍ତିକୁ ସାନ୍ତ୍ୱନା ଦେଇଥାଉ। ଏପରି ଘଟଣାଗୁଡ଼ିକର ବାସ୍ତବ କାର୍ଯ୍ୟକାରଣ ସମ୍ପର୍କ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠା ହେଲା ପରେ ଆମର ପୂର୍ବଧାରଣା ବଦଳିଯାଏ ଏବଂ ଯେଉଁମାନଙ୍କଠାରେ ଏହା ତଥାପି ବଳବତ୍ତର ଥାଏ, ତାକୁ ଅନ୍ଧବିଶ୍ୱାସ ବୋଲି କୁହାଯାଏ। ଅନେକ ଦୁର୍ବଳ ଓ ଭୟାଳୁ ମନୁଷ୍ୟ ଏପରି ଅନ୍ଧବିଶ୍ୱାସକୁ ସହଜରେ ଛାଡ଼ିପାରନ୍ତି ନାହିଁ। କ୍ରମେ ବିଜ୍ଞାନ ଯୁଗର ଅଗ୍ରଗତି ସହିତ ମନୁଷ୍ୟର ଜନ୍ମାଜନ୍ମାନ୍ତର ଫଳାଫଳ, ଭୂତ, ପ୍ରେତ, ଠାକୁର ଠାକୁରାଣୀ ପ୍ରଭୃତି ଅବାସ୍ତବ ଓ କାଳ୍ପନିକ ଅନ୍ଧବିଶ୍ୱାସ କ୍ରମେ ଦୂରୀଭୂତ ହେବାରେ ଲାଗିଛି। ପୂର୍ବଜନ୍ମର କୌଣସି ବାସ୍ତବତା ନଥିଲାବେଳେ ପୂର୍ବଜନ୍ମର ପାପପୁଣ୍ୟ ଫଳଭୋଗ ନିଶ୍ଚିତଭାବରେ ଗୋଟିଏ ଭ୍ରମାତ୍ମକ ବିଶ୍ୱାସରେ ପରିଣତ ହୋଇଯାଇଛି।

ବର୍ତ୍ତମାନ ବିଜ୍ଞାନସମ୍ମତ ଉନ୍ନତ ଦୃଷ୍ଟିକୋଣ ଯୋଗୁ ମନୁଷ୍ୟ ମହାମାନବୀୟ ଭ୍ରାତୃଭାବରେ ଉଦ୍‌ବୁଦ୍ଧ ହୋଇ ଗୋଟିଏ ନୂତନ ବାସ୍ତବ ଜଗତ ଗଢ଼ିବାରେ ଲାଗିଛି ଯାହା କି ସବୁ ଧର୍ମର ମୌଳିକ ସ୍ୱପ୍ନ ଥିଲା। କିନ୍ତୁ ପ୍ରତ୍ୟେକ ଧର୍ମରେ ବହୁ କୁସଂସ୍କାର, ଅନ୍ଧ ବିଶ୍ୱାସ ତଥା ଅସହନଶୀଳଗତ ଘୃଣାଭାବ ଯୋଗୁ ତାହା ବାସ୍ତବରେ ପରିଣତ ହୋଇପାରୁନଥିଲା। କିନ୍ତୁ ବର୍ତ୍ତମାନ ସାର୍ବଜନୀନ ମାନବୀୟ ଦୃଷ୍ଟିକୋଣର ସୂତ୍ରପାତ ହୋଇଛି। ମନୁଷ୍ୟ ହିଁ ଦେବତା– ଆମର ସମସ୍ତ ଉଦ୍ୟମ ଏହି ମନୁଷ୍ୟର ମଙ୍ଗଳ ଲାଗି ଉତ୍ସର୍ଗ କରିବାର ଅଭିଳାଷ ଦେଖାଦେଇଛି। ସ୍ୱର୍ଗର କଳ୍ପନା ମନୁଷ୍ୟ ଜୀବନକାଳରେ ଏହି ପୃଥିବୀରେ ରୂପାୟିତ କରିବାର ପ୍ରାରମ୍ଭିକ ସୂଚନା ଦେଖାଦେଇଛି। ■□■




# ସ୍ୱାମୀ ବିବେକାନନ୍ଦଙ୍କର ହିନ୍ଦୁତ୍ୱ ଦର୍ଶନ

ବର୍ତ୍ତମାନ ଭାରତରେ ଧର୍ମଗତ ବିଭେଦ ଏପରି ତିକ୍ତ ସାମ୍ପ୍ରଦାୟିକତାରେ ପରିଣତ ହୋଇଛି ଯେ ଭାରତର ଐତିହାସିକ ଦିଗ୍‌ଦର୍ଶନକୁ ଗୋଷ୍ଠୀଗତ ସଂଘର୍ଷ ଦ୍ୱିଧାଗ୍ରସ୍ତ କରି ପକାଇଛି। ଏଥିପାଇଁ ଧର୍ମଗତ ରାଜନୀତି ହିଁ ସମ୍ପୂର୍ଣ୍ଣରୂପେ ଦାୟୀ। ରାଜନୈତିକ ସ୍ୱାର୍ଥ ପାଇଁ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ଭିତରେ ଥିବା ଧର୍ମଗତ ପାର୍ଥକ୍ୟ ଉପରେ ବେଶି ଜୋର୍ ଦିଆଯାଉଛି– ମନ୍ଦିର ମସ୍‌ଜିଦ୍ କଳହ ବଢ଼ି ବଢ଼ି ଚାଲିଛି। ଫଳରେ ଏହା ଭାରତର ଉଦାର ସହବାସ୍ଥାନ ଐତିହ୍ୟକୁ ନଷ୍ଟ କରିଦେବାକୁ ଯାଉଛି। ବୁଦ୍ଧିଜୀବୀମାନଙ୍କର ବୌଦ୍ଧିକ ନିର୍ଭୀକତା ମଧ୍ୟ ଏଥିରେ ହାର ମାନୁଛି। ଆନନ୍ଦର କଥା ଯେ ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ସବୁ ରାଜନୈତିକ ଦଳ– ଏପରିକି ନାସ୍ତିକବାଦୀମାନେ ମଧ୍ୟ ବିବେକାନନ୍ଦଙ୍କର ଧର୍ମଗତ ଦର୍ଶନ ପ୍ରତି ଗଭୀର ଆନୁଗତ୍ୟ ପ୍ରକାଶ କରୁଛନ୍ତି। ତେଣୁ ତାଙ୍କର ଧର୍ମ ସମ୍ବନ୍ଧୀୟ ଦର୍ଶନର କେତୋଟି ମୌଳିକ ନୀତିକୁ ଅନୁଧ୍ୟାନ କରିବା ଉଚିତ।

ବିବେକାନନ୍ଦଙ୍କର ହିନ୍ଦୁ ଧର୍ମ ନୀତିର ବିଶ୍ଳେଷଣ ମୂଳତଃ ବୈଦାନ୍ତିକ ଦର୍ଶନ ଉପରେ ପର୍ଯ୍ୟବସିତ। ତାଙ୍କ ମତରେ ଭଗବାନ ହେଉଛନ୍ତି ଏକମାତ୍ର ସତ୍ୟ। ଯେପରି ଭିନ୍ନ ଭିନ୍ନ ନଦୀ ବିଭିନ୍ନ ସ୍ଥାନରୁ ବାହାରି, ନାନାଭାବରେ ଗତି କରି ସେହି ଗୋଟିଏ ସମୁଦ୍ରରେ ଯାଇ ମିଳିତ ହୁଅନ୍ତି, ସେହିପରି ବିଭିନ୍ନ ଧର୍ମଗତ ଆଚାରବିଚାରର ଲୋକେ ନାନା ମାର୍ଗ ଦେଇ ଭଗବାନଙ୍କ ପାଖରେ ଯାଇ ପହଞ୍ଚନ୍ତି। ବେଦାନ୍ତ ଉପରେ ପର୍ଯ୍ୟବସିତ ଗୀତା ମଧ୍ୟ ସେହି କଥା କହେ। ଲୋକେ ଯେଉଁ ମାର୍ଗରେ ଯାଉ ପଛେ ଶେଷରେ ସେ ଭଗବାନଙ୍କ ପାଖରେ ପହଞ୍ଚେ ଏବଂ ଭଗବାନ ସବୁ ଧର୍ମର ଲୋକଙ୍କ ଭିତରେ ସମାନଭାବରେ ପ୍ରକଟିତ ହୁଅନ୍ତି। ବିବେକାନନ୍ଦଙ୍କ ମତରେ ଭଗବାନଙ୍କର ସତ୍ତା ସର୍ବବ୍ୟାପୀ ଥିଲାବେଳେ ହିନ୍ଦୁମାନେ ଯଦି ଭାବନ୍ତି ଯେ ସେମାନେ ଯେଉଁ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଭିତରେ ରହନ୍ତି ସେହି ଛୋଟିଆ କୂଅଟି ହେଉଛି ସମଗ୍ର ପୃଥିବୀ ଏବଂ ସେହିଠାରେହିଁ କେବଳ ଭଗବାନ ଅଛନ୍ତି– ଖ୍ରୀଷ୍ଟିୟାନ୍, ମୁସଲମାନ ଗୋଷ୍ଠୀ ମଧ୍ୟ ସେହିପରି ଗୋଟିଏ କ୍ଷୁଦ୍ର କୂଅ ଭିତରେ ରହି ତାକୁହିଁ ମହାସମୁଦ୍ର ଭାବରେ ଦେଖନ୍ତି, ତାହା ... ଲ ଏସମସ୍ତଙ୍କର ଭଗବାନଙ୍କ ବିଷୟରେ ବିରାଟ ଭ୍ରମ ଧାରଣା ରହିଛି ବୋଲି ଭାବି ... ହେବ। ବିବେକାନନ୍ଦଙ୍କ ମତରେ ସନାତନ ଓ ସାର୍ବଜନୀନ ବୈଦାନ୍ତିକ ଆଧ୍ୟାତ୍ମିକତା ଭିତରେ ନିମ୍ନଧରଣର ପ୍ରତିମା ପୂଜା ଠାରୁ ଆରମ୍ଭକରି ସବୁ ପ୍ରକାରର ପୌରାଣିକ କଳ୍ପନାଜଳ୍ପନା ତଥା ବୁଦ୍ଧ ଓ ଜୈନ ମୁନିଙ୍କର ନାସ୍ତିକବାଦ ମଧ୍ୟ ସ୍ଥାନ ପାଇଛି। ତେଣୁ ବୁଦ୍ଧଙ୍କୁ ହିନ୍ଦୁମାନେ ଗୋଟିଏ ଅବତାର ରୂପେ ଗ୍ରହଣ କରିନେଇଛନ୍ତି। ତାଙ୍କ ମତରେ ବୈଦାନ୍ତିକ ଆଚାର୍ଯ୍ୟମାନଙ୍କ ଶକ୍ତିଶାଳୀ ବୁଦ୍ଧି ଓ ବୁଦ୍ଧଙ୍କର କରୁଣା ବିଗଳିତ ହୃଦୟର ମଧୁର ସମ୍ମିଶ୍ରଣରେ ଭାରତର ଧର୍ମଗତ ଐତିହ୍ୟ ପରିପୁଷ୍ଟ ହୋଇଛି ଓ ଏହା ସବୁକାଳେ ପୃଥିବୀକୁ ବଳିଷ୍ଠ ଦିଗ୍‌ଦର୍ଶନ ଦେଇପାରିଛି।

ଏହି ଭାରତ ଯୁଗେ ଯୁଗେ ଅନ୍ୟ ଦେଶରୁ ବିତାଡ଼ିତ ବିଭିନ୍ନ ପଳାତକ ଧର୍ମବିଶ୍ୱାସୀମାନଙ୍କୁ ଅଭୟ ଦେଇ ଆସିଛି। ସେମାନଙ୍କୁ ଭାଇଭାଇରେ ଗ୍ରହଣ କରିଛି।

ଭାରତରେ ସେମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବ ହୋଇପାରିଛି। ଇହୁଦୀ, ପାର୍ଶୀ, ମୁସଲମାନ, ମଙ୍ଗୋଲ, ଖ୍ରୀଷ୍ଟିୟାନ ପ୍ରଭୃତି ବହୁ ମତାବଲମ୍ବୀ ଲୋକେ ଭାରତର ସ୍ଥାୟୀ ଅଧିବାସୀ, ଏମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଭାରତର ସାମାଜିକ ଓ ନୈତିକ ଜୀବନର ଗୋଟିଏ ପ୍ରଧାନ ପଟ୍ଟଭୂମି। ଏପରି ମହାନ୍ ଭାରତରେ ଜନ୍ମଗ୍ରହଣ କରିଥିବାରୁ ବିବେକାନନ୍ଦ ନିଜକୁ ଭାଗ୍ୟବାନ ବୋଲି ମନେକରିଛନ୍ତି।

ସବୁଧର୍ମର ମୌଳିକ ଐକ୍ୟ ଥିଲେ ମଧ୍ୟ ବିଭିନ୍ନ ଧର୍ମାବଲମ୍ବୀଙ୍କ ଭିତରେ ଏପରି ବିଭିନ୍ନତା ତଥା ଦ୍ୱନ୍ଦ୍ୱାତ୍ମକ ଆଚାର ବିଚାର କାହିଁକି ଦେଖାଯାଏ ? ଏହାର ଉତ୍ତର ଦେବାକୁ ଯାଇ ସେ କହିଛନ୍ତି ଯେ ହିନ୍ଦୁମାନଙ୍କର ମୌଳିକ ଦର୍ଶନ ଅନୁସାରେ ଏପରି ବିଭିନ୍ନତା କେବଳ ଉପରିଗତ ଆପାତ ଲକ୍ଷଣ। ସେହି ଗୋଟିଏ ସତ୍ୟକୁ ବିଭିନ୍ନ ପ୍ରକୃତିର ଲୋକେ ବିଭିନ୍ନ ରୂପ ଦେବାକୁ ଉଦ୍ୟମ କରନ୍ତି ସତ, ଅଥଚ ନିଜର ଧର୍ମଗତ ଆଚାରବିଚାର ମାଧ୍ୟମରେ ସେହି ଗୋଟିଏ ସତ୍ୟଆଡ଼କୁ ହିଁ ଅନବରତ ଅଗ୍ରସର ହେଉଥାଆନ୍ତି। ସେ କୃଷ୍ଣଙ୍କର ଗୋଟିଏ ଉକ୍ତିକୁ ଏ ସମ୍ବନ୍ଧରେ ଉଲ୍ଲେଖ କରନ୍ତି। ଭଗବାନ କୃଷ୍ଣ ମୁକ୍ତାମାଳା ଭିତରେ ଥିବା ସୂତା ପରି ସବୁ ଧର୍ମ ଭିତରେ ରହିଛନ୍ତି ଏବଂ ଯେଉଁଠି ପବିତ୍ରତା ଓ ମାନବିକତା ରହିଛି, ସେଠାରେ ସେ ବିଶେଷଭାବରେ ବିଦ୍ୟମାନ। ଏ ବିଷୟରେ ବ୍ୟାସ ଋଷିଙ୍କର ଗୋଟିଏ ବିଚାର ବିବେକାନନ୍ଦ ଉଦ୍ଧାର କରିଛନ୍ତି। ତାହା ହେଉଛି- ନିଜ ନିଜର ସମ୍ପ୍ରଦାୟ, ଗୋଷ୍ଠୀ ଓ ବର୍ଣ୍ଣଗତ ଶ୍ରେଣୀ ବାହାରେ ବହୁତ ନିଷ୍ଠାପର ଧାର୍ମିକ ଲୋକ ମିଳନ୍ତି, ଯେଉଁମାନେ ଧର୍ମ ନିର୍ବିଶେଷରେ ସମସ୍ତଙ୍କର ନମସ୍ୟ। ବୌଦ୍ଧ, ଜୈନମାନେ ଭଗବାନଙ୍କର ଅସ୍ତିତ୍ୱ ବିଶ୍ୱାସ କରନ୍ତି ନାହିଁ, କିନ୍ତୁ ସେମାନେ ମନୁଷ୍ୟକୁ ଦେବତ୍ୱରେ ପରିଣତ କରିବାକୁ ଚାହାଁନ୍ତି। ଏମାନଙ୍କ ମତରେ ଭଗବାନଙ୍କୁ ତ ଜାଣି ହେବ ନାହିଁ, କିନ୍ତୁ ମନୁଷ୍ୟ ସମାଜକୁ ଗଭୀର ମାନବିକ ପ୍ରେମରେ ଉଦ୍‌ବୁଦ୍ଧ କରି ଏହାକୁ ଅତିମାନବରେ ପରିଣତ କରାଯାଇପାରିବ। ଏହି କାରଣରୁ ହିନ୍ଦୁମାନଙ୍କର ମଧ୍ୟ ସେମାନେ ଆରାଧ୍ୟ ହୋଇ ଆସୁଛନ୍ତି।

ବିବେକାନନ୍ଦଙ୍କର ସ୍ୱପ୍ନ ହେଲା ଯେ ପୃଥିବୀରେ ବୈଦାନ୍ତିକ ଦର୍ଶନ ଅନୁଯାୟୀ ସାର୍ବଜନୀନ ଧର୍ମ ପ୍ରତିଷ୍ଠା ହେଲେ ସବୁ ଧର୍ମାବଲମ୍ବୀ ଲୋକେ ପୃଥିବୀର ସବୁପ୍ରକାରର ଜୀବଜନ୍ତୁଙ୍କ ସହିତ ସମାଜର ସବୁ ସ୍ତରର ଦୀନହୀନ ବ୍ୟକ୍ତି ଓ ଶ୍ରେଣୀକୁ ଗୋଟିଏ ବିରାଟ ସତ୍ୟାନିଷ୍ଠ ଓ କରୁଣାମୟ ମାନବିକତାରେ ଅନୁପ୍ରାଣିତ ତଥା ଉଦ୍‌ବୁଦ୍ଧ କରିପାରିବେ। ଏପରି ସମାଜରେ ସାମ୍ପ୍ରଦାୟିକ ହିଂସାଦ୍ୱେଷ ଓ ଅସହିଷ୍ଣୁତାର ସ୍ଥାନ ରହିବ ନାହିଁ। ହିନ୍ଦୁ ଧର୍ମର ମୌଳିକ ଦର୍ଶନଶାସ୍ତ୍ର ବେଦାନ୍ତର ବୈପ୍ଳବିକ ଚିନ୍ତାଧାରା ହିନ୍ଦୁଧର୍ମକୁ ସନାତନ ଧର୍ମରେ ପରିଣତ କରିପାରିଛି ଏବଂ ସାରା ବିଶ୍ୱ ପାଇଁ ଏହାର ଉପାଦେୟତା କ୍ରମେ ଅନୁଭୂତ ହେଉଛି।

ବିବେକାନନ୍ଦଙ୍କ ମତରେ ଭାରତରେ ଧର୍ମଗତ ସହାବସ୍ଥାନ ରହିଥିଲେ ସୁଦ୍ଧା ଏବଂ ହିନ୍ଦୁମାନେ ବୁଦ୍ଧଙ୍କୁ ଅବତାର ବୋଲି ଗ୍ରହଣ କରିଥିଲେ ସୁଦ୍ଧା କେବଳ ରାଜନୈତିକ କାରଣରୁ ହିନ୍ଦୁ ଓ ବୌଦ୍ଧ ଧର୍ମୀଙ୍କ ଭିତରେ ଏକତାର ଅଭାବରୁ ଭାରତର ରାଜନୈତିକ

ଅଧଃପତନ ହେଲା ଏବଂ ବାହାରର ଶତ୍ରୁ ଦ୍ୱାରା ଭାରତ ଘନ ଘନ ଆକ୍ରମିତ ହେଲା। ଫଳରେ ଭାରତ ଗୋଟିଏ ଗରିବ ଦେଶର ବାସସ୍ଥାନ ହୋଇରହିଛି। ବର୍ତ୍ତମାନ ମଧ୍ୟ ଏହି କାରଣରୁହିଁ ବିଭିନ୍ନ ଧର୍ମ ସମ୍ପ୍ରଦାୟର ସଂଖ୍ୟାଧିକ ଲୋକେ ଗରିବ ଓ ଅଶିକ୍ଷିତ। ଏମାନଙ୍କର ଭୋକିଲା ମନରେ ରାଜନୀତି କରୁଥିବା ଲୋକେ ସାମ୍ପ୍ରଦାୟିକତାର ମଞ୍ଜି ବୁଣିବାରେ ଲାଗିଛନ୍ତି।

ବିବେକାନନ୍ଦ ତାଙ୍କର ଚିକାଗୋ ବକ୍ତୃତାରେ ବାରମ୍ବାର କହିଛନ୍ତି ଯେ ମୁସଲମାନ, ଖ୍ରୀଷ୍ଟିଆନ ପ୍ରଭୃତି ଅନ୍ୟ ଧର୍ମାବଲମ୍ବୀମାନଙ୍କର ହିନ୍ଦୁ ହେବାର ଆବଶ୍ୟକତା ନାହିଁ। ହିନ୍ଦୁମାନେ ମଧ୍ୟ ଅନ୍ୟ ଧର୍ମରେ ଦୀକ୍ଷିତ ହେବା ଅନୁଚିତ। ପ୍ରତ୍ୟେକ ଅନ୍ୟର ବିଶ୍ୱାସଗତ ଆଧ୍ୟାତ୍ମିକତାକୁ ସମ୍ମାନ ଦେଖାଇ ପରସ୍ପର ଭିତରେ ସ୍ନେହ ସୌହାର୍ଦ୍ଦ୍ୟ ସୃଷ୍ଟି କରି ନିଜ ନିଜର ଧର୍ମବିଶ୍ୱାସ ଅନୁଯାୟୀ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱ ବିକାଶ କରିବା ଉଚିତ। ସେ କହିଥିଲେ ଯେ ଧର୍ମ ସମ୍ବନ୍ଧୀୟ ପାର୍ଲିଆମେଣ୍ଟର ପ୍ରଧାନବାର୍ତ୍ତା ଏ ପ୍ରକାର ଧର୍ମଗତ ସହାବସ୍ଥାନ ଓ ସମ୍ମାନ ଉପରେ ପର୍ଯ୍ୟବସିତ ହେଉ। ପବିତ୍ରତା ଓ କରୁଣା ଅନୁପ୍ରାଣିତ କଲ୍ୟାଣ ଯେଉଁ ଦେଶରେ— ଯେଉଁ ଧର୍ମରେ ଏବଂ ଯେଉଁ ବ୍ୟକ୍ତିଠାରେ ଥିଲେ ମଧ୍ୟ ତାହା ସର୍ବତ୍ର ପୂଜନୀୟ ହେଉ। ଏହି ବିରାଟ ସାର୍ବଜନୀନ ମାନବିକ ଧର୍ମ ସାରା ବିଶ୍ୱର ମୁଖ୍ୟ ଆଦର୍ଶ ହେଉ। ପୃଥିବୀର ପୁର ପଲ୍ଲୀରେ ଏହି ମହାନ୍ ବାର୍ତ୍ତା ପ୍ରସାର କରିବା ସମସ୍ତଙ୍କର ଆନ୍ତରିକ କାମନା ହେଉ ବୋଲି ସେ ଉଦ୍‌ବୋଧନ ଦେଇଥିଲେ।

ବିବେକାନନ୍ଦଙ୍କ ମତରେ ଜଣେ ତଥାକଥିତ ଧାର୍ମିକ ବିଦ୍ୱାନ ବହୁ ଶାସ୍ତ୍ରର ଅଧିକାରୀ ହୋଇ ମଧ୍ୟ ଯେତେବେଳେ କହେ ଯେ ସେ ଏବଂ ତା'ର ସାମ୍ପ୍ରଦାୟିକ ଶାସ୍ତ୍ରହିଁ ଏକମାତ୍ର ସତ୍ୟ ଏବଂ ଅନ୍ୟାନ୍ୟ ଧର୍ମଶାସ୍ତ୍ର ଓ ଧର୍ମସଂସ୍ଥାନ ସବୁ ଭ୍ରମପୂର୍ଣ୍ଣ, ସେ ପ୍ରକୃତରେ ଜଣେ ମୂର୍ଖ। ସେ ଜାଣିପାରେ ନାହିଁ ଯେ ଅନ୍ୟାନ୍ୟ ଧର୍ମଗତ ବ୍ୟାଖ୍ୟାହିଁ ତାକୁ ନିଜ ମାର୍ଗରେ ସଠିକ୍ ଭାବରେ ଚଳାଇ ପାରିବ। ଯେ ପ୍ରକୃତରେ ସତ୍ୟସନ୍ଧିତ୍ସୁ, ସେ ସମଗ୍ର ମାନବ ଜାତି ସହିତ ତା'ର ଅନ୍ତର୍ନିହିତ ସାମ୍ୟକୁ ଅନୁଭବ କରିପାରେ। ତା'ର ହୃଦୟଙ୍ଗମ କରିବା ଉଚିତ ଯେ ପ୍ରତ୍ୟେକେ ନିଜ ନିଜ ମାର୍ଗରେ ସତ୍ୟର ପୂଜାରୀ। ତେଣୁ ସମସ୍ତେ ସେହି ଗୋଟିଏ ପଥର ପଥିକ। ସେ ବିଶେଷ ଗୁରୁତ୍ୱ ଦେଇ କହିଥିଲେ ଯେ ଜଣେ ଗୋଟିଏ ଧର୍ମାନୁଷ୍ଠାନରେ ଜନ୍ମଲାଭ କରିଥାଏ ସତ; କିନ୍ତୁ ଠିକ୍ ସେହିଠାରେ ତା'ର ମୃତ୍ୟୁ ନିଶ୍ଚିତଭାବରେ ଦୁର୍ଭାଗ୍ୟଜନକ। କାରଣ ସେ ଭାବେ ଯେ ତା'ର ନିଜ ଧର୍ମବିଚାର ହିଁ ଏକମାତ୍ର ସତ୍ୟ। ଏପରି ବିଶ୍ୱାସକୁ ଧର୍ମାନ୍ଧତା ଓ ରୋଗଗ୍ରସ୍ତ ବୋଲି କହିବାକୁ ହେବ। ଯଦି ଗୋଟିଏ ଧର୍ମ ସତ୍ୟ, ଅନ୍ୟ ଧର୍ମମାନେ ମଧ୍ୟ ସେହିପରି ସତ୍ୟ। ଯେ ଅନ୍ୟ ଧର୍ମକୁ ନିନ୍ଦା କରେ, ସେ ପ୍ରକୃତରେ ନିଜ ଧର୍ମକୁ ହିଁ ନିନ୍ଦା କରେ। ହିନ୍ଦୁମାନଙ୍କର ମୂଳଗ୍ରନ୍ଥ ବେଦାନ୍ତରେ ଏହା ଗୋଟିଏ ସାରସ୍ୱତ ସତ୍ୟ ବୋଲି ଗୃହୀତ ହୋଇଛି।

ବେଦାନ୍ତ ଅନୁସାରେ ସବୁ ମନୁଷ୍ୟ ସେହି ଏକମାତ୍ର ସତ୍ୟ ପରମବ୍ରହ୍ମର ଅଂଶ। ତେଣୁ ଜାତି, ଧର୍ମ, ନିର୍ବିଶେଷରେ ସମସ୍ତଙ୍କୁ ଭଲ ପାଇବାରେ ମଣିଷର ପ୍ରକୃତ ଆଧ୍ୟାତ୍ମିକ ବିକାଶ। ସମସ୍ତେ ସେହି ଅସୀମ ମହାନ୍ ସ୍ଥିତିର ସାମାନ୍ୟ ବିନ୍ଦୁ ମାତ୍ର। ଆମ ଭିତରେ ଥିବା

ପାର୍ଥକ୍ୟକୁ ଏହି ପରିପ୍ରେକ୍ଷୀରେ ହୃଦୟଙ୍ଗମ କରିବାରେ ପରମ ଆଧ୍ୟାତ୍ମିକ ଆନନ୍ଦ। ଅନ୍ୟର କ୍ଷତି ସାଧନ କଲେ ପ୍ରକୃତରେ ନିଜର କ୍ଷତି ହୁଏ – ଅନ୍ୟକୁ ଦୁଃଖ ଦେଲେ ନିଜର ଦୁଃଖ ବଢ଼ିଯାଏ, ଏହି ଦର୍ଶନରେ ଅନୁପ୍ରାଣିତ ହୋଇ ଅତୀତରେ ଭାରତୀୟ ହିନ୍ଦୁମାନେ ଅନ୍ୟ ଧର୍ମାବଲମ୍ବୀଙ୍କୁ ଦୁଃଖ ଦେଇନାହାଁନ୍ତି– ଭାଇଭାଇ ପରି ଚଳିଆସିଛନ୍ତି। ଧର୍ମ ଓ ସାମ୍ପ୍ରଦାୟିକ ବିଭେଦ ଭିତରେ ଏହି ସାର୍ବଜନୀନ ମାନବିକତା ଦେଖିବାରେ ହିନ୍ଦୁ ଧର୍ମର ମୌଳିକ ଦିଗ୍‌ଦର୍ଶନ ହୋଇ ଆସିଅଛି।

ବିବେକାନନ୍ଦଙ୍କର ମାନବୀୟତା ସମ୍ପର୍କରେ ବର୍ଣ୍ଣିତ ଚିନ୍ତାଧାରା ଆଧୁନିକ ଯୁଗର ସାର୍ବଜନୀନ ମାନବିକତାବାଦ ସହିତ ସମ୍ପୂର୍ଣ୍ଣରୂପେ ମିଳିଯାଉଛି। ବହୁ ଚିନ୍ତାଶୀଳ ବ୍ୟକ୍ତିମାନେ ନିଜ ନିଜ ଧର୍ମବିଶ୍ୱାସ ବା ନାସ୍ତିକବାଦର ବହୁ ଉର୍ଦ୍ଧ୍ୱରେ ରହି ସାର୍ବଜନୀନ ମାନବିକତାକୁ ସର୍ବୋଚ୍ଚ ସ୍ଥାନ ଦେଇଛନ୍ତି। ବିବେକାନନ୍ଦ କେତେ ଆଧୁନିକ, ତାଙ୍କର ଗୋଟିଏ ପରାମର୍ଶରୁ ଜଣାଯାଏ । ସେ କହିଛନ୍ତି କ୍ଷୁଧାର୍ତ୍ତ ଲୋକ ମନ୍ଦିରକୁ ନଯାଇ ପ୍ରଥମେ ନିଜର ଭରଣପୋଷଣ ଲାଗି କାର୍ଯ୍ୟବ୍ୟସ୍ତ ହେବା ଉଚିତ। କ୍ଷୁଧାର୍ତ୍ତର କ୍ଷୁଧା ନିବାରଣ ପଛାହିଁ ଏକମାତ୍ର ଧାର୍ମିକ ବ୍ୟବହାର ବୋଲି ଧରାଯିବ। ସେ ମାନବିକ ଧର୍ମରେ ଅନୁପ୍ରାଣିତ ନାସ୍ତିକକୁ ଧର୍ମାନ୍ଧ ଲୋକଙ୍କଠାରୁ ବହୁ ଉଚ୍ଚରେ ରଖିଛନ୍ତି। ସେ ଶୁଦ୍ଧ ଆଚରଣ ଓ ବିଶ୍ୱମାନବିକତାର ବିଶ୍ୱାସୀ ବୁଦ୍ଧ ଓ ଜୈନମୁନିଙ୍କୁ ବହୁ ସମ୍ମାନ ଦେଖାଇଛନ୍ତି। ଏହାର ମୂଳ ଉଦ୍ଦେଶ୍ୟ ହେଲା ମାନବିକତାକୁ ଶ୍ରେଷ୍ଠ ଆସନ ଦେବା। ସେହି କାରଣରୁ ସେ ନିଜ ଧର୍ମଗୁରୁ ରାମକୃଷ୍ଣ ପରମହଂସଙ୍କର ବାର୍ତ୍ତା ସାରା ବିଶ୍ୱରେ ପ୍ରଚାର କରିବାକୁ ଯାଇ ନିୟୁୟର୍କରେ ୧୮୯୬ରେ କହିଥିଲେ ଯେ ତୁମେମାନେ ନାନାପ୍ରକାରର ଯୁକ୍ତିହୀନ ମତବାଦ, ଧର୍ମଗତ ନିର୍ଦ୍ଦେଶନାମା, ସଂକୀର୍ଣ୍ଣ ଧର୍ମ ସମ୍ପ୍ରଦାୟମାନଙ୍କର ପରସ୍ପର ବିଦ୍ୱେଷମୂଳକ ପ୍ରଚାର ଏବଂ ଗୀର୍ଜା, ମସ୍‌ଜିଦ୍, ମନ୍ଦିର ଉପରେ ନିର୍ଭର କର ନାହିଁ। କାରଣ ସାର୍ବଜନୀନ ମାନବିକତାର ମୂଳ ସତ୍ତା ଓ ସ୍ଥିତିଭିତ୍ତିକ ଆଧ୍ୟାତ୍ମିକତା ତୁଳନାରେ ଏସବୁର ମୂଲ୍ୟ ନଗଣ୍ୟ। ଯାହାଠାରେ ଏ ପ୍ରକାର ଆଧ୍ୟାତ୍ମିକତା ବିକାଶଲାଭ କରିଛି, ସେ ମାନବିକ ମଙ୍ଗଳ ସାଧନରେ ବହୁତ ଶକ୍ତିଶାଳୀ। ପ୍ରଥମେ ଏ ଦିଗରେ ଅଗ୍ରସର ହେଲେ ଅନ୍ୟ କାହାକୁ ସମାଲୋଚନା କରିବାର ଆବଶ୍ୟକତା ରହିବ ନାହିଁ।

ଏହି କାରଣରୁ ବିବେକାନନ୍ଦଙ୍କର ଦର୍ଶନ ଭାରତରେ ବର୍ତ୍ତମାନ ଆଦୃତ ହୋଇପାରିଛି। ନିରୀଶ୍ୱରବାଦୀମାନେ ମଧ୍ୟ ତାଙ୍କର ବିଶ୍ଳେଷଣରେ ଉଦ୍‌ବୁଦ୍ଧ ହୋଇପାରୁଛନ୍ତି। ତେଣୁ ବର୍ତ୍ତମାନର ସଂକୀର୍ଣ୍ଣ ସ୍ୱାର୍ଥପ୍ରଣୋଦିତ ରାଜନୈତିକ ଦଳମାନେ ତୀବ୍ର ସାମ୍ପ୍ରଦାୟିକ ଅସହିଷ୍ଣୁତା ସୃଷ୍ଟି କରୁଥିଲାବେଳେ ବିବେକାନନ୍ଦଙ୍କର ଯୁଗୋପଯୋଗୀ ବ୍ୟାଖ୍ୟା ବିଷୟରେ ବହୁ ଆଲୋଚନା ହେବା ଉଚିତ। ଭାରତରେ ବହୁବର୍ଷ ଧରି ପ୍ରଚଳିତ ସହନଶୀଳ ଧର୍ମଭାବର ଐତିହ୍ୟ ପୁଣି ଥରେ ବର୍ତ୍ତମାନ ଯୁଗରେ ପ୍ରତିଷ୍ଠିତ ହୋଇପାରିବ ବୋଲି ଦୃଢ଼ ବିଶ୍ୱାସ ହେଉଛି। ■□■

# ସୁଖୀ ମନୁଷ୍ୟ

ମନୁଷ୍ୟ ସାମାଜିକ ଜୀବ। ସମାଜ ମନୁଷ୍ୟକୁ ଗଢ଼େ। ମନୁଷ୍ୟର ମନ ସମାଜ ଯୋଗୁଁ ସୃଷ୍ଟି ହୁଏ ଏବଂ ତା'ର ବ୍ୟକ୍ତିତ୍ୱ ସାମାଜିକ ଜୀବନ ଭିତର ଦେଇ ହିଁ ପରିପୁଷ୍ଟ ହୁଏ। ଅନ୍ୟ ଦୃଷ୍ଟିରୁ ଦେଖିଲେ, ଏହି ସମାଜକୁ ମଧ୍ୟ ମନୁଷ୍ୟ ଭାଙ୍ଗେ, ଗଢ଼େ, ଯୁଗେଯୁଗେ ତାକୁ ଓଲଟପାଲଟ କରି ଚାଲେ। ମନୁଷ୍ୟର ମନ ତା'ର ଆଚାର ବ୍ୟବହାର ମଧ୍ୟ ସେହି କାରଣରୁ ବଦଳି ବଦଳି ଚାଲିଥାଏ। ମୋଟା ମୋଟି ଭାବରେ କହିବାକୁ ଗଲେ ମନୁଷ୍ୟର ଚାଲିଚଳଣ, ହାବଭାବ ସବୁ ସମାଜର ଆବଶ୍ୟକତା ଅନୁସାରେ ନିୟନ୍ତ୍ରିତ ହୋଇଥାଏ। ଯେଉଁମାନେ ଯେତେ ବେଶି ନିଜକୁ ସମାଜର ପ୍ରୟୋଜନ ଅନୁସାରେ ଚଳାଇ ପାରନ୍ତି, ଅନ୍ୟମାନଙ୍କର ସୁଖ, ଦୁଃଖ, ଅଭାବ, ଅସୁବିଧା ପ୍ରତି ନଜର ଦେଇ କାମ କରିପାରନ୍ତି, ସେମାନେ ସମାଜର ଯେ କେବଳ ମଙ୍ଗଳ କରନ୍ତି ଓ ତାକୁ ଅନ୍ୟମାନେ ଭଲ ପାଆନ୍ତି ବା ସମ୍ମାନ ଦେଖାନ୍ତି ତା'ନୁହେଁ, ସେମାନେ ନିଜେ ମଧ୍ୟ ସୁଖରେ ରହନ୍ତି। ତେଣୁ ଦେଖିବାକୁ ଗଲେ ଜଣେ ସୁନାଗରିକ ପ୍ରକୃତରେ ଜଣେ ସୁଖୀଲୋକ। ସମାଜର ଅନ୍ୟମାନଙ୍କର ସୁଖ ସୁବିଧା ପ୍ରତି ଦୃଷ୍ଟି ରଖି କାମ କଲେ ତ ସୁନାଗରିକ ହେବ, କିନ୍ତୁ ସେ ନିଜେ, ସୁଖୀ ହେଲା କିପରି ?

ସୁଖୀ ହେବାକୁ ହେଲେ ମଣିଷକୁ କେତେଗୁଡ଼ିଏ ମାନସିକ ପ୍ରକ୍ରିୟା ଦେଇ ଗତି କରିବାକୁ ହୁଏ। ଉଦାହରଣ ସ୍ୱରୂପ ଜଣେ ଯଦି ନିଜଘରୁ ମଇଳା ସଫା କରି ଦାଣ୍ଡରେ ଆଣି ପୋପାଡ଼ି ଦେଇଗଲା ଏବଂ ମନେ ମନେ ଖୁସିହେଲା ଯେ ଏହା ତା'ର ପଡ଼ିଶାଘରେ ରୋଗ ବଇରାଗ ସୃଷ୍ଟି କରିବ। କିନ୍ତୁ ପଡ଼ିଶା ଘରେ ଦେଖା ଦେଇଥିବା ରୋଗ ତାକୁ ମଧ୍ୟ ଆକ୍ରମଣ କରିବା ସମ୍ଭବ। ତା'ଛଡ଼ା ପଡ଼ୋଶୀର ଦୁଃଖ କଷ୍ଟ ଦେଖିଲେ ଯେଉଁ ଲୋକ ମନରେ ଦୁଃଖ ନ ହୁଏ, ସେ ବଡ଼ ନିର୍ଦ୍ଦୟ ପ୍ରକୃତିର ଲୋକ ଏବଂ ଏପରି ଲୋକ କେବେହେଲେ ସୁଖୀ ହୋଇପାରନ୍ତି ନାହିଁ। କାରଣ ନିର୍ଦ୍ଦୟ-ପ୍ରକୃତିର ଲୋକକୁ ଅନ୍ୟମାନେ ଘୃଣା କରନ୍ତି ଏବଂ ତା'ର ପ୍ରତିକ୍ରିୟା ସ୍ୱରୂପ ମଧ୍ୟ ସେ ଲୋକଙ୍କୁ ଭଲପାଏ ନାହିଁ। ଫଳରେ ତା' ମନ ଏଥିପାଇଁ ଅନ୍ୟମାନଙ୍କୁ ସବୁବେଳେ ସମାଲୋଚନା କରେ ଏବଂ ଯେହେତୁ ଅକାରଣରେ ସେ ଲୋକଙ୍କୁ ସମାଲୋଚନା ଓ ଘୃଣା କରେ, ତା' ମନରେ ସବୁବେଳେ ପାପ ଚିନ୍ତା ରହିଥାଏ। ଏହି ସଂଶୟ ଓ ଅହେତୁକ ସନ୍ଦେହ ଯୋଗୁଁ ସେ ସବୁବେଳେ ଅଶାନ୍ତିରେ ସମୟ କାଟେ। ତେଣୁ ନିର୍ଦ୍ଦୟ ଓ ପରଶ୍ରୀକାତର ଶ୍ରେଣୀର ଲୋକେ ସୁନାଗରିକ ନୁହଁନ୍ତି କି ସୁଖୀ ବି ନୁହନ୍ତି। ସେହିପରି ଭାବରେ ମିଥ୍ୟାବାଦୀ, ପ୍ରବଞ୍ଚକ ଓ ନୀତିହୀନ ଲୋକ ମଧ୍ୟ କଦାପି ସୁନାଗରିକ ହୋଇପାରିବ ନାହିଁ।

ମିଥ୍ୟା କହିବା ଅର୍ଥ ସମାଜର ଅନ୍ୟ ଜଣେ ବ୍ୟକ୍ତିର ପ୍ରତ୍ୟକ୍ଷରେ ବା ପରୋକ୍ଷରେ କ୍ଷତି ସାଧନ କରାହୁଏ। ବିଶେଷତଃ ଯେଉଁମାନେ ଅନବରତ ମିଛ କହିଯାଆନ୍ତି, ସେମାନଙ୍କୁ ସମାଜରେ କେହି ଭଲପାଆନ୍ତି ନାହିଁ ଏବଂ ଏମାନଙ୍କ ଯୋଗୁ ବହୁଲୋକ ଅଯଥା କଷ୍ଟ ପାଆନ୍ତି। ତା'ର ସାମାଜିକ ପ୍ରତିକ୍ରିୟା ଫଳରେ ମିଥ୍ୟାବାଦୀ ନିଜେ ମଧ୍ୟ ଏଥିଲାଗି ବହୁ କଷ୍ଟ ପାଏ। ଅନେକ ସମୟରେ ମିଛ କହି ବା ଅନ୍ୟକୁ ପ୍ରବଞ୍ଚନା କରି ଆମେ ହୁଏତ କେତେକ ସୁବିଧା ପାଇଯାଉ, କିନ୍ତୁ ଜଣକର ଜୀବନକାଳ ଭିତରେ ଯଦି ଏପ୍ରକାର ପ୍ରବଞ୍ଚନା-ଜନିତ ଲାଭ କ୍ଷତିର ହିସାବ ଧରାଯାଏ, ତା'ହେଲେ ତା'ର ମୋଟାମୋଟି କ୍ଷତି ସିନା ହୁଏ, ଲାଭ ହୁଏ ନାହିଁ। କେତେଥର ମିଛ କହିବା ଫଳରେ ମୋଟା ଲାଭ ହୋଇଗଲେ ଲୋକର ଲୋଭ ବଢ଼ିଯାଏ। କିନ୍ତୁ ଅଧିକରୁ ଅଧିକ ମିଥ୍ୟା ଓ ପ୍ରବଞ୍ଚନା ଯୋଗୁଁ କ୍ରମେ କ୍ରମେ ଲୋକେ ତାକୁ ଅବିଶ୍ୱାସ କରନ୍ତି; ତା' ଛଡ଼ା ସେ ନିଜେ ନିଜ ବିବେକ ଆଗରେ ସବୁବେଳେ ଦୋଷୀ ସାବ୍ୟସ୍ତ ହୁଏ। ଏପରି କି ସେ ଭଲରେ ଶୋଇ ପାରେ ନାହିଁ। ବହୁ ପ୍ରକାର ଭୟଙ୍କର ସ୍ୱପ୍ନ ଦେଖେ। ଅକାରଣ ଆତୁରତା ଓ ଉଦ୍ବେଗର ମାତ୍ରା ତାଠାରେ ବେଶି ଦେଖାଯାଏ ତା'ର ମୁହଁ, କପାଳ ଓ ଆଖିତଳେ ଦୁଶ୍ଚିନ୍ତା ରେଖା ଦେଖାଯାଏ ଏବଂ ଅନେକ ସମୟରେ ଏ ପ୍ରକାର ଲୋକେ ପାଗଳ ହେଇଯାଆନ୍ତି କିମ୍ବା ମାଦକଦ୍ରବ୍ୟରେ ନିଜକୁ ସର୍ବଦା ଏପରି ବୁଡ଼ାଇ ରଖନ୍ତି ଯେ ନିଜ ବିବେକର ସମ୍ମୁଖୀନ ହେବାଲାଗି ତାଙ୍କର ଚେତନା ନ ଥାଏ।

ନୀତିହୀନ ଲୋକ ଅସାମାଜିକ ଲୋକ ହେବାକୁ ବାଧ। କୌଣସି ନୀତି ପ୍ରତି ଯାହାର ବିଶ୍ୱାସ ବା ସମ୍ମାନ ନାହିଁ, ସମାଜର କୌଣସି ଲୋକ ବା ଅନୁଷ୍ଠାନ ପ୍ରତି ତା'ର ଆଦର ରହିବ କିପରି? ଦେଶପ୍ରାଣତା ତା'ଠାରେ ଦେଖାଦେବା ଅସମ୍ଭବ। ଲୋକଙ୍କୁ ଠକିବା ଲାଗି କେତେଗୁଡ଼ିଏ ବଡ଼ ବଡ଼ କଥାରେ ମୁହଁରେ କହିପାରେ, କିନ୍ତୁ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ତା'ର କୌଣସି ସହୃଦୟତା ନ ଥାଏ କି ଅନ୍ୟ ଲୋକଙ୍କ ପ୍ରତି ତା'ର କୌଣସି ସ୍ନେହ ଶ୍ରଦ୍ଧା ନ ଥାଏ। ସେ ଅତିମାତ୍ରାରେ ସ୍ୱାର୍ଥପର ହୋଇପଡ଼େ। ନିଜର ସ୍ୱାର୍ଥ ଅନୁସାରେ ସେ ତା'ର ନୀତିକୁ ସର୍ବଦା ବଦଳାଇ ବଦଳାଇ ଚାଲିଥାଏ। ଏପରି ଲୋକଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ। ଏମାନେ ସାଧାରଣତଃ କ୍ଷୁଦ୍ର ନ୍ୟସ୍ତସ୍ୱାର୍ଥ, ସଂକୀର୍ଣ୍ଣଗୋଷ୍ଠୀ ବା ସମ୍ପ୍ରଦାୟ ପ୍ରତି ଅତିମାତ୍ରାରେ ଅନୁରକ୍ତି ଦେଖାନ୍ତି ସତ, କିନ୍ତୁ ଶେଷ ପର୍ଯ୍ୟନ୍ତ ସେମାନେ ନିଜର ଓ ନିଜ ପରିବାରବର୍ଗଙ୍କର ସ୍ୱାର୍ଥ ଲାଗି କେବଳ କାମ କରନ୍ତି। ତେଣୁ ଏ ପ୍ରକାର ଲୋକେ ଆଦୌ ସୁଖୀ ହୋଇ ପାରିବେ ନାହିଁ।

ସୁନାଗରିକର ମନସ୍ତାତ୍ତ୍ୱିକ ସଂଜ୍ଞା କଣ? ଅର୍ଥାତ୍ କି ପ୍ରକାର ମନସ୍ତାତ୍ତ୍ୱିକ ବା ସାମାଜିକ ଚରିତ୍ର ସୁନାଗରିକ ହେବା ଲାଗି ଉପଯୁକ୍ତ ବୋଲି ବିବେଚିତ

ହେବ ? ସୁଖୀ ଓ ସୁସଂଯତ ଲୋକ ହିଁ ସୁଖୀ ନାଗରିକ ହୋଇ ପାରିବ। କାରଣ ଯେଉଁମାନଙ୍କ ମନରେ ବ୍ୟକ୍ତିଗତ ତିକ୍ତତା, ପାରସ୍ପରିକ ବିଦ୍ୱେଷ ଓ ସାମାଜିକ ବ୍ୟର୍ଥତା ରହିଥିବ, ସେମାନେ ସବୁବେଳେ ଅସୁଖୀ ଓ ଅସହିଷ୍ଣୁ। ତେଣୁ ସେମାନଙ୍କର ଅନ୍ୟମାନଙ୍କର କଥା ଭାବିବା ପାଇଁ ସମୟ ବା ସ୍ପୃହା ନ ଥାଏ। ସବୁବେଳେ ତ ସେମାନେ ନିଜ ନିଜର କ୍ଷୁଦ୍ର ବ୍ୟର୍ଥତାର ଚାରିପାଖେ ପରହୀନ ଶକୁନ ପରି ବୁଲୁଥାଆନ୍ତି। ଅନ୍ୟମାନଙ୍କୁ ଆଖେ ପାଖେ ଦେଖିଲାକ୍ଷଣି ସେମାନେ ବିରକ୍ତ ହୁଅନ୍ତି। ଯେଉଁ ଦେଶରେ ସାମାଜିକ ଅଶାନ୍ତି ଯେତେ ବେଶି, ସେ ଦେଶରେ ଅସୁଖୀ ଲୋକଙ୍କ ସଂଖ୍ୟା ସେତେ ବେଶି ଏବଂ ସୁନାଗରିକଙ୍କ ସଂଖ୍ୟା ମଧ୍ୟ ସେହି ପରିମାଣରେ କମ୍ ହେବାକୁ ବାଧ୍ୟ। ତେଣୁ ସୁନାଗରିକ ହେବା ଅର୍ଥ ନିଜ ବ୍ୟକ୍ତିତ୍ୱର ସାମାଜିକ ପରିପୂର୍ଣ୍ଣତା ହାସଲ କରିବା। ଏହି କାରଣରୁ ପ୍ରକୃତ ସୁନାଗରିକଙ୍କ ସଂଖ୍ୟା ବଢ଼ାଇବାକୁ ହେଲେ ଦେଶର ସମଗ୍ର ପାରିପାର୍ଶ୍ୱିକ ଅବସ୍ଥାକୁ ମଧ୍ୟ ବଦଳାଇବା ଦରକାର। ପାରିପାର୍ଶ୍ୱିକ ଅବସ୍ଥା ଅନୁସାରେ ବ୍ୟକ୍ତିତ୍ୱ ତଥା ସୁନାଗରିକତ୍ୱର ବିକାଶ ହୋଇଥାଏ। ଏହି ବୈଜ୍ଞାନିକ ତଥ୍ୟଟି ପ୍ରତି ଆମର ସବୁବେଳେ ନଜର ରଖିବା ଉଚିତ। ତା'ହେଲେ ଯାଇ ସାରା ସମାଜରେ ଏହାର ବିକାଶ ଲାଗି ଆମକୁ ନାନା ଭାବରେ ଚେଷ୍ଟା କରିବାକୁ ପଡ଼ିବ।

ସୁନାଗରିକ ହେଲେ ସମାଜର ସର୍ବାଙ୍ଗୀନ ଉନ୍ନତି ହେବା ସଙ୍ଗେ ସଙ୍ଗେ ନିଜର ଯେ ପ୍ରକୃତ କଲ୍ୟାଣ ସାଧିତ ହୁଏ, ଏ ବିଷୟରେ ବିଶ୍ୱାସ ହେଲେ ଅନେକେ ନିଜ ନିଜ ଚେଷ୍ଟାରେ ସୁନାଗରିକ ହେବାକୁ ଚେଷ୍ଟା କରିବେ। ଅନ୍ୟର ସୁଖ ଶାନ୍ତି ଉପରେ ନିଜର ସୁଖ ଶାନ୍ତି ନିର୍ଭର କରେ। ଏହାର ଉପଲବ୍ଧି କରିବାପାଇଁ ସ୍କୁଲ, କଲେଜ ଓ ନିଜ ନିଜ ଘରେ ଏଥିପାଇଁ ଉପଯୁକ୍ତ ଶିକ୍ଷା ଦେବା ଉଚିତ। ଉଦାହରଣ ସ୍ୱରୂପ କୌଣସି ଗୋଟିଏ ଭଲ ଜିନିଷ, କି ସୁନ୍ଦର ଫୁଲଗଛ ନିଜପାଖରେ ରହିଲେ ଲୋକ ଆନନ୍ଦ ପାଏ, କିନ୍ତୁ ତାହା ଯଦି ବହୁ ଲୋକଙ୍କ ପାଖରେ ରହିପାରନ୍ତା, ତା'ହେଲେ ସେ ଆହୁରି ବେଶି ଆନନ୍ଦ ପାଇପାରନ୍ତା। କାରଣ ପାରିପାର୍ଶ୍ୱିକ ଅବସ୍ଥା ମନୁଷ୍ୟ ମନ ଭିତରେ ସବୁବେଳେ ପ୍ରତିକ୍ରିୟା ସୃଷ୍ଟି କରେ ଏବଂ ତାର ଚାରିଆଡ଼ ଯେତେ ସୁନ୍ଦର, କମନୀୟ ଓ ଆନନ୍ଦଦାୟକ ହେବ, ତା ମନ ସେତେ ପ୍ରଫୁଲ୍ଲ ରହିବ। ଏହି କଥାଟିକୁ ଆମେ ଅନେକ ସମୟରେ ଭୁଲିଯାଉ ଏବଂ ଆମ ପାଖରେ ଯାହା ଅଛି ତା' ଅନ୍ୟ କା ପାଖରେ ନ ରହିଲେ ଆମେ ବେଶି ଆନନ୍ଦ ପାଇବୁ ବୋଲି ଭାବୁ। କିନ୍ତୁ ତା ଠିକ୍ ନୁହେଁ। ଗୋଟିଏ ସୁନ୍ଦର ଫୁଲଗଛ କେବଳ ଆମ ପାଖରେ ନ ରହି ଯଦି ଚାରିଆଡ଼େ ଦେଖାଯିବ, ତାହେଲେ ଆମ ମନ ବେଶି ପରିମାଣରେ ପରିପୂର୍ଣ୍ଣତା ଲାଭ କରିବ। ଏହି ମନସ୍ତାତ୍ତ୍ୱିକ ସତ୍ୟଟିକୁ ସମସ୍ତେ ହୃଦୟଙ୍ଗମ କଲେ ଆମଠାରେ ସୁନାଗରିକତ୍ୱର ଉପଯୁକ୍ତ ବିକାଶ ଲାଭ ହୋଇପାରିବ ଏବଂ ଆମେ ସୁଖୀ ହୋଇ ପାରିବା। ■□■

# ସ୍ୱପ୍ନ ଓ ଜୀବନ

ଜୀବନ ପ୍ରାକୃତିକ ଜଗତର ଗୋଟିଏ ବାସ୍ତବ ଘଟଣା– ସ୍ୱପ୍ନ ତା'ର ଛାଇ- ତା'ର ଆନ୍ତରିକ ସ୍ପନ୍ଦନ– ତା' ଆତ୍ମାର ଭବିଷ୍ୟତ ପ୍ରେରଣା। ଅନେକ ସମୟରେ ସ୍ୱପ୍ନକୁ ସଂକୀର୍ଣ୍ଣ ଅର୍ଥରେ କେବଳ ରାତିରେ ଦେଖୁଥିବା ମାନସିକ ପ୍ରତିଛବିକୁ ବୁଝାଯାଇଥାଏ। କିନ୍ତୁ ଆମ ଜୀବନରେ ଦିବାସ୍ୱପ୍ନର ମାତ୍ରା କିଛି କମ୍ ନୁହେଁ। ଦିବାସ୍ୱପ୍ନ ହିଁ ଆମ ସଚେତନ କଳ୍ପନା ରାଜ୍ୟର ପ୍ରତିଫଳନ। ରାତ୍ରି ସ୍ୱପ୍ନ ଆମର ଅବଦମିତ ମନର ଅପୂରଣୀୟ ଆଶା ଆକାଙ୍କ୍ଷାର କେତେକ ଝଲକ ମାତ୍ର। ଖାଲି ପେଟରେ ଶୋଇଗଲା ପରେ ଭୂରି ଭୋଜନର ସ୍ୱପ୍ନ, ବିବାହ ହେବାର ଅସମର୍ଥ ଯୁବକ ପକ୍ଷରେ ବିବାହ ବେଦୀର ରମଣୀୟ ସ୍ୱପ୍ନ ଇତ୍ୟାଦି ରାତ୍ରି ସ୍ୱପ୍ନ ଏହି ପର୍ଯ୍ୟାୟଭୁକ୍ତ। ସାଧାରଣତଃ ବେଶି ଭାଗର ରାତ୍ରି ସ୍ୱପ୍ନ ଅତୀତ ଜୀବନର ଅସାର୍ଥକ ଇଚ୍ଛା ଓ ଅଭିଳାଷର ସ୍ୱପ୍ନାୟିତ ଉପଭୋଗ କହିଲେ ଚଳେ। ଏହା ନାନା ଭାବରେ ବିକୃତ ତଥା ରୂପାନ୍ତରିତ ହୋଇ ଦେଖାଯାଉଥିବାରୁ ଆମେ ହଠାତ୍ ତା'ର ରହସ୍ୟ ଉଦ୍‌ଘାଟନ କରିପାରୁନା। ନାନା ପ୍ରକାରର ସ୍ୱପ୍ନ ବିଶ୍ଳେଷଣ ପଦ୍ଧତି ମାଧ୍ୟମରେ ଏହାର ନିହିତ ଉଦ୍ଦେଶ୍ୟ ବିଷୟରେ ଅବଗତ ହେବା ସଂଭବ। ସ୍ୱପ୍ନର ଉପକାରିତା ମନୁଷ୍ୟ ଜୀବନରେ ବହୁତ ବେଶି।

ସ୍ୱପ୍ନ ଓ ଜୀବନ କହିଲେ ରାତ୍ରି ଓ ଦିବାସ୍ୱପ୍ନ ଉଭୟ ମାନସିକ ପ୍ରକ୍ରିୟାର ସମନ୍ୱିତ ପ୍ରତିଫଳନର ଚରିତ୍ର ବିଷୟରେ ଅନୁଧ୍ୟାନ କରିବା ବିଧେୟ। ମନୁଷ୍ୟର କାଳ୍ପନିକ ରାଜ୍ୟର ନାନା ପ୍ରକାରର ରୋମାଞ୍ଚକର ନାଟକୀୟ ରୀତିକୁ ମଧ୍ୟ ସ୍ୱପ୍ନ ପର୍ଯ୍ୟାୟଭୁକ୍ତ କରାଯାଏ। ଏ ପ୍ରକାରର ସ୍ୱପ୍ନ ମନୁଷ୍ୟ ଜୀବନରେ ଅତି ବ୍ୟାପକଭାବରେ ଦେଖାଦେଇଥାଏ ଏବଂ ଜୀବନ ରୀତିର ଏହା ଗୋଟିଏ ମୁଖ୍ୟ ପରିପ୍ରକାଶ ବୋଲି କୁହାଯାଇଥାଏ। ତେଣୁ କୌଣସି ବ୍ୟକ୍ତି ପକ୍ଷରେ ସ୍ୱପ୍ନ ବିନା ଜୀବନଯାପନ କରିବା ସମ୍ଭବ ନୁହେଁ।

ରାତ୍ରି ସ୍ୱପ୍ନ ଦିବା ସ୍ୱପ୍ନଠାରୁ ଭିନ୍ନ। ଦିବାସ୍ୱପ୍ନ ଅବାସ୍ତବ ସୁନା ପାହାଡ଼ରେ ରାଜସିଂହାସନ ଆରୋହଣ ବା କଳ୍ପିତ ସ୍ୱର୍ଗରାଜ୍ୟର ପରୀମହଲରେ ବିଚରଣ ପରି କଳ୍ପନାଠାରୁ ଆରମ୍ଭକରି ବାସ୍ତବ କ୍ଷେତ୍ର ସହିତ ପ୍ରତିଯୋଜନ କରି ଚଳିବା ପାଇଁ ନାନା ପ୍ରକାରର କାଳ୍ପନିକ ଯୋଜନା ପର୍ଯ୍ୟନ୍ତ ଲମ୍ବି ରହିଥାଏ। ନିରବଚ୍ଛିନ୍ନ ପ୍ରସାରିତ ପରିସର ଭିତରେ ବାସ୍ତବ ଦୃଷ୍ଟିକୋଣ ଅନୁସାରେ ସୀମା ନିର୍ଦ୍ଧାରଣ କରିବା ଅନେକ ସମୟରେ କଷ୍ଟକର ହୋଇପଡ଼େ। କାରଣ ଯାହା ଜଣକ ପାଖରେ ଅତି ଅବାସ୍ତବ

ସ୍ୱପ୍ନ ବୋଲି ମନେହୁଏ, ଅନ୍ୟ ଜଣକ ଆଗରେ ତାହା ବାସ୍ତବରେ ପରିଣତ କରିବା ଅସମ୍ଭବ ନୁହେଁ। ଏପରି ଅସମ୍ଭବ ସାଧନ କରୁଥିବା ବ୍ୟକ୍ତିମାନେ ହିଁ ଇତିହାସ ସୃଷ୍ଟି କରିଥାଆନ୍ତି, ପୃଥିବୀରେ ବିଶ୍ୱବରେଣ୍ୟ ଅଗ୍ରଗାମୀ ପଥନିର୍ଦ୍ଦେଶକ ଭାବରେ ଅଭିହିତ ହୋଇଥାଆନ୍ତି। ତେଣୁ ବହୁ ପ୍ରକାରର ଅବାସ୍ତବ ସ୍ୱପ୍ନକୁ ନିରର୍ଥକ ବୋଲି ପରିତ୍ୟାଗ କରିବା ଉଚିତ ନୁହେଁ, ସୁନା ପାହାଡ଼ରେ ରାଜସିଂହାସନ ଆରୋହଣ ସ୍ୱପ୍ନ ମଧ୍ୟ ଭାରାକ୍ରାନ୍ତ ମନକୁ କିଛି ପରିମାଣରେ ହାଲୁକା କରିପକାଏ। ଅବଶ୍ୟ ଏପରି ଅବାସ୍ତବ ସ୍ୱପ୍ନରେ ଅଖଣ୍ଡ ବିଶ୍ୱାସ ରଖି ସ୍ୱପ୍ନବିଭୋର ହୋଇ ରହିଥିବା ଲୋକଙ୍କୁ ପାଗଳ ବୋଲି କୁହାଯାଏ, କାରଣ ସେ ବାସ୍ତବ ଜଗତରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇପଡ଼େ। ଫଳରେ ସେ ଦୁନିଆ ସହିତ ପ୍ରତିଯୋଜନ କରି ଚଳିପାରେନାହିଁ। କିନ୍ତୁ ଯେଉଁମାନେ ଅଳ୍ପ ସମୟ ପାଇଁ ଅବାସ୍ତବ ସ୍ୱପ୍ନରେ ଭାସି ଚାଲିବା ପରେ ଆବଶ୍ୟକତା ଅନୁଯାୟୀ ପୁଣି ବାସ୍ତବ ଦୁନିଆକୁ ଫେରିଆସନ୍ତି ଏବଂ ବାସ୍ତବ ଓ ସ୍ୱପ୍ନ ଭିତରେ ଥିବା ପାର୍ଥକ୍ୟକୁ ଆଖି ଆଗରେ ରଖି କାମ କରିପାରନ୍ତି, ସେମାନଙ୍କ ପକ୍ଷରେ ସ୍ୱପ୍ନ ରାଜ୍ୟର ମୂଲ୍ୟ ବହୁତ ବେଶି। ଏ ସମ୍ପର୍କରେ ବୈଦାନ୍ତିକ ମାୟାବାଦର କଥା ଉଠିପାରେ। ଜଣେ ରାଜା ଦିନଯାକ ରାଜଗାଦିରେ ବସି ରାତି ଯାକ ସେ ସିଂହାସନଚ୍ୟୁତହୋଇ ଭିକାରୀ ହେବାର ଦୁଃସ୍ୱପ୍ନ ଦେଖେ ତ ଜଣେ ଭିକାରୀ ଦିନଯାକ ଭିକମାଗି ରାତିରେ ସ୍ୱପ୍ନ ଦେଖେ ଯେ ସେ ରାଜସିଂହାସନରେ ବସିଛି। ଏ ଦୁଇଟି ମଧ୍ୟରେ ଅନେକ ଦାର୍ଶନିକ ବିଶେଷ ପାର୍ଥକ୍ୟ ନଦେଖିଲେ ମଧ୍ୟ ଜନସାଧାରଣ ନିଶ୍ଚିତଭାବରେ ଏହାର ବାସ୍ତବିକ ପାର୍ଥକ୍ୟ ବିଷୟରେ ସଚେତନ। ମୋଟାମୋଟିଭାବରେ ଜୀବନରେ ସ୍ୱପ୍ନାଭିଳାଷ ତଥା ବାସ୍ତବ ଅନୁଭୂତି ପରସ୍ପର ଭାବାଭାବ ସମ୍ପର୍କିତ ଓ ପରିପୂରକଗତ ସମନ୍ୱିତ କ୍ରିୟାଫଳ ବୋଲି କୁହାଯାଇପାରେ। ଗୋଟିଏ ଛଡ଼ା ଅନ୍ୟଟି ମୂଲ୍ୟହୀନ ତଥା ରସହୀନ ବୋଲି ମନେହୁଏ। ସାର୍ଥକ ଅଭିଜ୍ଞତା ହେଉଛି ସ୍ୱପ୍ନାଭିଳାଷର ଯଥାଯଥ ଆତ୍ମୋପଲବ୍ଧି।

ପିଲାମାନେ ବାସ୍ତବ ଦୁନିଆକୁ ଚିହ୍ନିବା ପାଇଁ ଖେଳନ୍ତି, ସେମାନଙ୍କର ଖେଳ ପ୍ରକୃତରେ ଦିବାସ୍ୱପ୍ନର ଗୋଟିଏ ଜ୍ୱଳନ୍ତ ଉଦାହରଣ। ସେମାନେ ଗଛର ତାଳପତ୍ରର ଛାଇ ଆଲୁଅ ଭିତରେ ବାଘ ଭାଲୁ ଦେଖନ୍ତି। ତଥାପି ସେମାନେ ଭୟରେ ଦୌଡ଼ିପଳାନ୍ତି ନାହିଁ। ବାଲି ଘର କରି ସ୍ୱାମୀ ସ୍ତ୍ରୀ ହୋଇ ଖେଳନ୍ତି– ତା'ପରେ ସବୁ ଭୁଲିଯାଆନ୍ତି। ଗୋଟିଏ ଘୋଡ଼ା ଖେଳଣା ନପାଇଲେ ମଧ୍ୟ ଗୋଟିଏ ସିଧା କାଠଖଣ୍ଡକୁ ଘୋଡ଼ା ବୋଲି ଭାବି ଘୋଡ଼ା ଚଢ଼ନ୍ତି-ଏଥିରେ କୌଣସି ଅଯୌକ୍ତିକତା ଦେଖନ୍ତି ନାହିଁ। ବଡ଼ମାନେ ଯେତେ ବାସ୍ତବବାଦୀ ହେଲେ ମଧ୍ୟ କାଠଘୋଡ଼ା ହାତୀ ନେଇ ଚେସ୍ ଖେଳନ୍ତି– ତା'ସର ରାଜାରାଣୀ ନେଇ ଘଣ୍ଟା ଘଣ୍ଟା ବିତାଇ ଦିଅନ୍ତି। ସେମାନେ

ବାସ୍ତବ ଦୁନିଆର ଘଟଣାବଳୀକୁ ଯେପରି ଗୁରୁତ୍ୱପୂର୍ଣ୍ଣ ବୋଲି ଭାବନ୍ତି, ତା'ଠାରୁ ବେଶି ଖେଳର କାଳ୍ପନିକ ରାଜ୍ୟକୁ ଗୁରୁତ୍ୱ ଦିଅନ୍ତି। ଖେଳରେ ବ୍ୟାଘାତ ହେଲେ ସେମାନେ ବହୁତ ବେଶି ମର୍ମାହତ ହୋଇପଡ଼ନ୍ତି। ତା' ଅର୍ଥ କାଳ୍ପନିକ ରାଜ୍ୟର ସ୍ୱପ୍ନାୟିତ ଘଟଣାବଳୀ ସହିତ ଆମର ମାୟାମମତା ନିବିଡ଼ ଜଡ଼ିତଥାଏ। ପିଲାମାନେ ଖେଳଘର ନାଟକ ଭିତରେ ଭବିଷ୍ୟତ ପାଇଁ ପ୍ରସ୍ତୁତ ହୁଅନ୍ତି। ବର୍ତ୍ତମାନ ବାସ୍ତବ ଦୁନିଆର କଠିନତା ଭିତରୁ ବାହାରି ଆସିବା ପାଇଁ କଳ୍ପନା ଜଗତର ଆଶ୍ରୟ ନିଅନ୍ତି- କବି, ଲେଖକ, ଶିଳ୍ପୀ ଦାର୍ଶନିକ ମାନେ ତ ବହୁ ସମୟ କଳ୍ପନା ରାଜ୍ୟରେ ଘୂରି ବୁଲନ୍ତି ବାସ୍ତବ ଦୁନିଆକୁ ନୂଆ ନୂଆ ରୂପରେ ସଜାଇବାଲାଗି। ତେଣୁ ସ୍ୱପ୍ନ ଓ ବାସ୍ତବ ଦୁନିଆ ଭିତରେ ବହୁତ କ୍ଷୀଣ ବ୍ୟବଧାନ ରହିଥାଏ – ପରସ୍ପର ଭିତରେ ଗୋଟିଏ ପ୍ରକାରର ସମାନୁଭୂତିକ ସମ୍ପର୍କ ରହିଥାଏ।

ଅନେକେ ଜୀବନର ଅପରାହ୍ନରେ ବସି ତାଙ୍କର ସ୍ୱପ୍ନ କିପରି ସାର୍ଥକ ଓ ଅସାର୍ଥକ ହୋଇଛି ତା'ର ଟିପ୍ପଣୀ ଲେଖନ୍ତି। ଏହି ଅଗଣିତ ନରନାରୀଙ୍କର ଅବିଶ୍ରାନ୍ତ ସ୍ରୋତରେ ନେପୋଲିୟନ, ଗାନ୍ଧୀ, ଲେନିନ୍, ରବୀନ୍ଦ୍ର ନାଥ, ଆଇନଷ୍ଟାଇନ୍ ପ୍ରଭୃତି ଯୁଗପ୍ରବର୍ତ୍ତକଗଣ ଅଛନ୍ତି। ଭିକାରୀ ମଜଦୁର ମଧ ଏହି ଲୋକାରଣ୍ୟର ମହାସ୍ରୋତ ଭିତରେ ସ୍ୱପ୍ନ ଓ ବାସ୍ତବ ରାଜ୍ୟର ଇତିହାସ ସୃଷ୍ଟିକରିଚାଲିଛନ୍ତି। ଏ ସମସ୍ତଙ୍କର ସ୍ୱପ୍ନର ଚାରିତ୍ରିକ ବୈଶିଷ୍ଟ୍ୟ ସମାନ। କେବଳ ପରିମାଣାତ୍ମକ ସାର୍ଥକତା ବା ଗୁଣାତ୍ମକ ସମ୍ଭାବନା ଭିତରେ ଯାହା ପାର୍ଥକ୍ୟ।

ଯେଉଁ ଲୋକ ଯେତେ ବେଶି ଆଦର୍ଶବାଦୀ ଏବଂ ଯେତେ ବେଶୀ ଭାବ ଓ ଆବେଗମୟ ରାଜ୍ୟରେ ବିଚରଣ କରେ, ତା'ର ସ୍ୱପ୍ନ ସେତେ ବେଶି ବ୍ୟାପକ – ସେତେ ବେଶି ଆନନ୍ଦଦାୟକ ଏବଂ ପ୍ରକାରାନ୍ତରେ ସେତେ ବେଶି ଫଳପ୍ରଦ ମଧ୍ୟ। ସୃଜନଶୀଳ ବ୍ୟକ୍ତିମାନେ ସ୍ୱପ୍ନାବିଷ୍ଟ ହେବା ସ୍ୱାଭାବିକ,। ସେମାନଙ୍କର ସୃଜନଶୀଳତା ସେମାନଙ୍କର ଅପରିସୀମ, ଅଜ୍ଞାତ ମାନସିକ ରାଜ୍ୟର ସୀମାହୀନ ଗଭୀରତାର ଉପରିଭାଗରେ ଅଳ୍ପ କେତେକ ବୁଦ୍‌ବୁଦ୍‌ର ପ୍ରତିଫଳନ ମାତ୍ର। ଗଭୀର ସମୁଦ୍ର ବକ୍ଷରେ ଭାସୁଥିବା ବରଫଖଣ୍ଡମାନର ଯେପରି ବହୁ ଭାଗ ପାଣି ଭିତରେ ଥାଏ ଏବଂ ସାମାନ୍ୟ କେତେକ ଅଂଶ ବାହାରକୁ ଦେଖାଯାଇଥାଏ ସେହିପରି ଏମାନଙ୍କର ସୃଜନଶୀଳତାର କିଛି ଅଂଶ ମାତ୍ର ବାସ୍ତବ ଦୁନିଆରେ ସୃଷ୍ଟି ହୋଇଥାଏ। ଯେଉଁ ସୃଜନଶୀଳ ବ୍ୟକ୍ତି ଯେତେ ମହାନ୍ ତା'ର ସ୍ୱପ୍ନରାଜ୍ୟ ସେତେ ବେଶି ବ୍ୟାପକ ଏବଂ ଗଭୀର। ତେଣୁ ଆମର ସ୍ୱପ୍ନ ରାଜ୍ୟ ହିଁ ଆମକୁ ମହାନ୍ କରେ – ଲୋକଙ୍କ ଚକ୍ଷୁରେ ପ୍ରଶଂସିତ କରେ – ଇତିହାସରେ ଅମର କରେ। ଅବଶ୍ୟ ଆଉ କେତେକଙ୍କୁ ମଧ୍ୟ ବଦ୍ଧ ପାଗଳରେ ପରିଣତ କରିଦିଏ।

ଯେଉଁମାନେ ଐଶ୍ୱରିକ ଆଧ୍ୟାତ୍ମିକତାରେ ଅନୁପ୍ରାଣିତ ସେମାନଙ୍କଠାରେ ତଥାକଥିତ ବାସ୍ତବତାର ମୂଲ୍ୟ ବହୁତ କମ୍। କାରଣ ଭଗବାନ ସମ୍ବନ୍ଧୀୟ ସମସ୍ତ କଳ୍ପନାଜଳ୍ପନା ବହୁତ ଅବାସ୍ତବ ଏବଂ ଅପ୍ରତ୍ୟକ୍ଷ, ଏପରିକି ଯୁକ୍ତିତର୍କ ମାଧ୍ୟମରେ ମଧ୍ୟ ଏହାର ସତ୍ୟତା ପ୍ରତିପାଦନ କରିବା କଷ୍ଟକର। ଏହା ପଛରେ ଭାବଗତ କଳ୍ପନାହିଁ ଅତିମାତ୍ରାରେ କାମ କରୁଥାଏ। ଅନେକ ସମୟରେ ଏହା ରାତ୍ରିର ସ୍ୱପ୍ନରେ ମଧ୍ୟ ପ୍ରକାଶିତ ହୁଏ। ଭଗବାନଙ୍କର ଅବତାରମାନେ ତାଙ୍କ ସ୍ୱପ୍ନରାଜ୍ୟରୁହିଁ ଦିବ୍ୟବାଣୀ ଶୁଣିଥାଆନ୍ତି। ଭଗବାନଙ୍କର ଦିବ୍ୟାଲୋକ ଦେଖିଥାଆନ୍ତି। ତାହା ଅନ୍ୟମାନଙ୍କୁ ଶୁଣାଯାଏ ନାହିଁ କି ଦେଖାଯାଏ ନାହିଁ, ଏସବୁକୁ ବାସ୍ତବ ଭଗବତ ଦର୍ଶନ ବୋଲି ଆଖ୍ୟାୟିତ ହୋଇଥାଏ। ସେଥିଯୋଗୁ ଧର୍ମବିଶ୍ୱାସୀମାନେ ନିଜର ସରଳ ଓ ଦ୍ୱିଧାହୀନ ବିଶ୍ୱାସ ଉପରେ ହିଁ ଆସ୍ଥା ରଖନ୍ତି–'ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର' ବିଶ୍ୱାସ ହିଁ ଏମାନଙ୍କୁ ଏ କ୍ଷେତ୍ରରେ ଉଦ୍‌ବୁଦ୍ଧ କରି ରଖିଥାଏ। ବାସ୍ତବ ଜଗତରେ ଏହି ସ୍ୱପ୍ନର ମୂର୍ତ୍ତ ପ୍ରତିଫଳନ ସମ୍ଭବ ନ ହେବାରୁ ତା'ର ମନଲୋଭା ସ୍ୱପ୍ନହିଁ ଅତି ଶିଘ୍ର ଅତିନ୍ଦ୍ରୀୟ ଦେଶର ବାସ୍ତବ ଚିତ୍ରବୋଲି ଧରିନିଆଯାଏ। ଭୂତକୁ ଯେପରି କେବଳ ଜଣେ ଲୋକ ଏକାକୀ ଅନୁଭବ କରେ ଭଗବାନ ମଧ୍ୟ ବ୍ୟକ୍ତିକେନ୍ଦ୍ରିକ ଅନୁଭୂତି ଉପରେ ପର୍ଯ୍ୟବସିତ।

ସ୍ୱପ୍ନ ଯେତେ ଅବାସ୍ତବ ହେଲେ ମଧ୍ୟ ଜୀବନକୁ ବିମୋହିତ କରି ରଖେ– ପରମ ଆନନ୍ଦ ଯୋଗାଏ ଏବଂ ବାସ୍ତବ ଜଗତରେ ଏହା ଅନୁପ୍ରେରଣାର ଅନ୍ତର୍ନିହିତ ଉପାଦାନ ହିସାବରେ ଧରାଯାଏ। ଯେଉଁମାନେ ଏହାର ଅନାଦର କରନ୍ତି ଏବଂ ବାସ୍ତବବାଦ ବୋଲି ଗର୍ବ କରନ୍ତି ସେମାନଙ୍କର ଜୀବନରେ ମଧୁରତା ନାହିଁ କି ସେମାନଙ୍କର ସାଫଲ୍ୟରେ ଗଭୀର ମନସ୍ତାତ୍ତ୍ୱିକ ଆନନ୍ଦ କିମ୍ବା ଆତ୍ମୋପଲବ୍ଧି ନାହିଁ। ଅପର ପକ୍ଷରେ ଯେଉଁମାନେ ନିଜର ସ୍ୱପ୍ନକୁ ବାସ୍ତବ ଜଗତରେ ପ୍ରତିଫଳିତ କରିପାରନ୍ତି ନାହିଁ ସେମାନଙ୍କର ସ୍ୱପ୍ନରାଜ୍ୟ ମଧ୍ୟ ଦୁଃଖମୟ ହୋଇପଡ଼େ। ସ୍ୱପ୍ନ ଭିତ୍ତି ଭୂମିରେ ଯେଉଁମାନଙ୍କର କୃତିତ୍ୱର ସୌଧ ତିଆରି ହୋଇପାରିଛି ସେହିମାନେହିଁ ପ୍ରକୃତରେ କରିତକର୍ମା। ସେମାନଙ୍କୁ ମାନବ ସମାଜ ମନେରଖେ– ଇତିହାସ ସେମାନଙ୍କୁ ସମ୍ମାନ ଦିଏ- ଅନ୍ୟମାନଙ୍କୁ ସେମାନଙ୍କର ସ୍ୱପ୍ନ ପ୍ରେରଣା ଦିଏ। ତେଣୁ ଜୀବନରେ ମନୁଷ୍ୟ ସ୍ୱପ୍ନର ଅବଦାନକୁ ଯଥାଯଥଭାବରେ ଅବଧାରିତ କରିପାରିଲେ ତାର ଜୀବନ ସଫଳ ସୁଖମୟ ଓ ରସାୟିତ ହୋଇଥାଏ। ■□■